# ମୋ ନିଜ କଥା

"ଗୋପନ ବୋଲି ମୁଁ କିଛି ରଖିନାହିଁ । ··· ଯେତେବେଳେ ମୁଁ କାନ୍ଦିଛି, କାନ୍ଦିଛନ୍ତି ପାଠକମାନେ । ଯେତେଥର ବଧୂ-ବେଶରେ ସଜ୍ଜିତ ହୋଇ ମୋ ପ୍ରେମିକର ଘରକୁ ମୁଁ ଯାଇଚି, ମୋ ସହିତ ଚାଲିଛନ୍ତି ପାଠକମାନେ···।"
କମଳା ଦାସ ସୁଲେଖିକା । ତାଙ୍କର ନିଷ୍କପଟ ଅଭିବ୍ୟକ୍ତି ଏ ବହିଟିର ପ୍ରତିଟି ପୃଷ୍ଠାକୁ କରିଚି ରସମସ୍ତ ଓ ଜୀବନ୍ତ······ ।

# ଅନୁବାଦକର କଥା

'ମୋ ନିଜ କଥା'ର ଲେଖିକା କମଳା ଦାସ ଇଂରାଜୀରେ ଓ ମାଲୟାଲମ୍ ଭାଷାରେ ସିଦ୍ଧି ଅର୍ଜନ କରିଥିବା ନାରୀ-କବି । କବିତା ଓ ଗଦ୍ୟ ଉଭୟ କ୍ଷେତ୍ରରେ ନିଜସ୍ୱ ରଚନା ଭଙ୍ଗୀପାଇଁ ସେ ପ୍ରସିଦ୍ଧ ।

ଆତ୍ମ-କଥା ହିସାବରେ ଏଇ ବହିଟିର ଗୁରୁତ୍ୱ ରହିଛି । ବିଷୟ-ବସ୍ତୁ ଦୃଷ୍ଟିରୁ ଏହାର ନବୀନତା ମାନିବାକୁ ପଡ଼ିବ ।

ମୁଁ ଜଗି-ରଖି ଅନୁବାଦ କରିଛି । ବେଳେ ବେଳେ ଝୁଣ୍ଟିଛି । କେଉଁଠି ଅନୁବାଦ ହୋଇଛି ଭାବାତ୍ମକ । କିନ୍ତୁ ପ୍ରାୟ ସବୁଠି ମୂଳ-ଲେଖାର ଭାବ ଓ ଭଙ୍ଗୀ ଉଭୟଙ୍କୁ ଅନାହତ ରଖିବାପାଇଁ ଚେଷ୍ଟା କରିଛି । ସ୍ୱାଧୀନତା ଆଦୌ ନେଇନି, ସବୁଠି ପରିବେଷଣ କରିଛି କମଳା ଦାସଙ୍କୁ । କିନ୍ତୁ, କେଉଁଠି ଦିଅଁ ଗଢ଼ିବାକୁ ଯାଇ ଯେ ମାଙ୍କଡ଼ ହୋଇ ନ ଥିବ କେମିତି କହିବି ।

ଅନୁବାଦବେଳେ ମୁଁ କମଳା ଦାସଙ୍କ ଯନ୍ତ୍ରଣା ସହିତ ଏକାତ୍ମ ହେବାକୁ ଉଦ୍ୟମ କରିଛି ମାତ୍ର । ସଫଳତା ବିଫଳତା ପାଠକେ ନିର୍ଣ୍ଣୟ କରିବେ ।

ମଇ, ୪, ୧୯୭୮ — ପ୍ରସନ୍ନ
କଟକ



# କହିରଖୁଚି

'ମୋ ନିଜ କଥା' ମୋର ଆତ୍ମ-ଚରିତ । ପ୍ରଥମେ ଯେବେ ଭୟଙ୍କର ହୃଦ୍-ରୋଗରେ ଆକ୍ରାନ୍ତ ହେଲି ମୁଁ, ସେଇ ସମୟରେ ଆରମ୍ଭ ହୋଇଥିଲା ଏଇ ଲେଖା । ଆକସ୍ମିକ ମୃତ୍ୟୁର ଭୟରୁ ମନକୁ ଅଲଗା କରି ରଖିବା ଦରକାର ଥିଲା । ଡାକ୍ତରମାନେ ଭାବୁଥିଲେ ଲେଖାଲେଖିରେ ମଗ୍ନ ରହିଲେ ମନ ଅଲଗା ରହିବ । ଭଲ ହେବ । ତା'ଛଡ଼ା ଚିକିତ୍ସାର ଖର୍ଚ୍ଚପାଇଁ ଭାବିବାକୁ ପଡ଼ୁଥିଲା । ଜଣେ ସମ୍ପାଦକଙ୍କୁ ତାର କଲି । ତାଙ୍କ ପତ୍ରିକାରେ ଏଇପରି କିଛିଟିଏ ଧାରାବାହିକ ଭାବେ ଲେଖିବାପାଇଁ ସେ ମୋତେ କହି ଆସୁଥିଲେ । ମୋ ତାରବାର୍ତ୍ତା ପାଇବାର ପରଦିନ ସମ୍ପାଦକ ମହାଶୟ ଆସି ପହଞ୍ଚିଗଲେ ଏବଂ ସାଙ୍ଗରେ ଆଣିଥିଲେ ମୋର ପ୍ରାପ୍ୟ ସମୁଦାୟ ଅର୍ଥ, ଆଗତୁରା ଦେବାକୁ··· । ମୋତେ ଆଗତୁରା ଅର୍ଥ ଦେଇଦେବାଟା ତାଙ୍କ ପକ୍ଷରେ ଥିଲା ଏକ ଦୁଃସାହସିକ ପଦକ୍ଷେପ । କାରଣ ମୁଁ ସେତେବେଳେ ଥିଲି ନିତାନ୍ତ ପୀଡ଼ିତ, ଅଳ୍ପ କେଇଟି ପରିଚ୍ଛେଦ ବ୍ୟତୀତ ମୁଁ ଯେ ଅଧିକ କିଛି ଲେଖିପାରିବି ସେପରି ବିଶ୍ୱାସ ଥିଲା ବହୁତ କମ୍ । ତଥାପି, ସେ ଥିଲେ ଚୁକ୍ତିର ସପକ୍ଷରେ । ମୋର ରୋଗା, ସରୁଜ ହାତଟିକୁ ଧରି ସେ ବସିପଡ଼ିଲେ ରୋଗଶଯ୍ୟା ନିକଟରେ । ଠିକ୍ ସେଇ ମୁହୂର୍ତ୍ତିରୁ ମୋତେ କବଳିତ କରି ରଖିଲା ଲେଖାଟି; ଗଭୀର ରାତିରେ ନୌକାଟିଏ କାଳୀ ରଙ୍ଗର ପାଣିକୁ ଛପ୍-ଛପ୍ କାଟି ଦ୍ରୁତ ଗତିରେ ଚାଲିଗଲା ଭଳି ମୋତେ ଲେଖାଟି ଟାଣି ନେଇଗଲା ଅତୀତ ଆଡ଼କୁ ।

ସେତେବେଳେ ଔଷଧ ଦେଇ ମୋତେ ନିଦ୍ରିତ ରଖାଯାଉଥିଲା । ତେଣୁ ନିଦ ଓ ନିଦ ମଧ୍ୟରେ ମିଳୁଥିବା ସୀମିତ ସମୟ ମଧ୍ୟରେ ମୁଁ ଲେଖି ଚାଲିଲି ନିରବଚ୍ଛିନ୍ନ ଭାବରେ; କେବଳ ସମ୍ପାଦକଙ୍କ ଚୁକ୍ତିର ସମ୍ମାନାର୍ଥେ ନୁହଁ; ସମସ୍ତ ଗୋପନ ଘଟଣାକୁ ପ୍ରକାଶ କରି ଆପଣା ଭିତରଟାକୁ ଶୂନ୍ୟ ଓ ହାଲୁକା କରିଦେବାପାଇଁ, ଯେପରିକି ସମୟ ଆସିଲେ ମୁଁ ସଂସାରରୁ ଏକ ଗ୍ଲାନି-ମୁକ୍ତ ଚୈତନ୍ୟର ସହିତ ବିଦାୟ ନେଇପାରିବି ।

ମୋର ସୁସ୍ଥ ହୋଇ ଉଠିବାଟା ସେଇ ଦୃଷ୍ଟିରୁ ଥିଲା ଅନେକଟା ଅନାଟକୀୟ । କ୍ରମେ ଏଇ ଲେଖା ଧାରାବାହିକ ଭାବେ ପ୍ରକାଶିତ ହେଲା । କେରଳର ପତ୍ରପତ୍ରିକା ଦୋକାନଗୁଡ଼ିକରେ ହେଲା ସେଇ ପତ୍ରିକାର ଭିଡ଼ । ଲେଖା ପଢ଼ି ମୋର ଆତ୍ମୀୟ ଓ

ବନ୍ଧୁବାନ୍ଧବମାନେ ଅପଦସ୍ଥ ଅବସ୍ଥାର ସମ୍ମୁଖୀନ ହେଲେ । ବିବାହିତ ସ୍ୱାମୀଙ୍କ ବ୍ୟତୀତ ମୁଁ ଆଉ ଜଣଙ୍କ ପ୍ରେମରେ ପଡ଼ିଥିବା କଥା ପାଠକମାନଙ୍କୁ କହିବାରୁ ମୋର ଖ୍ୟାତି-ସମ୍ପନ୍ନ ପରିବାରର ନାମରେ କଳଙ୍କ ଲଗାଇଥିଲି । ଅସ୍ପୃହଣୀୟ ଚରିତ୍ରର ପୁରୁଷଙ୍କ ପ୍ରେମରେ ପଡ଼ିଥିବା ବିଷୟ ମୁଁ ମାନିଯାଇଥିଲି ମଧ୍ୟ । ଏଣୁ ଛୁଟିରେ ଯେତେବେଳେ ଘରକୁ ଗଲି, ମୋତେ କେହି ଆଦର କଲେ ନାହିଁ । ଯଥାଶୀଘ୍ର ସମ୍ଭବ ମୁଁ ପଳେଇଗଲି ବମ୍ବେକୁ ।

କହିବାକୁ ଗଲେ—ଏଇ ଲେଖାଟି ପାଇଁ ମୂଲ୍ୟ ଆକାରରେ ମୋତେ ମୋର ଅନେକ-କିଛି ପ୍ରିୟକୁ ତ୍ୟାଗ କରିବାକୁ ପଡ଼ିଛି । ତଥାପି ଏଇ ବହିଟି ଲେଖିଛି ବୋଲି ମୁହୂର୍ତ୍ତଟିଏ ପାଇଁ ବି ଅନୁତାପ କରିନାହିଁ ମୁଁ । ଜୀବନରେ ଅନେକ ବହି ଲେଖିଛି । କିନ୍ତୁ ଏଇ ବହିଟି ଲେଖି ମୁଁ ଯେଉଁ ଆନନ୍ଦ ପାଇଛି ଅନ୍ୟ ବହିରୁ ତା' ପାଇ ନ ଥିଲି । ମୋର ଆଉ କିଛି କହିବାର ନାହିଁ ।

କମଳା ଦାସ

## ସୂଚୀ

ବିଷୟ ପୃଷ୍ଠା

●

# ଏକ

## ଗୋରାଙ୍କ ବିଦ୍ୟାଳୟରେ କଳା ବର୍ଣ୍ଣର ପିଲା

ମୁଁ ଯେତେବେଳେ ଶିଶୁ, ଓ ବଢ଼ୁଥିଲି କଲିକତାରେ, ସେତେବେଳେ ...... ବ୍ରିଟିଶ୍ ମାନେ ତଥାପି ଶାସନ କରୁଥିଲେ ଭାରତକୁ । ସମ୍ଭ୍ରାନ୍ତ ସ୍ତରରେ କିନ୍ତୁ ସେମାନେ ଆମ ସହିତ ସମସ୍କନ୍ଧ ପରି ବ୍ୟବହାର କରୁଥିଲେ । ଗୋଟିଏ ଇଂରେଜ ପରିବାର ପକ୍ଷରେ ଗୋଟିଏ ବା ଦୁଇଟି ଭାରତୀୟ ପରିବାର ସହିତ ଅନ୍ତରଙ୍ଗ ବନ୍ଧୁତା ରକ୍ଷିବା, ଏପରିକି ଘରକୁ ଯା-ଆସ କରିବା, ସେତେବେଳେ କିଛି ଅସାଧାରଣ କଥା ନ ଥିଲା ।

ସେ ସମୟରେ ରସ୍ ନାମକ ଜଣେ ଇଂରେଜ ଭଦ୍ରବ୍ୟକ୍ତି ଥିଲେ ମୋ ବାପାଙ୍କର ଉପରିକ ଅଫିସର । ତାଙ୍କ ଲାଲ୍ ବର୍ଣ୍ଣର ମୁହଁଟି ମୋର ମନେ ଅଛି । ମୋ ବାପାଙ୍କୁ 'ମାଇଁ ଗୁଡ୍ ଫ୍ରେଣ୍ଡ୍ ନାମ୍ବ୍ୟାର୍' ବୋଲି ସମ୍ବୋଧନ କରି ସେ ଯେତେବେଳେ ଆମ ଘରକୁ ଆସୁଥିଲେ, ଏକ ଅପୂର୍ବ ପୁଲକ ଆମ ସମସ୍ତଙ୍କର ହାଡ଼ ପର୍ଯ୍ୟନ୍ତ ସଂଚରି ଯାଉଥିଲା ।

ଥରେ ଆମେ ମାଲବାର ଗଲୁଁ, ବୁଢ଼ୀମାଙ୍କ ନିକଟକୁ, ମାଝ ମାସକ ପାଇଁ । ଆମର ପୂଝାରୀଟିକୁ ଛାଡ଼ିଗଲୁ ମିସେସ୍ ରସ୍‌ଙ୍କ ଜିମାରେ । ଉଦ୍ଦେଶ୍ୟ ଥିଲା ଯେ ସେଇ ସମୟ ଭିତରେ ପୂଝାରୀଟି ଇଉରୋପୀୟ ରନ୍ଧନ କୌଶଳର ଅସଲ କଥା ଗୁଡ଼ିକ ଶିଖିନେବ । ସେଇ ଥରକ କେବଳ ନୁହଁ ଆଉରି ଅନେକ ଛୁଟିରେ । ତାହା ବି ହେଲା । ଛୁଟି ପରେ ଛୁଟି ଅତିବାହିତ ହୋଇଯିବା ସହିତ ପୂଝାରୀଟି ବି ଇଉରୋପୀୟ ରନ୍ଧନ-ରୀତିର ଜଣେ ଅଭ୍ୟସ୍ତ ଓ କୁଶଳୀ କାରିଗରରେ ପରିଣତ ହୋଇଗଲା । କ୍ରମେ, ପୂଝାରୀର ନବାର୍ଜିତ ବିଦ୍ୟାର ଯଥାଯଥ ଉପଯୋଗ ନ୍ୟାୟରେ ଆମର ଦୈନନ୍ଦିନ ଅଭ୍ୟସ୍ତ ଖାଦ୍ୟର ରୂପ ଓ ପ୍ରକୃତି ବଦଳିଗଲା ।

ଭାତ ବଦଳରେ ସେ ଆମ ପାଇଁ ରାନ୍ଧିଲା ସୁପ୍, ତିଆରି କଲା କଟ୍‌ଲେଟ୍ ଓ ଷ୍ଟ୍ୟୁ । କେବଳ ମା'ଙ୍କ ପାଇଁ ସେ ରାନ୍ଧୁଥିଲା ଏକ ପ୍ଲେଟ୍ ଭାତ । କାରଣ, ଏତେ ବିଳମ୍ବରେ ମା'ଙ୍କର ରୁଚି ପରିବର୍ତ୍ତନ ପାଇଁ ଚେଷ୍ଟା କରିବା ଉଚିତ ନୁହେଁ ବୋଲି ସେ ମନେ କରୁଥିଲା । ମୋ ବାପା ଖାଉଥିଲେ କଣ୍ଟା ଓ ଛୁରି

ସାହାଯ୍ୟରେ । ଆମେ ପିଲାମାନେ, ଅର୍ଥାତ୍ ମୁଁ ଓ ମୋର ବଡ଼ଭାଇ, ଆଗରୁ ଖାଇ ଦେଉଥିଲୁ । ଆମର ଖାଇବା ବେଳେ ଦେଖା ଚାହାଁ ବା ବୁଝା ବୁଝି କରିବାକୁ କେହି ନ ଥାନ୍ତି । ବିଦେଶୀ ଖାଦ୍ୟ ହେଲେ କଣ୍ ହେବ ଆମେ ଖାଉଥିଲୁ ହାତରେ, ଆଙ୍ଗୁଳି ଗୃଟି ଗୃଟି, ପ୍ଲେଟ୍‌ରେ ବଳା ଯାଇଥିବା ସବୁକିଛିକୁ ପୋଛିଲି ଭଳି, ଅତି ହୃସ୍ତଖୁସିରେ । ପାଖରେ ଠିଆହୋଇଥିବା ପୂର୍ତ୍ତୀଗିଜ୍ ଆୟା ଆମର ଖାଇବା ଢଙ୍ଗ ଦେଖି ବିରକ୍ତିରେ ମନେମନେ ରାଗି ଯାଉଥିଲା । ତା ଦୃଷ୍ଟିରେ ଆମେ ଥିଲୁ ବର୍ବର ।

ଗୋଟିଏ ଅଟୋମୋବାଇଲ ପ୍ରତିଷ୍ଠାନରେ ମୋ ବାପା କାମ କରୁଥିଲେ । ସେଥିରେ ତାଙ୍କୁ ସବୁବେଳେ ବ୍ୟସ୍ତ ରହିବାକୁ ପଡୁଥିଲା । ଭାରତୀୟ ରାଜକୁମାର ଓ ସେମାନଙ୍କର ଆତ୍ମୀୟ ମାନଙ୍କୁ ରୋଲସ୍ ରସ୍, ହମ୍ବର, ଓ ବେଣ୍ଟଲେ ଗାଡ଼ି ବିକିବା ଥିଲା ତାଙ୍କର କାମ । ଆଉ ମୋ ମାଆ : ତାଙ୍କର କାର୍ଯ୍ୟଧାରା ଥିଲା କିଛିଟା ଅସ୍ପଷ୍ଟ । ଉଦାସୀନତା ଥିଲା ତାଙ୍କର ସ୍ୱଭାବ । ଗୋଟିଏ ବଡ଼ ଚଉପଦ ପଲଙ୍କ ଉପରେ ପେଟେଇ ପଡ଼ି ସେ ମାଲୟାଲମ୍ ଭାଷାରେ କବିତା ଲେଖୁଥିଲେ । ସେଇଥିରେ ତାଙ୍କର ସମସ୍ତ କଟିଯାଉଥିଲା । ସେତେବେଳେ ଆମର କେହି ଚବିଶ ଘଣ୍ଟିଆ ଚାକରାଣୀ ମଧ୍ୟ ନ ଥିଲେ । ଫଳରେ ପ୍ରାୟ ଏକ ଫର୍ଲଂ ଦୂରରେ ଥିବା ଗୋଟିଏ ଇଉରୋପୀୟ ବିଦ୍ୟାଳୟକୁ ଆମକୁ ନେଇ ଯାଉଥିଲା ପୂର୍ତ୍ତୀଗିଜ୍ ଓ ନେଇ ଆସୁଥିଲା ଅପରାହ୍ଣରେ ।

କିନ୍ତୁ ପୂର୍ତ୍ତୀଗିଜ୍‌ଟି ସ୍ନେହଶୀଳ ନ ଥିଲା । ଏଣୁ ଆମେ ଯେ ଉଣା ଅଧିକେ ଅବହେଳିତ ଭାବରେ ବଢ଼ିଛୁ, ଏକଥା ସ୍ୱୀକାର କରାଯାଇପାରେ । ବିଶେଷତଃ, ଆମେ ଯେଉଁ ସାମାଜିକ ପରିବେଶରେ ରହୁଥିଲୁ ଖାଦ୍ୟପେୟ ତଥା ଅନ୍ୟାନ୍ୟ ଅନେକ ଦୃଷ୍ଟିରୁ ତାହା ଥିଲା ଶିଶୁମାନଙ୍କ ପ୍ରତି ଯତ୍ନଶୀଳ । ଏଣୁ ଆମେ ଯେ ଅବହେଳାରେ ଓ ଅଯତ୍ନରେ ବଢ଼ୁଛୁ ଏ ସଚେତନତା ଆମର ମାନସିକ ସ୍ତରରେ ଜାଗି ଉଠିଥିଲା । ଫଳରେ ଆମର ସାହା ପୂର୍ତ୍ତୀଗିଜ୍ ସହିତ ଏକ ପ୍ରୀତିର ସମ୍ପର୍କ ଗଢ଼ି ଉଠିବା ଥିଲା ସ୍ୱାଭାବିକ । ହଁ, ଉପାୟ କଣ ଥିଲା ? କୁଷ୍ଠାକ୍ରାନ୍ତ ରୋଗୀ ଓ ତାକୁ ପ୍ରତ୍ୟହ ହାତ-ଟଣା କାଠ-ଗାଡ଼ି ଉପରକୁ ଟେକି ବସାଇ ଓ ଗାଡ଼ି ଟାଣି ଟାଣି ବୁଲି ଭିକ ମାଗିବାରେ ସହାୟତା କରୁଥିବା ଲୋକ ଭିତରେ ଯେଉଁ ପ୍ରୀତି ସମ୍ପର୍କ ଗଢ଼ି ଉଠେ, ଆମର ପ୍ରୀତିଟି ଥିଲା ସେଇପରି ।

ମୋର ବଡ଼ଭାଇ ବେଶ୍ ସୁସ୍ଥ, ବେଶ୍ ସବଳ ଥିଲେ । ତାଙ୍କର ବର୍ଣ୍ଣ ଥିଲା କଳା; କିନ୍ତୁ ତାଙ୍କର ଚକାଚକା ଆଖି ଯୋଡ଼ିକ ଉଜ୍ଜ୍ୱଳତାରେ ଝଲସି ଉଠୁଥିଲା ।

ତାଙ୍କ ଶ୍ରେଣୀରେ ସେ ଥିଲେ ସବୁଠାରୁ ବୁଦ୍ଧିମାନ୍ ଛାତ୍ର । କିନ୍ତୁ, ଗୋରା-ପିଲାମାନେ ସବୁବେଳେ ତାଙ୍କୁ ଥଟ୍ଟା କରୁଥିଲେ । ସେମାନଙ୍କର ଥଟ୍ଟା ଥିଲା ବାସ୍ତବିକ ଅତ୍ୟାଚାର । ଦିନେ ଦିନେ ଗୋରା ପିଲାମାନେ ମୋ ଭାଇଙ୍କ ନାକପୁଡ଼ାରେ ମୁନିଆଁ ପେନ୍‌ସିଲ୍ ଗେଞ୍ଜି ଦେଉଥିଲେ ବି । ଦିନେ ଏପରି ହେଲା ଯେ ମୁନିବାଜି ଭାଇଙ୍କ ନାକରୁ ଝରିଲା ରକ୍ତ ଓ ତାଙ୍କ ଜାମାର ଆଗପଟ ଯାକ ଲାଲ୍ ରକ୍ତରେ ଭିଜିଗଲା । ଏପରି ନିର୍ଦ୍ଦୟ ଆଚରଣରେ ଭାଇ କଷ୍ଟହେଲେ ବି କାନ୍ଦିପାରିଲେ ନାହିଁ, କାଠ ପାଲଟିଗଲେ, ଆଖିରେ ଜକେଇ ଆସିଥିବା ଲୁହସବୁ ଢଳ ଢଳ ହୋଇ ଲାଖି ରହିଲେ ପତାରେ, ତଳକୁ ଖସିପାରିଲେ ନାହିଁ । ଏସବୁ କାଣ୍ଡ କରିଥିଲା ଉଇଲିଅମ୍ । ଭାଇଙ୍କର ଏ କରୁଣ ଅବସ୍ଥାରେ ବି ତାର ହୃଦ ତରଳିଲା ନାହିଁ ? ସମ୍ବେଦନା ବଦଳରେ ସେ ତଥାପି ଥଟ୍ଟାକରି କହିଲା—"ଆରେ କାଳିଆ ! ତୋ' ରକ୍ତର ରଙ୍ଗ ଲାଲ୍ ତ !" ଅବସ୍ଥା ଦେଖି ମୁଁ ରାଗରେ ଉଇଲିଅମ୍‌ର ମୁହଁକୁ ଗ୍ରମ୍ପୁଡ଼ି ପକେଇଲି । କିନ୍ତୁ ସାଙ୍ଗେ ସାଙ୍ଗେ ବଳୁଆ ବଳୁଆ ଆଙ୍ଗ୍ଲୋ-ଭାରତୀୟ ପିଲାମାନେ ମୋତେ ଅକ୍ତିଆର୍ କରିନେଲେ । ଏଇ ଆଙ୍ଗ୍ଲୋ-ଭାରତୀୟ ପିଲାମାନେ ସବୁବେଳେ ଗୋରାପିଲାଙ୍କ ସପକ୍ଷରେ ଥିଲେ । କିନ୍ତୁ, ସ୍କୁଲ-ପୋଷାକ ତଳେ ଥିବା ଆମର ଶ୍ୟାମ-ରଙ୍ଗର ଚର୍ମଟି ପାଇଁ ଆମକୁ ଯେ ଏପରି ଅତ୍ୟାଚାର ଓ ଯନ୍ତ୍ରଣା ଭୋଗ କରିବାକୁ ପଡ଼ୁଥିଲା—ତାହାର ବିନ୍ଦୁ-ବିସର୍ଗ ପର୍ଯ୍ୟନ୍ତ ଆମେ ବାପ-ମାଙ୍କ ଆଗରେ ପ୍ରକାଶ କରୁ ନଥିଲୁ ।

ଆମ ସ୍କୁଲ୍‌କୁ କେବେ କେବେ ବିଶିଷ୍ଟ ପରିଦର୍ଶକମାନେ ଆସୁଥିଲେ । କେତେବେଳେ ଆସୁଥିଲା ଉଜ୍ଜ୍ୱଳ ପରରେ ଆବୃତ ପକ୍ଷୀଟିଏ ଓ ଅଳ୍ପ ସମୟ ଭିତରେ ଆମକୁ ଖୁସିକରି ଯାଉଥିଲା । କେତେବେଳେ ଆସୁଥିଲେ ଗଭର୍ନର୍‌ଙ୍କ ପତ୍ନୀ, କେବେ ପୁଣି ଧଳା-ଦାଢ଼ିବାଲା ଆଡ଼୍‌ମିରାଲ୍ ଜଣେ, ଅଥବା କେତେବେଳେ ଧୂସର ରଙ୍ଗର ସିଲ୍‌କ ପରିଧାନ କରିଥିବା କୌଣସି ଶ୍ୱେତାଙ୍ଗୀ ଯେ ବକିଂହାମ୍ ପ୍ରାସାଦ ସହିତ ନିଜର ସମ୍ପର୍କ ଅଛି ବୋଲି ଗର୍ବର ସହିତ ସାବ୍ୟସ୍ତ କରୁଥିଲେ ।

ଆମ ସ୍କୁଲ୍‌ଟି ତ ସେମିତି କିଛି ବଡ଼ଧରଣର ନ ଥିଲା । କିନ୍ତୁ କେମିତି ଆମର ପ୍ରିନ୍‌ସିପାଲ୍,—( ଯାହାକୁ ଆମେ 'ମାଡାମ୍' ବୋଲି ସମ୍ବୋଧନ କରୁଥିଲୁ )—ଏପରି ସବୁ ବିଶିଷ୍ଟ ବ୍ୟକ୍ତିଙ୍କୁ ସ୍କୁଲ୍‌କୁ ଆଣିବାର ବ୍ୟବସ୍ଥା କରିପାରୁଥିଲେ—ତାହା ମୁଁ ଜାଣେନା । ଗୋରାମାନଙ୍କର ଜାତୀୟ ସଙ୍ଗୀତ—'ରୁଲ୍ ବ୍ରିଟାନିଆ ରୁଲ୍'-ଗୀତଟିକୁ ଅନ୍ୟ ସ୍କୁଲ୍‌ଗୁଡ଼ିକର ତୁଳନାରେ ଆମେ ସବୁ ଅଧିକ ଚଡ଼ାଗଳାରେ ଗାଉଥିଲୁ । ସମ୍ଭବତଃ ସେଇ କାରଣରୁ । ସକାଳେ ଗୋଟିଏ ବଡ଼ ପିଆନୋ ନିକଟରେ ବସୁଥିଲେ ମାଡ଼ାମ୍ । ପିଆନୋର ଉପରେ

ଥିଆ ହୋଇଥିଲା ବ୍ରିଟିଶ୍ ରାଜପରିବାରର ଫ୍ରେମ୍‌ବନ୍ଧା ଫଟୋ । ତା'ର ସମ୍ମୁଖରେ ବାଜି ଉଠୁଥିଲା ପିଆନୋ ଓ ଆମେସବୁ ଉଚ୍ଚ ସ୍ୱରରେ ଗାଉଥିଲୁ—"ବ୍ରିଟନସ୍ ସାଲ୍ ନେଭର୍ ନେଭର୍ ବି ସ୍ଲେଭ୍‌ସ୍"—(ଇଂରେଜ କେବେ ଦାସ ହେବ ନାହିଁ ନାହିଁ···) । ଆମର ଗୀତଶୁଣି ବାହାରେ ଯାଉଥିବା ଡାକବାଲାର ଗତି ମଧ୍ୟ ମନ୍ଥର ହୋଇ ଯାଉଥିଲା । ରାଜା ଷଷ୍ଠ ଜର୍ଜ ( ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ) ଫଟୋର ଫ୍ରେମ ଭିତରୁ ଆମକୁ ଆଖିମିଟିକା ମାରୁଥିଲେ, ଯଦିଓ ସେ ଜାଣିଥିଲେ ଯେ ଭାରତବର୍ଷରେ ବ୍ରିଟିଶ୍‌ମାନେ ଯାହା ଗାଉଛନ୍ତି ତାହା ତାଙ୍କର ହଂସଗୀତ ।

ସାର୍ଲି ଟେମ୍ପଲ୍ ସେତେବେଳେ ଥିଲେ ଆମ ଫେସନ୍‌ର ଆଦର୍ଶ । ତାଙ୍କର ସୁନା ଅଳଙ୍କାର ଓ ଦାନ୍ତ-ଖୋଲା ହସ ଥିଲା ଆକର୍ଷଣୀୟ । ଟିକି ଝିଅ ପିଲମାନେ ତାଙ୍କୁ ଅନୁକରଣ କରୁଥିଲେ । ଆମ ସ୍କୁଲରେ ଠିକ୍ ପିଆନୋର ପଛକୁ ତାଙ୍କର ଛବି ଟଙ୍ଗା ହୋଇଥିଲା । ମୋ କ୍ଲାସ୍‌ରେ ଆମର ଆଉ ଜଣେ ସାର୍ଲି ଥିଲା । ସେ ଥିଲା ସ୍କଟ୍‌ଲଣ୍ଡର । ତାର ଚିବୁକ ଥିଲା ବାଇଗଣି । କାନରେ ସେ ହଲହଲିଆ ଅଳଙ୍କାର ପିନ୍ଧୁଥିଲା । ବିଶିଷ୍ଟ ପରିଦର୍ଶକମାନେ ସ୍କୁଲ୍‌କୁ ଆସିଲେ ତାଙ୍କପାଇଁ ସାର୍ଲି ହିଁ ଫୁଲତୋଡ଼ା ନେଇ ଯାଉଥିଲା ।

ଥରେ ମୋର ସ୍ୱରଚିତ କବିତାଟିକୁ ଆବୃତ୍ତି କରିବାକୁ କୁହାଗଲା ସାର୍ଲିକୁ । ପରିଦର୍ଶକ ସେତେବେଳେ ପଚାରିଲେ—କିଏ ଲେଖିଛି, ଆମ ଅଧ୍ୟକ୍ଷା କହିଲେ—ଅବଶ୍ୟ ସାର୍ଲି, ଯେ ସୌନ୍ଦର୍ଯ୍ୟ ଓ ବୁଦ୍ଧିର ଏକ ସମନ୍ୱୟ । ତା'ପରେ ଗଭର୍ଣ୍ଣର୍‌ଙ୍କ ପତ୍ନୀଙ୍କଠାରୁ ସାର୍ଲିକୁ ଗୋଟିଏ ବିଶେଷ ଚୁମ୍ବନ ମିଳିଥିଲା । ସେ କହିଲେ—ଆହା କେଡ଼େ ସୁନ୍ଦର ଯୁବତୀଟିଏ ରେ ।

ସ୍କୁଲ୍‌କୁ ପରିଦର୍ଶକମାନେ ଆସିଲେ ଶ୍ୟାମଳ ଶିଶୁମାନଙ୍କୁ ଚମତ୍କାର ଭାବରେ ଲୁଚେଇ ଦିଆଯାଉଥିଲା । ପାଇଖାନା ପାଖ ବାରଣ୍ଡାରେ ସେମାନଙ୍କୁ ଅପେକ୍ଷା କରିବାକୁ କୁହାଯାଉଥିଲା । ସ୍କୁଲ୍‌ର ଆୟା ମାନେ ସେଇସବୁ ପିଲମାନଙ୍କ ସହିତ ଗପସପ କରି ସେଠାରେ ରହୁଥିଲେ । ଆମ ଭାରତୀୟ ପିଲଙ୍କ ମଧ୍ୟରେ କେହି ଖୁବ୍ ସୁନ୍ଦର ଥିଲେ ବୋଲି କହି ହେବନି । ଆମେ ଥିଲୁ ସର୍ବମୋଟ ଛ'ଜଣ, ଲୁଇକୁ ମିଶେଇ । ଆଙ୍ଗ୍ଲୋ-ଭାରତୀୟ ସନ୍ତାନ ହେଲେ ବି ଲୁଇର ବର୍ଣ୍ଣ କଳା ଥିବାରୁ ସେ ଆମ ପଟରେ କି ଗୋରାପିଲଙ୍କ ପଟରେ ରହିବ ଠିକ୍ କରିପାରି ନଥିଲା । ଆମକୁ ତ ଗୋରାମାନେ ଘୃଣା ଚକ୍ଷୁରେ ଦେଖୁଥିଲେ ।

କିନ୍ତୁ ବିଚାରି ଲୁଇ ଥିଲା ସବୁଠାରୁ ଅଧିକ ଘୃଣିତ । ତଥାପି ସେ ଗୋରାପିଲାଙ୍କ ପଛରେ ଗୋଡ଼େଇଥିଲା, ଓ ସେମାନଙ୍କର ଦୟା ଓ ସଂପ୍ରୀତି ପାଇବାକୁ ବ୍ୟାକୁଳ ଥିଲା । ସେଥିପାଇଁ ତାକୁ କୁକୁର ପରି ଭୁକିବାକୁ ଓ ଗଧପରି ରଡ଼ି କରିବାକୁ ପଡୁଥିଲା ।

# ଦୁଇ

# ଶୈଶବର ଦୁଃସ୍ୱପ୍ନ ଓ ବନ୍ଧୁ

ଖ୍ରୀ: ଅ: ୧୯୨୮ରେ ମୋର ବାପା ବିବାହ କରିଥିଲେ । ଦେଶରେ ସେତେବେଳେ ମହାତ୍ମା ଗାନ୍ଧୀଙ୍କ ପ୍ରଭାବ ଥିଲା ଅସୀମ । ମହାତ୍ମା ଯେଉଁ ସରଳତାର ପ୍ରଚାର କରୁଥିଲେ ମଧ୍ୟବିତ୍ତ ଶ୍ରେଣୀକୁ ତାହା ଆକୃଷ୍ଟ କରିଥିଲା । ନିର୍ବନ୍ଧ ସରିବା ପରେ ପରେ ବାପା ଦୃଢ଼ଭାବରେ ଚୁକ୍ତି କରାଇନେଲେ ଯେ ତାଙ୍କ ପତ୍ନୀ ଖଦଡ଼ ବ୍ୟତୀତ ଅନ୍ୟ କିଛି ପିନ୍ଧିପାରିବେ ନାହିଁ । ସେଇଟି ପୁଣି ଧଳା ହେବା ଶ୍ରେୟସ୍କର ।

ବିବାହ ଶେଷ ହେବା ପରେ ପରେ ବାପାଙ୍କ କଥା ଅନୁସାରେ ମାଆ ନିଜ ଦେହରୁ ସମସ୍ତ ଅଳଙ୍କାର ଖୋଲିଦେଲେ । କେବଳ ମଙ୍ଗଳସୂତ୍ରଟି ଲାଗି ରହିଥିଲା । ଏପରି ଘଟଣା ବିଧବା-ଉଚିତ ହେଲେହେଁ ମା' ସେଥିରେ କୌଣସି ଆପତ୍ତି କରି ନ ଥିଲେ । ତାଙ୍କ ଗ୍ରାମରୁ ଓ ସକଳ ନିରାପତ୍ତା ମଧ୍ୟରୁ ଦୂରକୁ ନେଇଯିବାକୁ ଆସିଥିବା ସେଇ ଅଜ୍ଞାତ ବିଦେଶୀଟିକୁ ମା' ପ୍ରାଣପଣେ ଭୟ କରୁଥିଲେ । ସେ ତାଙ୍କର ବାପା ଓ କକା ଉଭୟଙ୍କୁ ଡରୁଥିଲେ । କାରଣ ସେହି ଦୁଇଜଣଙ୍କ ପ୍ରରୋଚନାରେ କେବଳ ପ୍ରଥମ ଥରପାଇଁ ତାଙ୍କ ପରିବାରକୁ ବରୁଣି ହୋଇ ଆସିଲା ଏପରି ଜଣେ ବର ଯେ କି ନା ରାଜବଂଶଜ ନା ବ୍ରାହ୍ମଣ ।

ନଲପତ୍ର ବଂଶର ଆର୍ଥିକ ଅବସ୍ଥା ସେତେବେଳେ ଥିଲା ସନ୍ଦେହଜନକ । ଋଣ ପରିଶୋଧ କରିବା ଓ ମକଦ୍ଦମା ଲଢ଼ିବାରେ ତାଙ୍କର ସମସ୍ତ ଗହଣା-ଗଣ୍ଠି ବିକା ସରିଥିଲା । ଅବଶ୍ୟ ମୋ ବାପା ଜଣେ ଆଳସ୍ୟପରାୟଣ ଜମିଦାର ନ ଥିଲେ । ଜୀବିକା ଅର୍ଜନପାଇଁ ସେ କଲିକତାରେ କାମ କରୁଥିଲେ । ତାହାହିଁ ତାଙ୍କୁ ଆର୍ଥିକ ଦୁର୍ଗତିର ଦାରୁଣ ମରୁଭୂମି ମଧ୍ୟରୁ ରକ୍ଷା ପାଇବାରେ ପ୍ରଧାନଭାବେ ସହାୟକ ହୋଇଥିଲା ।

ବିବାହ ପରେ ବାପା-ମା କଲିକତା ଗଲେ । ମୋର ବୁଢ଼ୀ-ମା ଗଲେ ନବ-ଦମ୍ପତିଙ୍କର ସହିତ, ତାଙ୍କୁ ନୂତନ ସଂସାର-ସ୍ଥାପନାର ଢଗ ଜଣେଇ ଦେବାକୁ, କିଛିଦିନ ପାଇଁ । ମୋ ମା'ତ ମୋ ବାପାଙ୍କ ପ୍ରେମରେ ପଡ଼ିନଥିଲେ । ସେମାନଙ୍କ ସ୍ୱଭାବରେ ବି କୌଣସି ମେଳ ନ ଥିଲା । ସାଂଘାତିକ ଭାବରେ ସେମାନେ ଥିଲେ ପରସ୍ପର ପକ୍ଷରେ ଅନୁପଯୁକ୍ତ । କିନ୍ତୁ ମୋ ମା' ଥିଲେ ଖୁବ୍ ପ୍ରକୃତିର । ଏଣୁ ସାଂସାରିକ ଜୀବନରେ ସହିତ ଅଛି ବୋଲି ବାହାରକୁ ଜଣାପଡ଼ୁଥିଲା । ଆତ୍ମୀୟ-ସ୍ୱଜନ ଓ ବନ୍ଧୁ-ବାନ୍ଧବମାନେ ବି ସେଥିକରେ ସନ୍ତୁଷ୍ଟ ଥିଲେ । ଏଇପରି ଏକ ଶୁଷ୍କ ଦାମ୍ପତ୍ୟରୁ ପ୍ରଥମେ ଯେଉଁ ସନ୍ତାନ ଦୁଇଟିର ସୃଷ୍ଟି ଘଟିଥିଲା, ତା' ଭିତରୁ ଗୋଟିଏ ମୁଁ ଓ ଅନ୍ୟଟି ମୋ ଭାଇ । ରକ୍ତଗତ ନ୍ୟାୟରେ କେତେକ ସାଧାରଣ ଲକ୍ଷଣ ସହିତ ଆମେ ସେମାନଙ୍କଠାରୁ ପାଇଥିଲୁ କଳା ଚମଡ଼ାର ପ୍ରକାଣ୍ଡ ବୋଝ ।

ଆମର ଦେହର ବର୍ଣ୍ଣଯୋଗୁ ସମ୍ଭବତଃ ବାପା-ମା ହତାଶ ହୋଇଯାଇଥିଲେ । ପ୍ରକାଶ୍ୟରେ ନ କହିଲେ ବି ସେମାନଙ୍କର ଆଚରଣ ଓ କଥାବାର୍ତ୍ତାରୁ ତାହା ସ୍ପଷ୍ଟରୂପେ ଜଣାପଡ଼ୁଥିଲା । ଦିନେ ଦିନେ ବାପା ଆମକୁ ପ୍ରଚଣ୍ଡ ଗାଳି ଦେଉଥିଲେ ଓ ଖାର୍ଣ୍ଣି ଜଡ଼ାତେଲ ପେଇଦେବେ ବୋଲି କହୁଥିଲେ । ସେଇଥିରୁ ତାଙ୍କ ମନୋଭାବ ବୁଝି ହେଉଥିଲା । ବାପାଙ୍କ ଖାର୍ଣ୍ଣି ଜଡ଼ାତେଲ ପିଆଇବା କଥା ପ୍ରକୃତରେ ଆମ ପକ୍ଷରେ ଥିଲା ଡାଆଣୀ-ଡର ଭଳି । ଆମେ ଭାବୁଥିଲୁ, ବୋଧହୁଏ କେବେ ଦିନେ ସକାଳ ହେବା ପୂର୍ବରୁ ଜବର୍ଦସ୍ତ ଆମର ନିଦ ଭାଙ୍ଗି ଗିଲାସରେ ଜଡ଼ାତେଲ ଧରି ଦୃଢ଼ ଓ କର୍କଶ ହାତମାନେ ଆମକୁ ବଳାତ୍କାର କରି ନିଶ୍ଚୟ ପିଆଇବେ ଓ ସବୁ ଢୋକ ନ ମାରିଲା ଯାଏଁ ଆମର ଓଠ ଚିପି ଧରିବେ । ଆମେ ଢୋକସାରିବା ପରେ ପରେ ତକିଆ ଉପରେ ନିସ୍ତେଜ ହୋଇ ପଡ଼ିଯିବୁ । କେବଳ ଅତ୍ୟାଚାରଜନିତ ଯନ୍ତ୍ରଣାରେ ଆଖିରୁ ଆମର ଧାର ଧାର ଲୁହ ଗଡ଼ିଯାଉଥିବ ।

କ୍ରମଶଃ ଆମେ ଅନୁଭବ କଲୁ ଯେ ପ୍ରକଟିତ ହେବାଠାରୁ ଲୁକ୍କାୟିତ ରହିବା ଆମ ପକ୍ଷରେ ଉଚିତ । ସେଥିପାଇଁ ଆମର ଚଲା-ବୁଲା ହସ-ଖୁସିର ସ୍ଥାନ ଭାବରେ ଆମେ ବାଛିନେଲୁ ଷ୍ଟୋରଘର । ଷ୍ଟୋରଘରେ ଆମର ବ୍ୟକ୍ତିସମ୍ମାନରେ ଆଞ୍ଚ ଆସିଲା ଭଳି କିଛି ନ ଥିଲା । ଝାଡ଼ୁଦାର ଓ ମାଳୀ ସହିତ ଚାଲିଲା ଆମର କଥାବାର୍ତ୍ତା ଓ ଗପସପ । ମାଳୀ ଆମ ଘର ପଛକୁ ଥିବା ଗୋଟିଏ ପୁରାତନ ଇଉରୋପୀୟ କୋଠିରୁ ଆମ ଡ୍ରଇଂ-ରୁମ୍‌ର ଫୁଲଦାନୀ ପାଇଁ ପ୍ରତିଦିନ ସୁନ୍ଦର ସୁନ୍ଦର ବିଲାତି ଫୁଲ ତୋଳି ଆଣୁଥିଲା ।

ମୋଟରଗାଡ଼ି କମ୍ପାନିର ମରାମତି ସ୍ଥଳର ଉପର ମହଲାରେ ଥିଲା ଆମର ବସା । ଉପରେ ପହଞ୍ଚିବା ପାଇଁ ଆମକୁ ଛତିଶଟି ପାହାଚ ଅତିକ୍ରମ କରିବାକୁ ପଡ଼ୁଥିଲା । ତା'ତଳେ ପଡ଼ୁଥିଲା ଗ୍ୟାରେଜ ରହିବା କୋଠରୀ, ଯେଉଁଠି ପାଇପ୍ ଫାଟିଥିବାରୁ ସବୁବେଳେ ଝରିବାର ଶବ୍ଦ ଶୁଣାଯାଉଥିଲା । ସେଠାରେ ପେଟ୍ରୋଲ ଗନ୍ଧ ଥିଲା ଉତ୍କଟ । ଯେ କେହି ସେହି ପାହାଚରେ କ୍ଷଣେ ଅଟକିଯିବ, ଗନ୍ଧଟି କେଉଁଠୁ ଆସୁଛି ଜାଣିବା ପାଇଁ । କିନ୍ତୁ, ଉପରେ ଥିବା ବୈଠକଖାନା ସବୁବେଳେ ଉଦ୍ଭିଦ ଓ ଫୁଲମାନଙ୍କର ବାସନାରେ ପରିପୂର୍ଣ୍ଣ ଥିଲା, ଯଦିଓ ପରିଦର୍ଶକ କ୍ୱଚିତ୍ ଆସୁଥିଲେ ସେଠାକୁ । ଆମ ବସାରେ ଧଳା ଖଦଡ଼ର ପର୍ଦ୍ଦା ଲାଗିଥିଲା, ପ୍ରତି ପନ୍ଦର ଦିନ ଅନ୍ତରରେ ସେସବୁକୁ ଖୋଲାଯାଇ ପରିବର୍ତ୍ତନ କରାଯାଉଥିଲା । ଛୁଟି ଦିନରେ ବଡ଼ ବଡ଼ ଝରକା କଡ଼ରେ ମୁଁ ଓ ମୋ ଭାଇ ବସି ବାହାରର ଦୃଶ୍ୟ ଦେଖୁଥିଲୁଁ । ବେଳେ ବେଳେ ଟାଣ ସୂତାରେ ବାନ୍ଧି ରବର କଣ୍ଢେଇ ଝୁଲାଇ ଦେଉଥିଲୁ ଏକଦମ୍ ତଳ ରାସ୍ତାକୁ; ବାଟୋଇମାନଙ୍କୁ ଠକେଇ ହଇରାଣ କରିବା ଥିଲା ଆମର ଚକ୍ରାନ୍ତ । ଯଦି କୌଣସି ବାଟୋଇ ସନ୍ଦେହରେ ପଡ଼ି କଣ୍ଢେଇଟିକୁ ଧରିବାକୁ ଆସେ, ଆମେ ସାଙ୍ଗେ ସାଙ୍ଗେ ସୂତାକୁ ଉପରକୁ ଟାଣିନେଇ ପୂରା ଶୋଇବା ଘରେ ଲୁଚିଯାଉଁ । ବାଟୋଇଟି କାଳେ ଆମକୁ ଧରିବା ପାଇଁ ଉପରକୁ ଚାଲିଆସିବ, ସେଇ ଡରରେ । ବାସ୍ତବିକ ସେଇଟି ଥିଲା ଆମର ରୋମାଞ୍ଚକର ଖେଳ ।

ଆମର ମାତ୍ର ଜଣେ ବନ୍ଧୁ ଥିଲେ, ହଁ ଠିକ୍ ଜଣେ । ସେ ଆମର ହାତ ଛୁଇଁବାକୁ ଭଲପାଉଥିଲେ ଓ ଆମ ସହିତ ସାଧାରଣ ଜୀବନ ବିଷୟରେ ଗପୁଥିଲେ । ସେ ଥିଲେ ମୋଟରଗାଡ଼ି କମ୍ପାନୀର ଷ୍ଟୋର୍ସ୍ ମ୍ୟାନେଜର୍ । ଭଦ୍ରଲୋକ ଟିକିଏ ମୋଟା । ତାଙ୍କର ନାମ ଥିଲା ମେନନ୍ । ଉଷ୍ମ ଦି-ପହର-ବେଳେ ଆମ ମା' ଶୋଇ ପଡ଼ୁଥିଲେ; ସେତିକିବେଳେ ଆମେ ଚୁପ୍‌ଚାପ୍ ଖସିଯାଉଥିଲୁ ତାଙ୍କ ପାଖକୁ । ସେ ଟେବୁଲ୍ ନିକଟରେ ବସି ଗୋଟିଏ ବଡ଼ କାଚଗ୍ଲାସ୍‌ରେ ଫେନିଳ ଚା' ଫୁଙ୍କି ଫୁଙ୍କି ପିଉଥିଲେ ଓ ପିଇଲାବେଳେ ତାଙ୍କର ବହଳିଆ ଲମ୍ବା ନିଶ ଓଦା ହୋଇଯାଏ ।

ସେଇ ସମୟରେ ଗୋଟିଏ ମାଲୟାଲି ପରିବାର ସେଠାରେ ରହୁଥିଲେ । ଆମ ସହିତ ତାଙ୍କର ପ୍ରିୟତା ଥିଲା । ତାଙ୍କର ଦୁଇଟି ପୁଅ ଥିଲେ । ସବା ସାନପୁଅଟି ଥିଲା ଦୁର୍ବଳ ଓ କ୍ଷୀଣ । କିନ୍ତୁ ତା'ର ଥିଲା ଗୋଟିଏ କଣ୍ଢେଇ ଘର । ଥରେ ଆମେ ତାଙ୍କ ଘରକୁ ବୁଲିଯାଇଥିଲା ବେଳେ ସେଇଟି ସେ ଆମକୁ ଗର୍ବର ସହିତ ଦେଖାଇଥିଲା । କଣ୍ଢେଇ-ଘରଟି କଥା ମୁଁ ମେନନ୍‌ଙ୍କୁ କହିଲି । ସେଥିରେ

ମେନନ୍ ଆତ୍ମ-ପ୍ରସାଦ ଅନୁଭବ କଲେ ବୋଧହୁଏ । କାରଣ ଗୋଟିଏ ମାସ ଭିତରେ ସେ ମୋ ପାଇଁ ଗୋଟିଏ ବଡ଼ ଧରଣର କଣ୍ଢେଇ-ଘର ଆଣିଦେଲେ । କଣ୍ଢେଇ-ଘରଟି ଥିଲା ସବୁ ଦୃଷ୍ଟିରୁ ସମ୍ପୂର୍ଣ୍ଣ; ତହିଁରେ ପଲଙ୍କ ଚୌକି ସୋଫା ମଧ୍ୟ ଖଞ୍ଜା ଯାଇଥିଲା । ମେନନ୍ ଉତ୍ସାହର ସହିତ ନିଜେ ଛୁରୀ ସାହାଯ୍ୟରେ ପ୍ରସ୍ତୁତ କରିଥିଲେ । ପିତ୍ତଳ ଗୁଆଣି କରାଯାଇଥିବା ଗୋଟିଏ ଗୋଲ୍ ଟେବୁଲ୍ ଉପରେ ସେଇଟି ରଖାଗଲା । ରାତିରେ ଆଲୁଅ ସବୁ ଜଳି ଉଠିବା ପରେ ଆମର କଣ୍ଢେଇ-ଘରଟି ଗୋଟିଏ ତାଜ୍‌ମହଲ୍ ପରି ରମଣୀୟ ଓ ଉଜ୍ଜ୍ୱଳ ଦିଶୁଥିଲା । ତୁଳନାରେ ବନ୍ଧୁର ସେଇ ଘରଟି ଥିଲା କ୍ଷୁଦ୍ର ସଦୃଶ । ଅଧିକାଂଶ ସମୟରେ ଆମେ ସବୁ କାମଗୁଡ଼ ଦଉଡ଼ ଯାଇଥିଲୁ ଡ୍ରଇଂରୁମ୍‌କୁ, ଟିକିଏ ଖାଲି ତାର ସୁନ୍ଦର ଡାଇନିଂରୁମ୍ (ଖାଇବା ଘର)ଟିକୁ ଦେଖିବାକୁ, ଅଥବା ଲାଲ୍ ଗୁଡ଼ର ରଙ୍ଗର ବାସ୍ନା ଶୁଙ୍ଘିବାକୁ ଆଉଥରେ ।

ଆମ ବସାର ପଶ୍ଚିମ ପଟର ଝରକା ଖୋଲିଲେ କାରଖାନାର ଟିଣଗୁଡ଼ ଦିଶେ । ତା' ଉପରେ ମାଙ୍କଡ଼ଙ୍କର ବିଶୃଙ୍ଖଳ ପାଦଶବ୍ଦ ଶୁଣାଯାଏ । ନିକଟବର୍ତ୍ତୀ କବରଖାନାର ଗଛରେ ମାଙ୍କଡ଼ଗୁଡ଼ିକ ବସବାସ କରୁଥିଲେ । ବେଳେ ବେଳେ କୌଣସି ମାଙ୍କଡ଼ ଆମ ଘରକୁ ବି ପଶି ଆସୁଥିଲା ଓ କେତେବେଳେ ନଡ଼ିଆ ଆଉ ବା କେତେବେଳେ ପାଉଁରୁଟି ଗ୍ରେଶକରି ନେଉଥିଲା । ଦିନେ ଗ୍ରେର ମାଙ୍କଡ଼କୁ ପୂର୍ଣ୍ଣାଶ୍ରୀ ଅଶାଳୀନ ଭାଷାରେ ଗାଳିଦେଉଥିବା ଶୁଣି ଝାଡ଼ୁଦାର କହିଲା—"ଠାକୁର (ବା ନନା), ତାଙ୍କୁ ସେମିତ କୁହନା । ସେ ନିଜେ ଭଗବାନ ହନୁମାନଜୀ ହୋଇପାରନ୍ତି । ହଁ, ତୁମର ଭକ୍ତି କେତେ ଅଛି ତାହା ଯଦି ସେ ପରୀକ୍ଷା କରିବାକୁ ଆସୁଥିବେ ?"

ପୂର୍ଣ୍ଣାଶ୍ରୀଙ୍କର ଆଦୌ ଧର୍ମ-ଭାବ ନ ଥିଲା । ସେ ସମସ୍ତ ହିନ୍ଦୁ ଠାକୁର-ଠାକୁରାଣୀଙ୍କୁ ଅଶ୍ରଦ୍ଧା କରୁଥିଲା । ତାର ସମାଲୋଚନାରେ ବେଳେ ବେଳେ ଝାଡ଼ୁଦାର ଓ ଗୃହକର୍ତ୍ତ୍ରୀଙ୍କ ମନରେ ଆଘାତ ଲାଗୁଥିଲା । ଦିନେ ଝାଡ଼ୁଦାର କହିଲା—ଆମ ନନା (ଠାକୁର) ଏମିତ ସାହେବ ହୋଇଗଲେଣି ଯେ ତାଙ୍କର ବିଲାତ ଯିବା ଉଚିତ ଓ ସେଠି ବସବାସ କରିବା ଉଚିତ । ପୂର୍ଣ୍ଣାଶ୍ରୀ କହିଲେ—"ଆରେ, କହୁନୁ କଣ୍, ମୁଁ ତ ନିଶ୍ଚୟ ଯିବି । ଖାଲି ଯଦି ଏ ଦେଶ ଛାଡ଼ିବାକୁ ରାଜି ହୋଇଯିବ ନା ତେବେ ଗୋରା ମେମ୍-ସାହେବା ମିସେସ୍ ରସ୍ ମୁଁ କହିଲି ମାନେ ମୋତେ ତାଙ୍କର ଖାନସାମା କରି ଇଂଲଣ୍ଡ ନେଇଯିବେ ।" ଟିକିଏ ମୁରକି ହସା ଦେଇ ଝାଡ଼ୁଦାର କହିଲା—ରାମ ରାମ । ତା'ପରେ ନୀରବରେ ଗୋଟିଏ କୁଲେଇକରା ମଗରେ ଚା' ପିଇବାକୁ ଲାଗିଲା । ସେଇ ମଗ୍‌ଟି ଝାଡ଼ୁଦାର ପାଇଁ ସବୁବେଳେ ଅଲଗା ହୋଇ ରହିଥାଏ ।

# ତିନି

## ମୋର ପ୍ରତିଟି କବିତା ମୋତେ କନ୍ଦାଇଛି···

ଯେଉଁଦିନ ଆମ ପାଇଁ ସୁବିଧା-ସୁଯୋଗର ସୂର୍ଯ୍ୟୋଦୟ ଘଟିଥାଏ, ସେ ଦିନ ସ୍କୁଲ ଯିବା ବାଟରେ ପୂର୍ଖୀଶ୍ରୀ ଆମକୁ ନେସ୍‌ଲ୍ କମ୍ପାନିର ସରୁଆ ନରମ ଚକୋଲେଟ୍ କିଣି ଦିଏ । ଚକୋଲେଟ୍‌ଗୁଡ଼ିକ ଲାଲରଙ୍ଗର ଜରି କାଗଜରେ ଗୁଡ଼ା ହୋଇଥାଏ । ଲାଲ୍ ଜରିଟିର ତଳେ ବ୍ରିଟିଶ୍ ରାଜ ପରିବାରର ରଙ୍ଗୀନ୍ ଫଟୋଟିଏ ଖଞ୍ଜା ଯାଇଥାଏ । ସେଇ ଫଟୋ ଗୁଡ଼ିକ ଆମେ ଯଥେଷ୍ଟ ସଂଗ୍ରହ କରିବାରେ ଲାଗିପଡୁ କେବଳ ଡିଲର୍‌ଠାରୁ ଗୋଟିଏ ଆଲବମ୍ ପାଇବା ଉଦ୍ଦେଶ୍ୟରେ ।

ଗୋଟିଏ ରାଜନୈତିକ ଆଲବମ୍ ପ୍ରସ୍ତୁତ କରିବା ଅଭିପ୍ରାୟରେ ଆମେ ମଧ୍ୟ ଖବର କାଗଜ କଟିଂ ସବୁ ସଂଗ୍ରହ କରୁଥିଲୁ । ସେଇ ଆଲବମ୍‌ରେ ହିଟ୍‌ଲର ଓ ମୁସୋଲିନିଙ୍କର ସମସ୍ତ ଫଟୋଗ୍ରାଫ୍ ଗଚ୍ଛିତ ହୋଇଥିଲା । ସେମାନେ ଥିଲେ ସେତେବେଳକାର ଶ୍ରେଷ୍ଠ ବୀର; ଆମ ଦୃଷ୍ଟିରେ ଅବଶ୍ୟ । ସେମାନଙ୍କର ବକ୍ତବ୍ୟ ସ୍ତମ୍ଭ ସ୍ତମ୍ଭ ଧରି ପ୍ରକାଶ କରି ଖବରକାଗଜ ଗୁଡ଼ିକ ସେମାନଙ୍କୁ ଅଲୌକିକ ମାନବରେ ପରିଣତ କରି ଦେଇଥିଲେ । ବଡ଼ ହେଲେ ଆମେ ସେଇମାନଙ୍କ ପରି ହେବୁ, ଏ ପ୍ରକାର ଅଭିଳାଷ ଆମ ଭିତରେ ଗୋପନରେ ଜାଗି ଉଠିଥିଲା ।

ଏଇ ସମୟରେ ମୋର ଭାଇ ଗୋଟିଏ ହାତ ଲେଖା ପତ୍ରିକା ପ୍ରସ୍ତୁତ କରିବାର ଉଦ୍ୟମ କଲେ । ଆମର ସମସାମୟିକ ମାନଙ୍କ ମଧ୍ୟରୁ କେହି ହେଲେ ପ୍ରବନ୍ଧ କିମ୍ବା କବିତା ଲେଖିବାକୁ ଆଗଭର ହୋଇ ଆସିଲେ ନାହିଁ । କାରଣ, ନିଜ ନିଜର ବର୍ଣ୍ଣ-ଶୁଦ୍ଧି ବିଷୟରେ ସେମାନଙ୍କର ପ୍ରତ୍ୟୟ ନ ଥିଲା । ଏଣୁ ଲେଖା ଲେଖିର ଭାର ପଡ଼ିଲା ମୋ ଉପରେ ।

ମୋର ସେତେବେଳେ ଛ' ବର୍ଷ । ମୁଁ ଥିଲି ଭାବ-ପ୍ରବଣ ପ୍ରକୃତିର । ଯେଉଁ କଣେଇମାନେ ସବୁଦିନ ପାଇଁ ମୁଣ୍ଡ ହରାଇଥିଲେ ସେଇପରି ମୁଣ୍ଡ-ଭଙ୍ଗା କଣେଇ ଗୁଡ଼ିକ ବିଷୟରେ ମୁଁ ବିଷାଦ କବିତା ଲେଖୁଥିଲି । ପ୍ରତ୍ୟେକ କବିତା ମୋତେ କନ୍ଦାଉଥିଲା । ମୋ ଭାଇ କବିତା ଗୁଡ଼ିକ ପାଇଁ ଚିତ୍ର ଆଙ୍କୁଥିଲେ ଏବଂ କେତେକ ସାଧାରଣ ରାଜନୈତିକ ରଚନା ଲେଖୁଥିଲେ ।

ଆମକୁ ଘରେ ପଢ଼ାଇବା ପାଇଁ ନିଯୁକ୍ତ ଥିଲେ ଦୁଇଜଣ । ମାଦେଲ୍ ନାମ୍ନୀ ଜଣେ ସୁନ୍ଦରୀ ଆଙ୍ଗ୍ଲୋ-ଭାରତୀୟ ରମଣୀ ଓ ମାଲୟାଲମ୍ ପଢ଼ାଇବା ପାଇଁ ଅଉ ଜଣେ, ନାମ ନାମ୍ବିଆର୍ । ପୂର୍ବୋକ୍ତ ଆଙ୍ଗ୍ଲୋ-ଭାରତୀୟ ରମଣୀଟି ପ୍ରତି ପକ୍ଷପାତ ସ୍ନିତ ଆଚରଣ କରୁଥିଲି । କପ୍‌ରେ ଟି' ଓ ମଧ୍ୟମ ଧରଣର ପ୍ଲେଟ୍‌ରେ କିଛି ସାଣ୍ଡୱିଚ୍‌କୁ ଟ୍ରେ-ରେ ନେଇ ସେ ତାଙ୍କର ଚର୍ଚ୍ଚା କରୁଥିଲି । ଅନ୍ୟ ପକ୍ଷରେ, ସଞ୍ଜ ହେବାର ଯଥେଷ୍ଟ ପରେ ଅସୁଥିଲେ ନାମ୍ବିଅର୍ । ପୂର୍ବୋକ୍ତ ତାଙ୍କୁ ଗୋଟିଏ ବଡ଼ ଗ୍ଲାସରେ ଟି' ସହିତ କିଛି ବିଦ୍ରୂପ ବଚନ ପରିବେଷଣ କରୁଥିଲି । ଆମ ଘରେ ପ୍ରକୃତରେ ନାମ୍ବିଆର୍ ଗୌଣ ମନୋଭାବରେ ଦବି ଯାଉଥିଲେ । ଆମେ ଖାଇବା ଘରେ ବସି ମାଲୟାଲମ୍ ପଢ଼ୁ । ବାପା ଯେ ପାଖେ ଆସିଲେ ନାମ୍ବିଆର କୌଣସି ପାର୍ଶ୍ୱରେ ଲୁଚି ଯାଉଥିଲେ । ବୁଢ଼ୀ-ମା ଆମକୁ ଭାରି ଭଲ ପାଉଥିଲେ । କେବଳ ତାଙ୍କୁ ଚିଠି ପତ୍ର ଲେଖିବା ପାଇଁ ଆମେ ମାଲୟାଲମ୍ ପଢ଼ୁଥିଲୁ ।

ଏକଦା ଆମ ସ୍କୁଲର ସବୁ ପିଲାଙ୍କୁ ନେଇ ଭିକ୍ଟୋରିଆ ଉଦ୍ୟାନରେ ଏକ ପିକ୍‌ନିକ୍ ହେଲା । ଆମକୁ ସେଠି ପିଇବାକୁ ଦୋରୁଅ (ଆଙ୍ଗୁରସ) ଓ ଖାଇବାକୁ ଘୁଷୁରିମାଂସ ଦିଆ ସାଣ୍ଡୱିଚ୍ ଦିଆଯାଇଥିଲା । ମୁଁ ତ ଥିଲି ନିରାମିଷ ଭୋଜୀ । ଏଣୁ ଖାଦ୍ୟସବୁକୁ ମୁଁ ଫୁଲଭରା ବୁଦା ସେ ପଟକୁ ଫିଙ୍ଗି ଦେଇଥିଲି । ପିକ୍‌ନିକ୍‌ରେ ଆମ ସ୍କୁଲର ଇତିହାସ-ଶିକ୍ଷକ ଜଣେ ତରୁଣୀ ଶିକ୍ଷୟିତ୍ରୀଙ୍କୁ ଚୁମ୍ବନ କରିବାକୁ ଉଦ୍ୟମ କରୁଥିଲେ । ଗୃହଥିଲା ଗୋଡ଼ିଆ ଗୋଡ଼ି । ମଝିରେ ମଝିରେ ତରୁଣୀ ଶିକ୍ଷୟିତ୍ରୀ—"ଓ-ଆର୍ଚ୍ଚି, ଓ-ଆର୍ଚ୍ଚି" କହି ଚିତ୍କାର ମଧ୍ୟ କରୁଥିଲେ । ଶିକ୍ଷକ ତାଙ୍କୁ ଧରିବାକୁ ଚେଷ୍ଟା କରୁଥିଲେ ଏବଂ ସେ ଗଛଗୁଡ଼ିକର ଗୁରିପଟେ ବୁଲି ବୁଲି ଧରା ଦେଉ ନ ଥିଲେ । ଉଚ୍ଚ ହସ ଉଚ୍ଛୁଳି ପଡ଼ୁଥିଲା, ଯେପରିକି ସେ ଆମକୁ ସବୁ ଜଣାଇ ଦେବାକୁ ଗୃହୁଁଥିଲେ—ଯେ ଏଇଟା ସେମିତି କିଛି ନୁହେଁ, କେବଳ ପ୍ରାଣଖୋଲା ପରିହାସ ଓ କୌତୁକ ।

ମୁଁ ସେଠାରେ ନ ରହି ସବୁଠାରୁ ଦୂରରେ ଥିବା ବାଡ଼ କଡ଼ ଯାଏଁ ଗୃଲିଗଲି । ସେଠି ଥିଲା ବୁଦାଏ ହେନା । ସେଥିରେ ସାନ ସାନ ଫୁଲସବୁ ଲଦି ହୋଇଥିଲା । ଆକାଶରେ ସେ ଦିନ ଧଳା ରଙ୍ଗର ସୂର୍ଯ୍ୟ; ଶୀତଦିନିଆ ଆକାଶରେ ଗୋଟିଏ ଧଳା ବର୍ଣ୍ଣର ଲ୍ୟାମ୍ପପରି ସୂର୍ଯ୍ୟ ଏବଂ ମୁଁ ପୁଣି ଏକାକିନୀ । ସତରେ, ମୁଁ ସେଦିନ ଥିଲି ନିହାତି ଏକୁଟିଆ । ମୋ ସହିତ କେହି ସେଠି ମିଶିବାକୁ ଆଗ୍ରହୀ ଥିଲେ ଭଳି ଲାଗୁ ନଥିଲା । ମୋ ଭାଇ ବି । କାରଣ, ସେ ସହପାଠୀ ମାନଙ୍କ ସହିତ ଏକ ପ୍ରକାରର ଫୁଟ୍‌ବଲ ଖେଳରେ ମାତି ଯାଇଥିଲେ । ଅମ ଝିଅଙ୍କ ଭିତରେ ନାଚ ଜାଣିଥିଲି ଏକା ହେଲେନ୍ । ସେଠି ସେ ସମସ୍ତଙ୍କୁ 'The

**Blue bird"**—(ନୀଳ ଚଢ଼େଇ) ଗ୍ରନ୍ଥ-ଛବିର ବର୍ଣ୍ଣନା କରୁଥିଲି । କିଏ ଅମାନେ ତାକୁ ଘେରି ଯାଇଥିଲେ । ମୁଁ କାହିଁକି ସେମାନଙ୍କ ସହିତ ଯୋଗ ଦେଇପାରି ନଥିଲି ତାହା ମୋ ନିକଟରେ ଅଜଣା ଓ ଆଶ୍ଚର୍ଯ୍ୟର କଥା ।

ମୁଁ ଯେ କାହିଁକି ଏକ ଭାରତୀୟ ବାପ-ମାଙ୍କ କୋଳରେ ଜନ୍ମ ହେଲି— ତାହା ବି ମୋ ପକ୍ଷରେ ବିସ୍ମୟକର । ଯଦି ବାସ୍ତବରେ ମୁଁ କୌଣସି ଗୋରା-ଦମ୍ପତିଙ୍କଠାରୁ ଜନ୍ମ ଲାଭ କରିଥାନ୍ତି, ସେମାନେ ନିଶ୍ଚୟ ମୋର ସ୍ୱରଚିତ କବିତା ଗୁଡ଼ିକ ପାଇଁ ଗର୍ବ ଅନୁଭବ କରୁଥାନ୍ତେ । ଏଇସବୁ ବିଷୟ ବସି ବସି ଭାବୁଥିଲି । ସହସା କଂସା-ତାଟିଆ ହାତରୁ ଖସି ପଡ଼ି ବିଚିତ୍ର ଶବ୍ଦ କଲାଭଳି ଜଣଙ୍କର କର୍କଶ ସ୍ୱର ଓ ରୁକ୍ଷ ବଚନ ମୋର ବ୍ୟକ୍ତିଗତ ଅନୁଚିନ୍ତାକୁ ନଷ୍ଟ-ବିନଷ୍ଟ କରିଦେଲା—"କମଳା, ତୁ ଏଠି କଣ କରୁଚୁ, ଏଠି କି କାମ ତୋର ?" ଦେଖିଲି ସେ ଆମର ଶିକ୍ଷକ । ସେ ପୁଣି କହିଲେ— 'କେଡ଼େ ବିଚିତ୍ର ସ୍ୱଭାବର ତୁ ? ସେମାନଙ୍କ ସହିତ ମିଶୁନୁ କାହିଁକି ?" ଏବଂ ସେଇ ଶୁଭ୍ର ସୂର୍ଯ୍ୟ ତାଙ୍କର ଆପଣା ନିଃସଙ୍ଗଭାବରେ ମୋ ଆଖିକୁ ପୂର୍ଣ୍ଣ କରିଦେଲେ । ହେନାର ବାସ୍ନା ମୋତେ ଆତ୍ମହରା କରିଥିଲା । କାନ୍ଦ କାନ୍ଦ ହୋଇ ମୁଁ ଠିଆ ହେଲି । ଗଲି ଶିକ୍ଷକଙ୍କ ଆଡ଼କୁ । ପିଲମାନେ ଲକ୍ଷ୍ୟ କଲେ ମୋତେ । ଶିକ୍ଷକ କିନ୍ତୁ ହସିଲେ, ସତେ ଯେମିତି କି ଅନ୍ୟମାନେ ମଧ୍ୟ ହସି ଉଠିବା ପାଇଁ ସେ ଦେଲେ ସଙ୍କେତ । ଆଖିର ପଲକରେ ସେମାନେ ସମସ୍ତେ ଠୋ-ଠୋ ହୋଇ ହସି ଉଠିଲେ । ତାଙ୍କର ହସରେ ଗଛରେ ବସିଥିବା ପକ୍ଷୀମାନେ ଉଡ଼ିଗଲେ ଦୂରକୁ··· ।

କେବେ କେବେ ଅପରାହ୍ଣରେ ଫାଟକ ଜଗିଥିବା ମୋଟା ଜଗୁଆଳଟି ଗଭୀର ତନ୍ଦ୍ରାରେ ଢଳି ପଡ଼ିଥିବା ଜାଣି ମୁଁ ଚୁପ୍‌କିନା ଫାଟକ ପାରି ହୋଇ କବରଖାନା ଭିତରକୁ ପଶିଯାଏ । ସେଠି କବର ସ୍ତମ୍ଭଗୁଡ଼ିକ ସବୁ ହଳଦିଆ ଦାନ୍ତ ଭଳି ମାଳ ମାଳ । ଅନେକ କବର ଉପରୁ ଲେଖାସବୁ ଲିଭି ଲିଭି ଯାଇଥାଏ । ଅର୍ଦ୍ଧ ଶତକ ଧରି ବର୍ଷା ଖାଇବା ପରେ ସେ ସବୁ ଆଉ କେତେଦିନ ସ୍ପଷ୍ଟ ରହିପାରନ୍ତା । କିନ୍ତୁ ତଥାପି ସ୍ପଷ୍ଟଥିବା କବର ସ୍ତମ୍ଭରୁ ମୁଁ ଯେତେବେଳେ ପଢ଼ିଲି ସେ ଏଲିଜାବେଥ୍ ହାର୍ଡିଞ୍ଜ୍ ୧୮୧୮ ରେ ଜନ୍ମ ହୋଇ ୧୯୦୫ ରେ ଇହଧାମ ତ୍ୟାଗ କରିଥିଲେ, ମୁଁ ପ୍ରକୃତରେ ରୋମାଂଚିତ ହୋଇଗଲି । କିଏ ସେହି ଏଲିଜାବେଥ୍ ? ପୁଣି ମାତ୍ର ୮୭ ବର୍ଷ ବୟସରେ ମରିଥିବା ସେଇ ରୋଗର ଅପ୍‌ଟନ କିଏ ? କିଏ ସେଇ ରୋଜାମଣ୍ଡ୍ ? ମାଙ୍କଡ଼ ଓ ମୋ ବ୍ୟତୀତ ସେଠାରେ ଆଉ ଜୀବନ୍ତ ପ୍ରାଣୀ କେହି ନଥିଲେ । କିନ୍ତୁ ଉଜ୍ଜ୍ୱଳ ପଡ଼ିଥିବା ରକ୍ତଭଳି ଲାଲ ବର୍ଣ୍ଣର ବୁଗେନ୍‌ଭିଲ କବର-ମାନଙ୍କର ଅନୁଚ୍ଛଗମ୍ବୁଜ ଗୁଡ଼ିକରେ ଲଟେଇ ଯାଇଥିଲା ଓ ଦୋଳି ଖେଳୁଥିଲା

ଶାନ୍ତ ପବନରେ । ହଳଦିଆ ମାରଗୋଲଡ଼୍‌ମାନେ ତା' ଭିତରେ ମୁଣ୍ଡ ଗେଞ୍ଜି-ଥିଲେ ଜାନୁ-ପାତ ପୂର୍ବକ । ମାଙ୍କଡ଼ ମାନଙ୍କର ମୋ ପ୍ରତି ଭ୍ରୂକ୍ଷେପ ନ ଥିଲା । ସେମାନେ ତାଙ୍କର ଶିଶୁମାନଙ୍କୁ କୋଳରେ ଜାକିଧରି ସ୍ତନ୍ୟ ଦେଉଥିଲେ ।

ଭୂତମାନଙ୍କ ବିଷୟରେ ଜାଣିବାର ବୟସ ମୋର ହୋଇ ନଥିଲା । ଏଣୁ ଜୀବନ୍ତ ଓ ମୃତ ଉଭୟଙ୍କୁ ଭଲପାଇବା ମୋ ପକ୍ଷରେ ସମ୍ଭବ ଥିଲା । ଏପରିକି ନିତାନ୍ତ ଅପରିଚିତ ଗ୍ରେକାମଣ୍ଡ୍ ନିକଟକୁ ଯାଇ, ତା' ନିକଟରେ ମୋ ମନର ଗୋପନ କଥା ବ୍ୟକ୍ତ କରିବା ପାଇଁ ମୁଁ ପ୍ରସ୍ତୁତ ଥିଲି, ବିନା କୁଣ୍ଠାରେ । କାରଣ ମୃତବ୍ୟକ୍ତିଙ୍କ ଠାରୁ କୌଣସି ରୁକ୍ଷତା କିମ୍ବା ନିର୍ଦ୍ଦୟତା ପ୍ରକାଶିତ ହୁଏନା ।

# ତିନି

## ନଲ୍‌ପତ ଭବନର କେତେ କଥା

ଯେତେବେଳେ ଦ୍ୱିତୀୟ ପୃଥିବୀ ମହାସମର ଆହୁରି ଭୟଙ୍କର ଭାବେ ବଢ଼ିବ ବୋଲି ଜଣା ପଡ଼ିଲା, ଓ ଦାରୁଣ ହାହାକାର ସମାପିତ ହେବାର ସମ୍ଭାବନା ଦେଖାଗଲାନି ମୋ ବାପା ଆମକୁ ସବୁ ମାଲବାର ପଠାଇଦେବାକୁ ସିଦ୍ଧାନ୍ତ କଲେ । ମାଲବାରରେ ଥିଲା ଆମର ପୂର୍ବପୁରୁଷଙ୍କ ଘର—ଯାହାକୁ ନଲପତ୍ ଭବନ ବୋଲି ନାମିତ କରାଯାଇଥିଲା ।

ସ୍ଥାନୀୟ ଅନ୍ୟାନ୍ୟ ଗୃହ ସବୁର ତୁଳନାରେ ନଲପତ୍ ଭବନ ଖୁବ୍ ଗୋଟାଏ ବଡ଼ ନ ଥିଲେ ମଧ୍ୟ ତା' ଭିତରେ ଗୋଟିଏ ଅଗଣା ଓ ଗୋଟିଏ ମନ୍ଦିର ଥିଲା । ମନ୍ଦିରଟିର ମୁଖଶାଳା ଥିଲା ଦକ୍ଷିଣ ଦିଗକୁ । ସମ୍ମୁଖ ଘରଠାରୁ ଉପରକୁ ଗୋଟିଏ ଗଡ଼ାଣିଆ ପାହାଚ ଲମ୍ବିଥିଲା । ଉପରେ ଥିଲା ଗୋଟିଏ ଖଟ ପଲଙ୍କରେ ସଜ୍ଜିତ କୋଠରୀଟିଏ, ଯେଉଁଠି ମୋର ସାନ-ବୁଢ଼ାବାପା (ବାପାଙ୍କ କକା) ଶୋଉଥିଲେ ଦିନରେ । ତଳେ ଥିଲା ପୋର୍ଟିକୋ । ସେଇ ପୋର୍ଟିକୋ ଉପରେ ଥିଲା ଚନ୍ଦ୍ରଶାଳା ଯେଉଁଠି ବର୍ଷର ବିଭିନ୍ନ ସମୟରେ ଓଟାନ୍‌ଥୁଲାଲ୍ ନର୍ତ୍ତକୀମାନେ ନାଚୁଥିଲେ । ଏହା ବ୍ୟତୀତ ଅନେକ ଲୋକ ବସି ଖାଇବାପାଇଁ ଗୋଟିଏ ହଲ୍, ସ୍ତ୍ରୀଲୋକମାନଙ୍କ ପାଇଁ ଅଲଗା ଖାଇବା ଘର, ଦାସ-ଦାସୀଙ୍କ ରହିବା ଘର, ଉପରେ ଛଅୋଟି ଓ ତଳେ ଛଅୋଟି ଲେଖାଁ ଶୋଇବା ଘର

ଏବଂ ଗୋଟିଏ ଅପ୍ରଶସ୍ତ ବାରଣ୍ଡା ଥିଲା । ଶ୍ରେଷ୍ଟ ଏକ ବଖରିଆ କଣ ଘରେ ପୁରାତନ ଟ୍ରଙ୍କ ବାକ୍ସ ଓ ପାଲଙ୍କି ଆଦି ରଖାଯାଇଥିଲା ।

ଘରର ଦକ୍ଷିଣ ଦିଗକୁ ଥିଲା ସର୍ପ-ପୀଠ । ଅନ୍ତତ କମ୍‌ରେ ତାହା ଦୁଇହଜାର ବର୍ଷର ପୁରାତନ, ଯେଉଁଠି ସର୍ପଦେବୀ ରେଣୁକା ଓ ତାଙ୍କ ପିତା ବାସୁକିଙ୍କ ମୂର୍ତ୍ତି ପୂଜା ପାଉଥିଲା । ତା'ପରେ ମୃତମାନଙ୍କର ଇଲକା, ଯେଉଁଠି ଶ୍ରାଦ୍ଧପୁର ନାମରେ ଘରଟିଏ ଥିଲା । ବାର୍ଷିକ ଶ୍ରାଦ୍ଧ ଉତ୍ସବମାନଙ୍କରେ ସେଠାରେ ପିତୃପୁରୁଷମାନଙ୍କ ପାଇଁ ଶ୍ରାଦ୍ଧ ରନ୍ଧାଯାଏ । ତା' ପାଖକୁ ଲଗିଥିଲା ନଡ଼ିଆ ବଗିଚା । କେହି ମଲେ, ତାଙ୍କ ସ୍ମୃତିରେ ନଡ଼ିଆ ଗଛଟିଏ ଲଗାଇବା ଥିଲା ଆମର ପରମ୍ପରା । ସେଠି ପୁଷ୍କରିଣୀଟିଏ ବି ଥିଲା, ତା' କୂଳରେ ଥିଲା ଗୋଟିଏ ସ୍ନାନାଗାର । ପୋଖରୀ ଭିତରେ ଗୋଟିଏ କୁମ୍ଭୀର ବି ରହୁଥିଲା । ଚାକର-ଚାକରାଣୀମାନେ ଗାଧୋଇ ସାରିବାପରେ ଅପରାହ୍ଣରେ ଉପରକୁ ଉଠି ଆସୁଥିଲା କୁମ୍ଭୀରଟି ଓ କୂଳରେ ପଡ଼ିଥିବା ଉଷୁମ ଖରାରେ ଶୋଉଥିଲା, ବଡ଼ ବଡ଼ ପତଙ୍ଗମାନଙ୍କୁ ବିନା ଆୟାସରେ ଧରିବା ପାଇଁ ତାର ଭୟଙ୍କର ପାଟିଟିକୁ ମେଲି ରଖି ।

ଉତ୍ତର ପଟକୁ ଥିଲା ଗୁହାଳ ଓ ଖଳା । ଏସବୁ ବ୍ୟତୀତ ସବୁଜ ପତ୍ରଭରା ଗଛ-ବୃଛ ଥିଲା ଅନେକ । ପୂର୍ବପୁରୁଷଙ୍କ ଅମଳରୁ । କୁନ୍‌ଜି ନାମ୍ନୀ ବଂଶର ଜଣେ ନାରୀ ବିବାହର ପ୍ରାଥମିକ ଅବସ୍ଥାରେ ମଧୁ-ବାସର କାଳରେ ସେସବୁକୁ ରୋପଣ କରିଥିଲେ । ଫଳ ବା ଫୁଲରେ ମଣ୍ଡିତ ବଡ଼ ବଡ଼ ଗଛଗୁଡ଼ିକର ସବୁଜ ଗୁମ୍ଫାତଳେ ମୁଁ ଓ ମୋ ଭାଇ ସାରାଦିନ ଖେଳୁଥିଲୁ ।

ଘରଟି କୁନ୍‌ଜିଙ୍କୁ ତାଙ୍କର ସ୍ୱାମୀଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା । ସେତେବେଳେ କୁନ୍‌ଜିଙ୍କୁ ମାତ୍ର ପନ୍ଦରବର୍ଷ ଓ ନୂଆ କରି ସେ ଆସିଥା'ନ୍ତି ସୁଦୂର କୋଚିନ୍‌ରୁ ଏ ଗାଁକୁ । କୋଚିନ୍‌କୁ କୁନ୍‌ଜି ତାଙ୍କ ଖୁଡ଼ୁତାମାନଙ୍କ ସହିତ ଯାଇଥିଲେ ଜଣେ ଆତ୍ମୀୟଙ୍କ ବିବାହ ଉତ୍ସବରେ ଯୋଗଦେବା ପାଇଁ । ତା'ସହିତ କୌଣସି ଅଭିଜାତ ବଂଶର ପାତ୍ରଙ୍କୁ ଦେଖେଇବା ଥିଲା ଅନ୍ୟତମ ଉଦ୍ଦେଶ୍ୟ । ପାତ୍ରର ମୁହଁଟି ଯଦି କୁନ୍‌ଜିଙ୍କର ପସନ୍ଦ ହୁଏ ଓ ଖୁଡ଼ୁତାମାନେ ଯଦି ମନୋନୟନ କରନ୍ତି, ତେବେ ବିବାହ ହେବାର କଥା ଥିଲା ।

କିନ୍ତୁ ବ୍ରିଟିଶ୍ ଇଷ୍ଟ୍ଇଣ୍ଡିଆ କମ୍ପାନିର ଏପରିସବୁ ମନୋରଞ୍ଜନ କାର୍ଯ୍ୟକ୍ରମ ସହିତ ସମ୍ପର୍କ ନ ଥିଲା । ସେମାନେ ତତ୍‌ମାନଙ୍କର ସର୍ବପ୍ରଧାନ

ବାଣିଜ୍ୟ-ବନ୍ଦରଟିକୁ ନୃଶ୍ଚିତ୍ତ-ବିଚୂର୍ଣ୍ଣ କରିବାର ଯୋଜନା କରିଥିଲେ ଡଚ୍‌-ଶକ୍ତିକୁ ଦୁର୍ବଳତର କରିବା ପାଇଁ । ତା' ପୂର୍ବରୁ ବ୍ରିଟିଶ୍‌ମାନେ ସେମାନଙ୍କ ହାତରୁ କୋଚିନ୍‌ ନଗରଟିକୁ ଛଡ଼ାଇ ନେଇ ସାରିଥିଲେ । ପ୍ରଶସ୍ତ ସୁନ୍ଦର ରାଜପଥ ଓ ଉଦ୍ୟାନରେ ନଗରୀଟି ସେତେବେଳେ ବିମଣ୍ଡିତ ଥିଲା । ପର୍ତ୍ତୁଗୀଜ୍‌ ଗୀର୍ଜାଗୁଡ଼ିକ ସେତେବେଳେ ଡଚ୍‌ମାନଙ୍କ ଦ୍ୱାରା ମାଲଗୋଦାମରେ ପରିଣତ ହୋଇସାରିଥିଲା । କାରଣ ଡଚ୍‌ମାନେ ଧର୍ମଭାବାପନ୍ନ ନ ଥିଲେ. ବରଂ ଥିଲେ ସମଧିକ କଳାପ୍ରିୟ । ରାଜପଥଗୁଡ଼ିକୁ ସେମାନେ ସାଙ୍ଗୀତିକ ନାମରେ ନାମିତ କରିଥିଲେ, ଯେପରି···ଦୋ ଲଣ୍ଡ୍ ଷ୍ଟ୍ରୀଟ୍‌··· ଓ ଦୋ ବ୍ଲୁମେଣ୍ଡାଲ୍‌ ଷ୍ଟ୍ରୀଟ୍‌ ।

ଡଚ୍‌ ଓ ସେମାନଙ୍କର ଶେଷ ଗଭର୍ଣ୍ଣର ବୋନ୍‌ସ୍ପ୍ରିଙ୍ଗ୍ଙ୍କୁ ବହିଷ୍କାର କରିବା ପାଇଁ ବ୍ରିଟିଶ୍‌ ଗଭର୍ଣ୍ଣର ବନ୍ଧୁକଗୋଲାର ସାହାଯ୍ୟରେ ରମଣୀୟ ମାଲଗୋଦାମ ଘରଗୁଡ଼ିକ ସହିତ ବଣିକମାନଙ୍କର ବାସଗୃହ ସବୁକୁ ଧୂଳିସାତ୍‌ କରିଦେଲେ । ଉଚ୍ଚପଦସ୍ଥ ନାୟାର୍‌ ରାଜକର୍ମଚାରୀମାନେ ମଧ୍ୟ ସେଥିରୁ ବାଦ୍‌ ପଡ଼ିଲେ ନାହିଁ । କେତେ ମହିଳା ଓ ନିରପରାଧ ଶିଶୁ ସେଥିରେ ଧ୍ୱଂସ ହୋଇଗଲେ । ନଗରୀଟି ଜଳି ଉଠିଲା । ଏଇ ଜ୍ୱଳନ୍ତ ନଗରୀରୁ ଯେଉଁ କେତେଜଣ ଇଂରେଜଙ୍କ ଶରଣ ପଶି ବା ଅନ୍ୟମାନଙ୍କ ଗୋପନ ସହାୟତାରେ ମୁକ୍ତିପାଇ ପଳାଇଗଲେ ଏହି କଠୋର ଯନ୍ତ୍ରଣା ବିଷୟରେ ବର୍ଣ୍ଣନା ବା ବିଦ୍ରୋହ କରିବାକୁ ସେମାନଙ୍କ ଭିତରୁ କାହାରି ହେଲେ ଜ୍ଞାନ ନ ଥିଲା ।

କୁନ୍‌ଜି ସେଇ ଜ୍ୱଳନ୍ତ ନଗରୀରୁ ସାଙ୍ଗରେ ଗୃହକରଟିଏ ଓ ଦୁଇଟି ଲାଲ୍‌ ଓ ସୁନେଲି ରଙ୍ଗରେ ଚିତ୍ରିତ ଟ୍ରଙ୍କ୍‌ ଧରି କୌଣସି ରୂପେ ଗାଁକୁ ପଳାଇ ଯାଉଥିଲେ । ସେ ଯାଉଥିଲେ ଅାଲେନ୍‌ଗାଦ୍‌ ଅନ୍ତର୍ଗତ ଅାଲୱେ ଆଡ଼କୁ । କନ୍ତୁ ବାଟରେ ଜଣେ ରସିକ ଜମିଦାର ସହିତ ତାଙ୍କର ସାକ୍ଷାତ ହେଲା । ସେଇ ଜମିଦାର-ଯୁବକ ତାଙ୍କୁ ଆପଣା ଗାଁକୁ ନେଇଗଲେ ଓ ବିବାହ କଲେ କୁନ୍‌ଜିଙ୍କୁ । ଯୁବକ ଜ୍ୟୋତିଷଶାସ୍ତ୍ର ଓ ସ୍ଥପତିରେ ନିପୁଣ ଥିଲେ । ନାଲପତ୍ତ ଭବନ ପାଇଁ ସେ ହିଁ ଜାଗା ବାଛିଥିଲେ ଓ ଡିଜାଇନ୍‌ ପ୍ରସ୍ତୁତ କରିଥିଲେ ।

ପୂର୍ବପଟରୁ ଉତ୍ତର ଆଡ଼କୁ ଥିଲା ବିସ୍ତୃତ ଧାନ କ୍ଷେତ । ପଶ୍ଚିମ ପଟରୁ ଆରବ ସାଗରର ଗର୍ଜନ ଭାସି ଆସି ଘରର ନୀରବତାକୁ ଚହଲାଇ ଦେଉଥିଲା । ସର୍ପ-ବେଦୀର ନିକଟରେ ଥିଲା ଦୁର୍ଲଭ ନିର୍ମଳୀ ଗଛ । ଗ୍ରୀଷ୍ମ କାଳରେ ସେଥିରେ ଭରି ଯାଉଥିଲା ଲହୁଣୀ ରଙ୍ଗର ଫୁଲ ଏବଂ ତାର ବାସ୍ନାରେ ଆମ ଘରର କୋଣ ଅନୁକୋଣ ମହକି ଯାଉଥିଲା ।

ଶୈଶବରେ ଆମେ ଯେବେ ନଲପତ୍ ଭବନକୁ ପ୍ରଥମକରି ଯାଇଥିଲୁଁ ସେତେବେଳେ ସେଠାରେ ମାତ୍ର ସାତଜଣ ରହୁଥିଲେ, ଅବଶ୍ୟ ପରିଚାରକଙ୍କୁ ଛାଡ଼ି । ମୋର ବୁଢ଼ୀମା, ପିଉସୀ ଆମ୍ମିନି, ମୋର ସାନ-ବୁଢ଼ାବାପା ଯେ କବି ଥିଲେ, ମୋର ପ୍ରପିତାମହୀ ( ଅଣ-ଗୋଷିମା ) ଓ ତାଙ୍କର ଦୁଇଟିଅ ଏବଂ ମହାତ୍ମାଜୀ ।

ଯେ କୌଣସି ନୂଆ କାମଟିଏ କରିବା ପୂର୍ବରୁ ପ୍ରଥମେ ସବୁ ସ୍ତ୍ରୀ-ଲୋକ ପରସ୍ପର ଭିତରେ କୁହାକୁହି ହେଉଥିଲେ—"ମହାତ୍ମାଜୀ ରାଜି ହେବେ ତ ।" ଯେପରିକି ମହାତ୍ମାଗାନ୍ଧୀ ହିଁ ଥିଲେ ନଲପତ ଭବନର ମୁଖ୍ୟ । ପ୍ରତି କୋଠରୀରେ ତାଙ୍କର ଫଟୋ ଝୁଲୁଥିଲା । ପରିଚାରକମାନେ ମଧ୍ୟ ମହାତ୍ମାଙ୍କର ଉପସ୍ଥିତି ଅନୁଭବ କରୁଥିଲେ ଓ ଖଦଡ଼ ପିନ୍ଧିବାକୁ ଆରମ୍ଭ କରି ଦେଇଥିଲେ ।

ଅନ୍ୟମାନେ ଯେତେବେଳେ ଶୋଇ ରହିଥିଲେ ଓ ଗରମରେ ଝରକା ଗୁଡ଼ିକ ଯେତେବେଳେ ଝକ୍ ଝକ୍ ହୋଇ ଫୁଟୁଥିଲା, ସେତେବେଳେ ମୁଣ୍ଡ ଉପରକୁ ହାତ ଟେକି ମୋର ବୁଢ଼ୀ-ମା ଗୋଟିଏ ତାକୁଡ଼ିରେ ସୂତା କାଟୁଥିଲେ । ଦୁର୍ବଳ ହେଲେ ମଧ୍ୟ ବୁଢ଼ୀ-ମା ଥିଲେ ଗୌରାଙ୍ଗୀ ଓ ସୁନ୍ଦର । ନିକଟକୁ ଯେତେ-ଥର ଡାକି ହୋଇଯାଇଛି ମୁଁ ତାଙ୍କ ସୁନ୍ଦର ଦେହରୁ ଚନ୍ଦନର ସୁଗନ୍ଧ ଆଘ୍ରାଣ କରିଛି । ଏକଦା ଆମ ପରିବାରର ସବୁ ସ୍ତ୍ରୀ-ଲୋକମାନେ ଗୁରୁବାୟୁରକୁ ଯାଇ ସେଠାରେ ନିଜ ନିଜର ଗହଣା ସବୁକୁ କପରି ହରିଜନ-ପାଣ୍ଠିକୁ ଦାନ କରିଥିଲେ—ସେକଥା ଦିନେ ବୁଢ଼ୀ-ମା ଆମକୁ କହୁଥିଲେ ।

ମହାତ୍ମାଜୀଙ୍କ କଥୋପକଥନର ଭାଷା ଥିଲା ହିନ୍ଦୀ ଅଥବା ଇଂରାଜୀ, ଯାହା ସ୍ତ୍ରୀ ଲୋକଙ୍କ ପକ୍ଷରେ ବୁଝିବା ସମ୍ଭବ ନଥିଲା । କେବଳ ତାଙ୍କର ନିର୍ମଳ ସ୍ମିତ ହାସ୍ୟରେ ସେମାନେ ସମ୍ମୋହିତ ହୋଇଯାଇଥିଲେ । ସମସ୍ତେ ଅଳଙ୍କାର ଦାନକରି ସାରିଥିଲେ । ମୁଁ ସେତେବେଳେ ଗାନ୍ଧୀଜୀଙ୍କୁ ଜଣେ ଦସ୍ୟୁ ମନେ କରିଥିଲି । ଅବଶ୍ୟ ମୋ ମନୋଭାବ ମୁଁ ବ୍ୟକ୍ତ କରି ନ ଥିଲି କେଉଁଠି । ନାରୀମାନଙ୍କୁ ନିରାଡ଼ମ୍ବର ଓ ନିଷ୍ପ୍ରଭ କରି ରଖିବା ସମ୍ଭବତଃ ନିରଳଙ୍କରଣର ଅନ୍ୟତମ ପୈଶାଚିକ ଉଦ୍ଦେଶ୍ୟ ଥିଲା ବୋଲି ମୁଁ ଭାବୁଥିଲି । ନିରଳସ କୃଚ୍ଛ୍ର ସାଧନା ମୋ ଜୀବନ କ୍ଷେତ୍ରରେ ସେତେବେଳେ ଥିଲା ଅର୍ଥ-ହୀନ । ସେସବୁ ନିଦାରୁଣ ପରିହାସ ପରି ବୋଧ ହେଉଥିଲା ମୋତେ ।

ମୋର ପିଉସୀ ଆମ୍ମିନି ପ୍ରକୃତିରେ ଥିଲେ ଆକର୍ଷଣୀୟା । ତାଙ୍କ ନିକଟକୁ ଯେତେ ବିବାହ ପ୍ରସ୍ତାବ ଆସିଥିଲା ସବୁ ସେ ଫେରାଇ ଦେଇଥିଲେ । ପିନ୍ଧୁଥିଲେ

ଶୁଭ୍ର ଖଦଡ଼ର ଶାଢ଼ୀ । ମୁଣ୍ଡରେ ତେଲ ମାରୁ ନଥିଲେ । ତାଙ୍କର ସୁନ୍ଦର କୁଞ୍ଚ୍ କୁଞ୍ଚ୍ ବାଳ ତେଲ ବିନା ଦିଶୁଥିଲା ଅପୂର୍ବ । ସେ ନିଜ ପାଇଁ ତପସ୍ୱିନୀର ଜୀବନ ବାଛି ନେଇଥିଲେ । ତାଙ୍କ ଶୋଇବା ଘର ଝରକାରୁ ସୁନ୍ଦର ପାରିଜାତ ଗଛ ଦିଶୁଥିଲା । ଏକୁଟିଆ ଥିଲେ ଆମ୍ମିନି ଝରକା କଡ଼ରେ ବସି ପାରିଜାତ ବୃକ୍ଷକୁ ଗୃହିଁ ଗୃହିଁ କୁମାରନାଶନଙ୍କ ପ୍ରେମଗୀତସବୁ ଆବୃତ୍ତି କରୁଥିଲେ । କୁମାରନାଶନଙ୍କ କବିତା ସେତେବେଳେ ଥିଲା ଲୋକପ୍ରିୟ । କେବଳ ତାଙ୍କର ଆବୃତ୍ତି ଶୁଣିବା ପରେ ମୁଁ ପ୍ରଥମଥର ପାଇଁ ଅନୁଭବ କଲି ଯେ ପ୍ରେମ ଏକ ସୁନ୍ଦର ଯନ୍ତ୍ରଣା ଓ ତପସ୍ୟା ।

ମୋର ସାନ-ବୁଢ଼ାବାପା ନାରାୟଣ ମେନନ୍ ଥିଲେ ଜଣେ ଦାର୍ଶନିକ-କବି । ସେ ଚନ୍ଦ୍ରଶାଳାଟିକୁ ଅଧିକାର କରିଥିଲେ । କେଇଖଣ୍ଡି ଆରାମ ଚଉକି ସେଠାରେ ପଡ଼ିଥିଲା ଓ ଟେବୁଲ୍ ଉପରେ ଜମା ହୋଇଥିଲା ମୋଟା ମୋଟା ବହି । ତାଙ୍କ ଚଉକି ସିଧାରେ ଉପରକୁ ଗୋଟିଏ ଦଉଡ଼ି-ଟଣା ପଙ୍ଖା ଝୁଲୁଥିଲା; ଓ ଗୃକରଟିଏ ଦୂରରେ ବସି ଟାଣୁଥିଲା ତାର ଦଉଡ଼ିଟିକୁ । ତାଙ୍କ ଚଉକିକୁ ଲାଗି ହୁକାଟିଏ ରଖାଯାଇଥିଲା । ମୋର ସାନ ବୁଢ଼ୀ-ମା ପ୍ରତି ସକାଳରେ ଅତି ଯତ୍ନର ସହିତ ପରିଷ୍କାର କରୁଥିଲେ । ସାନ-ବୁଢ଼ାବାପା ଥିଲେ ପ୍ରତି ଇଞ୍ଚ୍‌ରେ ରାଜାଭଳି, ଯଦିଓ ପଢ଼ିବାକୁ ଗୃହୁଁଥିବା ବହିଗୁଡ଼ିକ କିଣିବାପାଇଁ ବି ତାଙ୍କ ନିକଟରେ ଯଥେଷ୍ଟ ଅର୍ଥ ନ ଥିଲା ।

ପୋର୍ଟିକୋର ଦକ୍ଷିଣରେ ଥିଲା ଗୋଟିଏ ଗ୍ରିଲ୍‌ଲଗା ଗ୍ରନ୍ଥାଗାର ତାହା ଥିଲା ବ୍ଲାଭଟ୍‌ସ୍କି, ଗୁର୍‌ଡ୍‌ଜିଫ୍, ହାଭ୍‌ଲକ୍ ଏଲିସ୍ ଓ ବରାହମିହିରଙ୍କ ଦ୍ୱାରା ଅଧିକୃତ । ନାଲପତ୍ ଭବନରେ ତାଳପତ୍ର ପୋଥିର ଏକ ଚମତ୍କାର ଓ ବିଶିଷ୍ଟ ସଂଗ୍ରହ ଥିଲା । ତା' ଭିତରୁ ଅଧିକାଂଶ ବାଟେଝୁଟୁରେ ଲିପିତ ହୋଇଥିଲା, ଯାହା ସମ୍ଭବତଃ ଫୋଏନସିଆନ୍‌ଙ୍କ ମାଧ୍ୟମରେ ଆସିଥିଲା ମାଲବାରକୁ ।

ସାନ-ବୁଢ଼ାବାପା ଖୁବ୍ ସମ୍ଭବ ଜଣେ ନିଃସଙ୍ଗ ବ୍ୟକ୍ତି ଥିଲେ । ତାଙ୍କର ପ୍ରିୟ ପ୍ରସଙ୍ଗରେ ଚର୍ଚ୍ଚା କରିବା ଭଳି ବ୍ୟକ୍ତି କେହି ହେଲେ ଆଖ ପାଖରେ ନ ଥିଲେ । ଯିଏ ଯେତେବେଳେ ଯୋଉଁଥିଲେ ତାଙ୍କ ସହିତ ସେ ସାହିତ୍ୟ ଜଗତରେ ଭାସି ବୁଲୁଥିବା ନିକୃଷ୍ଟ ଅପ-ଜନରବ ଗୁଡ଼ିକ ବିଷୟରେ ଗପୁଥିଲେ । ତାଙ୍କର ବାଇଗଣି ପାପୁଲିରେ ତାଳିମାରି ହସୁଥିଲେ ବି । ସେ ଥିଲେ ପ୍ରଖର ବୁଦ୍ଧି ସମ୍ପନ୍ନ ଓ ସୁବକ୍ତା । ଦୃଷ୍ଟିଶକ୍ତି ହ୍ରାସ ପାଇବା କାରଣରୁ ପଢ଼ାପଢ଼ି

ଯେତେବେଳେ ଅସମ୍ଭବ ହୋଇ ସଙ୍ଗୀତର ଅଧ୍ୟୟନରେ ମନୋନିବେଶ କରିଥିଲେ ।

ତାଙ୍କର ସାନ୍ଧ୍ୟ ଦରବାରକୁ ଦିନେ ଦିନେ ଖୁବ୍ ଦୂର ଦୂରାନ୍ତରୁ ବିଶିଷ୍ଟ ଲେଖକ ଓ ବୟାକରଣମାନେ ରହିବାପାଇଁ ଆସୁଥିଲେ । କିନ୍ତୁ ସେମାନେ ସାନ-ବୁଢ଼ାବାପାଙ୍କ ଆଗରେ କିଛି କହିପାରୁ ନଥିଲେ । ତାଙ୍କର ଉପସ୍ଥିତି ସେମାନଙ୍କୁ ଗୌଣ କରିଦେଉଥିଲା ।

# ପାଞ୍ଚ

## ସେଇ ନାରୀ କବି ଜଣକ

ମୋ ଅଣଗୋପିମାଙ୍କ ସାନ ଭଉଣୀ କବିତା ଲେଖୁଥିଲେ । ତାଙ୍କ ମୃତ୍ୟୁର ତିରିଶ ବର୍ଷ ପରେ ମୁଁ ତାଙ୍କ କବିତା ପଢ଼ିଲି । ମୁଁ ଛଅ ବର୍ଷ ବୟସରେ ଯେତେବେଳେ ନଲପଲ୍ଲୀରେ ରହିବାକୁ ଯାଇଥିଲି, ସେତେବେଳେ ପକ୍ଷପାତ ରୋଗରେ ଆକ୍ରାନ୍ତ ହୋଇ ଗୋଟିଏ ଅନ୍ଧାରୁଆ କୋଠରୀରେ ସେ ଶୋଇ ରହିଥିଲେ ଠିକ୍ ଗୋଟିଏ ଭଙ୍ଗା ଖେଳନା ପରି । ତାଙ୍କୁ ଦେଖିଲେ ମନେ ହେଉଥିଲା ଯେପରିକି କୌଣସି ଶିଶୁ ଭୁଲ୍ ରେ ବିଛଣା ଉପରେ ତାର କଣ୍ଢେଇଟି ଫିଙ୍ଗି ଯାଇଛି । ରୋଗ କେବଳ ତାଙ୍କର ଆଖି ଦୁଇଟିକୁ ଗ୍ରାସ କରିପାରି ନଥିଲା । ଯେ ତାଙ୍କ ନିକଟକୁ ଯାଉଥିଲେ ତାଙ୍କୁ ସେ ବଡ଼ ଲୋଭରେ ବଡ଼ ଆଗ୍ରହରେ ଦେଖୁଥିଲେ । ଯତ୍‌ସାମାନ୍ୟ ଉଷ୍ମତା ସେଥିରୁ ତାଙ୍କୁ ମିଳୁଥିଲା ସେତିକି ଥିଲା ତାଙ୍କର ପାଇବା ।

ତାଙ୍କୁ ଖୋଇଦେବା ଓ ତାଙ୍କ ବିଛଣା ଉପରେ ପଡ଼ିଥିବା ରବର ସିଟ୍‌ଖଣ୍ଡିକ ବଦଳେଇବା ଥିଲା ବଡ଼ ବଡ଼ମାନଙ୍କର କାମ । ଏତିକ ସମାପିତ ହେଲେ ତାଙ୍କୁ ସେମାନେ—"ଏବେ ଶୋଇପଡ଼" ବୋଲି କହୁଥିଲେ । କିନ୍ତୁ ନିଦ ଥିଲା ସମ୍ଭବତଃ ତାଙ୍କ ପାଇଁ ଦୂରବିଦେଶୀ । ଦିନେ ଦିନେ ରାତି ଅଧରେ ବୁଢ଼ୀ-ମା ଉଠି ନିଦୁଆ ଆଖିରେ ହୋଷେଇ ଘର ପର୍ଯ୍ୟନ୍ତ ଯାଉଥିଲେ, ମୋ ପାଇଁ ଦୁଧ ଗିଲାସେ ଆଣିବାକୁ । ମୁଁ ତାଙ୍କ ପଛେ ପଛେ ଯାଉଁ ଯାଉଁ ରୋଗିଣୀଟିର କୋଠରୀ

ଭିତରକୁ ଗଳାପଡ଼ି ଗୁହାଁ ଦେଉଥିଲି । ସେତେ ରାତି ପର୍ଯ୍ୟନ୍ତ ତାଙ୍କର ଆଖି ଦୁଇଟି ବିସ୍ଫାରିତଥିବା ମୁଁ ଦେଖିଛି । ତାଙ୍କ ନାଁ ଥିଲା ଆମ୍ମାଲୁ । ନାୟାର ବଂଶର କୌଣସି ଶିଶୁ ବଡ଼ମାନଙ୍କୁ ନାମ ଧରି ଡାକିବା ଅନୁଚିତ ଥିଲେ ହେଁ ମୁଁ ତାଙ୍କୁ ଆମ୍ମାଲୁ ବୋଲି ଡାକୁଥିଲି । ଅଧିକାଂଶ ଛୁଟି ଦିନରେ ମୁଁ ତାଙ୍କ ବିଛଣାରେ ସେଇ ଚେଙ୍ଗା ଚଟା ଲାଗୁଥିବା ରବର ଫର୍ଦ୍ଦ ଉପରେ ବସୁଥିଲି ଓ ମୋର ସହପାଠୀଙ୍କ ବିଷୟରେ ଗପୁଥିଲି । ବେଳେ ବେଳେ ତାଙ୍କର ଓଷ୍ଠ କମ୍ପି ଉଠୁଥିଲା । ସେ କିଛି ମନ୍ତବ୍ୟ ଦେବାକୁ ଗୁହୁଁଥିଲେ ବୋଧେ, କିନ୍ତୁ କୌଣସି ଶବ୍ଦ ପ୍ରକାଶ ପାଇପାରୁ ନଥିଲା । ଭାବ ବିନିମୟର ମାଧ୍ୟମ ଥିଲା କେବଳ ତାଙ୍କର ଚକ୍ଷୁ ଦୁଇଟି । ତାଙ୍କ ଶୋଇବା ଘରକୁ ପ୍ରବେଶ କରି ମୁଁ ତାଙ୍କର ହାତ ସ୍ପର୍ଶ କରିବା ମାତ୍ରେ ସେଇ ଆଖି ଦୁଇଟିରେ ଆଲୋକ ଶିଖା ଜଳି ଉଠୁଥିଲା ।

ଶୃଙ୍ଖଳା ପ୍ରତି କିପରି ଆମ୍ମାଲୁଙ୍କର ଆଗ୍ରହ ଥିଲା ସେ କଥା ବୟସ୍କା ସ୍ତ୍ରୀଲୋକମାନେ କହୁଥିଲେ । ସାରା ଜୀବନ ସେ ଅବିବାହିତା ରହିଥିଲେ, ଯଦିଓ ସେ ଥିଲେ ସୁନ୍ଦରୀ ଓ କର୍ମ-କ୍ଷମ । ପରିଚ୍ଛନ୍ନତା ପ୍ରତି ତାଙ୍କର ଏକ ଉତ୍କଟ ଆସକ୍ତି ଥିଲା । ଦିନରେ ସେ ତିନିଥର ସ୍ନାନ କରୁଥିଲେ । ଦିନର ଯେ କୌଣସି ସମୟରେ ପରୀକ୍ଷା କଲେ ତାଙ୍କର ବାଳ ଓଦା ଲାଗୁଥିଲା । ତାଙ୍କର କୁଞ୍ଚିତ ଅଳକାରେ କିଛି ନା କିଛି ପତ୍ର ମଣ୍ଡିତ ଶାଖା ଶୋଭା ପାଉଥିଲା । ସେ ବହୁତ ବହୁତ ପଢ଼ୁଥିଲେ । ଖରାବେଳେ ଅନ୍ୟମାନେ ଝରକା ବନ୍ଦ କରି ଅଣ୍ଡା କଳା ଚଟାଣରେ ସପ ବିଛାଇ ନିର୍ଲଜ ନିଦ୍ରାରେ ଶୋଇ ରହୁଥିଲା ବେଳେ ସେ ଲେଖାଲେଖି କରୁଥିଲେ । କଥା ବି କହୁଥିଲେ ବହୁତ କମ୍ । କେବଳ ଗୁରୁବାୟୁରର ଏକାଦଶୀମେଳା ଦେଖିବା ପାଇଁ ସେ ଯାହା ବାହାରକୁ ଯାଉଥିଲେ ସେତିକି । କାଠଜାଲି ଦିଆ ବାରଣ୍ଡାରେ ନିଜକୁ ଲୁଚାଇ ସେ ବସ୍ତ୍ର-ମଣ୍ଡିତ ଓ ନାନା ଭାବେ ଅଳଙ୍କୃତ ହାତୀମାନଙ୍କର ଶୋଭାଯାତ୍ରା ଦେଖୁଥିଲେ । ସେଇ ଦୃଶ୍ୟ ତାଙ୍କୁ ରୋମାଞ୍ଚିତ କରୁଥିଲା । ମନ୍ଦିରର ବାଦ୍ୟନାଦ ଓ ଶଙ୍ଖ ଶବ୍ଦ ଶୁଣିଲେ ତାଙ୍କର ଓଠରେ ଈଷତ୍ ହାସ୍ୟ ଖେଳି ଯାଉଥିଲା । ତାଙ୍କର ଭକ୍ତିଭାବ ଥିଲା ଗଭୀର । ସନ୍ଧ୍ୟାକାଳର ଧୂସର ସମୟତକ ତାଙ୍କର ନିରବଚ୍ଛିନ୍ନ ପ୍ରାର୍ଥନାରେ କଟୁଥିଲା ।

ଥଣ୍ଡାପାଣିରେ ବାରମ୍ବାର ଗାଧୋଇବା ତାଙ୍କ ପକ୍ଷରେ କାଳହେଲା । ବର୍ଷାଋତୁରେ ଦିନେ ପୋଖରୀରେ ସକାଳ ସ୍ନାନ ଶେଷକରି ଉଠି ପଡ଼ିଲାବେଳେ ପକ୍ଷାଘାତ ରୋଗ ତାଙ୍କୁ ଆକ୍ରମଣ କଲା । ସେ ସେଠାରେ ମେଞ୍ଚାମେଞ୍ଚି ହୋଇ ପଡ଼ିଗଲେ । ଦୂରକୁ ଶୁଣାଯାଉଥିଲା ଗୋଟିଏ ବଡ଼ ଧରଣର ଚିତ୍କାର କେବଳ ।

ସେଇ ଚିତ୍କାରଟି ଥିଲା ଗୋଟିଏ ଅତ୍ୟାଗ୍ରହୀତ ଅସହାୟ ପକ୍ଷୀର କରୁଣ କାନ୍ଦଣା ଭଳି ଓ ସେଇଟି ଥିଲା ତାଙ୍କର ଶେଷତମ ଶବ୍ଦ । ମୁଁ ତାଙ୍କ ଜୀବନ କ୍ଷେତ୍ରକୁ ପ୍ରବେଶ କରିବା ପର୍ଯ୍ୟନ୍ତ ଦୀର୍ଘ ଦୁଇବର୍ଷ ଧରି ସେ ନିଶ୍ଚଳ ହୋଇ ବିଛଣାରେ ପଡ଼ିରହିଥିଲେ । ଘର ଭିତରୁ ଘୁମୁଘୁମୁ ହୋଇ ଉଡ଼ିଆସୁଥିବା ପାରାବତମାନଙ୍କୁ ଲକ୍ଷ୍ୟ କରିବା ଥିଲା ତାଙ୍କର କେବଳ ସୁଖାନୁଭବ । ମୁଁ ତାଙ୍କର ବନ୍ଧୁ ହୋଇଗଲି । ଏମିତି କଥାନାହିଁ ମୁଁ ଯାହା ତାଙ୍କୁ ନ କହୁଚି । ହସ-କାନ୍ଦର ଛବି ଧାରଣ କରିବା ପାଇଁ ଅକ୍ଷମ ଥିଲା ତାଙ୍କର ସେଇ ରୁଗ୍ଣମୁଖ । ସେ ଯେବେ ହସଟିଏ ହସୁଥିଲେ, ମୁଁ କେବଳ ତାଙ୍କ ଆଖିରେ ତାହାର ଝଲକ ଦେଖୁଥିଲି ।

ଦିନେ ପ୍ରାଥମିକ ବିଦ୍ୟାଳୟରୁ ପାଠପଢ଼ା ସାରି ଫେରିବା ପରେ ମୁଁ ଦେଖିଲି ଆମ୍ଭମାନଙ୍କ ସର୍ବାଙ୍ଗ ଆବୃତ । ତାଙ୍କର ନିସ୍ତେଜ ମୁହଁଟି କେବଳ ଦିଶୁଥିଲା । ଆଖି ଦୁଇଟି ବନ୍ଦ ହୋଇଯାଇଥିଲା । ବୁଢ଼ୀମାଙ୍କୁ ପଚାରିବାରୁ ସେ ମୋତେ ଶେଷ ପ୍ରଣାମ ଜଣାଇବାକୁ ନିର୍ଦ୍ଦେଶ ଦେଇ କହିଲେ—'ସେ ଆମକୁ ସବୁ ଛାଡ଼ିଯାଉଚି' । ଭାଇ ମୋ କାନରେ କହିଲୁ—'ଜାଣିଚୁ, ସେ ମରିଯାଇଛନ୍ତି ।'

ତା'ପରେ ଆମକୁ ସବୁ ଉପରକୁ ପଠାଇ ଦିଆଗଲା ଏବଂ ସକାଳ ପର୍ଯ୍ୟନ୍ତ ତଳ ବଖରାକୁ ନ ଆସିବା ପାଇଁ କଡ଼ା ଆଦେଶ ଦିଆଗଲା । ପକ୍ଷଘାତ ରୋଗିଣୀଟି ସହିତ ମୋର ସାନ୍ଧ୍ୟ-କାଳୀନ କଥାବାର୍ତ୍ତା ସେଇଦିନଠାରୁ ସବୁଦିନ ପାଇଁ ମୁଁ ହରାଇ ବସିଲି ।

ମୁଁ ଭାଇଙ୍କୁ ପଚାରିଲି—'ସେ କଣ ଆଉ ଉଠିବ ନାହିଁ ?' ଭାଇ କହିଲେ—'ତୁ ଗୋଟିଏ ବୋକା । ସେ ପରା ମୃତ । ବର୍ତ୍ତମାନ ତାକୁ ପୋଡ଼ିଦିଆଯିବ ।' ସେତକ ଶୁଣିବା ପରେ ମୁଁ କାନ୍ଦିଉଠିଲି । ଆମ୍ଭମାନଙ୍କ ଝରକା କଡ଼ରେ ପହିଷ୍ଟି ପରି ଜଗିଥିବା ଆମ୍ରଗଛରେ ବଡ଼ବଡ଼ ଶାଖାସବୁ କଟାଗଲା । ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ଆମଘରର ଦକ୍ଷିଣ-ପଟରେ ଧୂଆଁ ଉଠିବାର ଦୃଶ୍ୟ ଆମେ ଦେଖିଲୁ । ଦକ୍ଷିଣ ପଶ୍ଚିମା ପବନ ଆମ ନିକଟକୁ ମଣିଷ ମାଂସର ମଧୁର ସ୍ୱାଦୁ ବହନ କରିଆଣିଲା । ମୁଁ ପଚାରିଲି ଭାଇଙ୍କୁ—''ସେଇଠି କଣ ଆମ୍ଭମାନଙ୍କୁ ପୋଡ଼ି ଦିଆଯାଉଚି ।'' କିଛି ନ କହି ସେ କେବଳ ମୁଣ୍ଡ ଟୁଙ୍ଗାରିଲେ ।

ଏଇ ପ୍ରାୟ ବର୍ଷକ ତଳେ ମୁଁ ନିଳପତ ଭବନକୁ ଫେରିଆସିଚି । ଆଉ ତ ସେ ଶୈଶବ ନାହିଁ । ବର୍ତ୍ତମାନ ମୁଁ ପ୍ରୌଢ଼ ରମଣୀଟିଏ । ଜୀବନର ଉକ୍ତ

ପୁରସ୍କାର ଲାଭକରି ମୁଁ ଭର୍ତ୍ତି ପଢ଼ିଚି । ପୁରୁଣା ବହିପତ୍ର ଭିତରୁ ମୁଁ ଏବେ ଆବିଷ୍କାର କରିଚି ଆମ୍ମାଲୁଙ୍କ ଲିଖିତ କେତେକ କବିତା । ନୋଟ୍‌ଖାତା ଗୁଡ଼ିକରୁ ଧୂଳିଝାଡ଼ି ମୁଁ ସେ ସବୁକୁ ନେଇଆସିଚି ମୋର ନିଜ କୋଠରୀକୁ ।

ଦେଖିଲି, ଆମ୍ମାଲୁଙ୍କ ରଚିତ ପ୍ରାୟ ସମସ୍ତ କବିତା କୃଷ୍ଣଙ୍କ ବିଷୟରେ । କୃଷ୍ଣଙ୍କ ପ୍ରତି ସେ ଯାବଜ୍ଜୀବନ ବିଶ୍ୱସ୍ତ ରହିଆସିଛନ୍ତି । ତାଙ୍କର ଶେଷ କବିତାରେ ସେ ଲେଖିଥିଲେ—"ହେ କୃଷ୍ଣ, ମୋର ସଖାହେ ! ତୁମକୁ ମୋର ଏକମାତ୍ର ନିବେଦନ··· ।" ତାଙ୍କର ଲେଖାଗୁଡ଼ିକ ମୋତେ ଚହଲାଇ ଦେଲା । ଦୀର୍ଘ ତିରିଶ ବର୍ଷ ପରେ ମଧ୍ୟ ସେ ଯେ ମୋ ସହିତ ଓ ବିଶ୍ୱ ସହିତ ଭାବ ବିନିମୟ କରିବାକୁ ଚେଷ୍ଟା କରୁଛନ୍ତି—ଏ ଅନୁଭବ ମୋର ଆସିଲା । ତାଙ୍କର ସ୍ମୃତିକୁ ସ୍ପଷ୍ଟ କରିବା ପାଇଁ କୌଣସି ଫଟୋ ନଥିଲା । କେବଳ ଥିଲା ତାଙ୍କର ବହିସବୁ, ଶରତର ବୁଢ଼ାପତ୍ର ପରି ଯାହାର ପୃଷ୍ଠାସବୁ ହଳଦିଆ ପଡ଼ିଯାଇଥିଲା । ତାଙ୍କ ଲେଖାଲେଖି ରହୁଥିବା ବାକ୍‌ସର ଗୋଟିଏ ଗୋପନ ଖୋପରେ ଗୋଟିଏ କଖାରୁ ଆକୃତିର ଖଇରିଆ ବୋତଲଟିଏ ଥିଲା । ଆମ୍ବର୍‌ଗ୍ରିର ଅସ୍ପଷ୍ଟ ବାସ୍ନା ଆସୁଥିଲା ସେଥିରୁ ।

ପ୍ରେତାତ୍ମାମାନେ ସଂଚିତ ଧନପାଇଁ ଫେରିଆସନ୍ତି ବୋଲି ନାୟାର୍‌ମାନଙ୍କର ବିଶ୍ୱାସ ଥିଲା । ସେଥିପାଇଁ ମୃତବ୍ୟକ୍ତିର ଲୁଗା-ପଟାଠାରୁ ଆରମ୍ଭ କରି ସବୁ ପଦାର୍ଥକୁ ହୁଏତ ପକାଇ ଦେଉଥିଲେ, ନ ହେଲେ ଗରିବମାନଙ୍କୁ ଦାନକରି ଦେଉଥିଲେ । ଦାମିକା ଅଳଙ୍କାରଗୁଡ଼ିକୁ ଅତିଶୀଘ୍ର ତରଳାଇ ନୂଆ ଅଳଙ୍କାର ତିଆରି କରି ନେଉଥିଲେ ବ୍ୟବହାର ପାଇଁ, ଯେପରିକି ପ୍ରେତ ଆଉ ସେଇଟି ତାର ଧନ ବୋଲି ଦାବୀ କରିପାରିବ ନାହିଁ ।

ବାସ୍ତବିକ ଆମେ ଯେତେବେଳେ ମରୁ, ମରିହିଁ ଯାଉଁ । ଦିନେ ମୋର ଯୋଡ଼ା ଭୂଇଁରେ ମୋ ପୁଅ ରୋପଣ କରିବ ନଡ଼ିଆଗଛ । ତା' ପରେ ଦିନେ କେବେ କୌଣସି ଜଣେ ବଂଶଧର ଯିବେ ସେଇ ଗଛଟିର ନିକଟକୁ । ସାଉଁଳି ଦେବେ ତାଙ୍କର ପାପୁଲିରେ ଗଛଟିକୁ, ଯେମିତି ମୁଁ ଏବେ ଆମ୍ମାଲୁ-ସ୍ଥାନରେ ରୋପିତ ନଡ଼ିଆ ଗଛକୁ ପାପୁଲିରେ ସାଉଁଳେଇ ଦେଇ, ଆଲିଙ୍ଗନ କରି, ସ୍ୱର୍ଗୀୟ ନାରୀଟି ଉଦ୍ଦେଶ୍ୟରେ ଜଣାଇ ଆସିଲି ମୋର ବାର୍ତ୍ତା ଅସ୍ପଷ୍ଟ ସ୍ୱରରେ ।

# ଛଅ

## ତାଙ୍କର ସୌନ୍ଦର୍ଯ୍ୟ ମୋତେ ମୁଗ୍ଧ କରିଥିଲା

ନଲପଡ଼ ଭବନଠାରୁ ମାତ୍ର ଦୁଇ ଫର୍ଲଂ ଦୂରରେ ଥିବା ପୁନ୍ନତ୍ତୁର୍‌କୁଲମର ପ୍ରାଥମିକ ବିଦ୍ୟାଳୟରେ ମୋର ନାମ ଲେଖା ହେବାପରେ ମୋ ପକ୍ଷରେ ଏକ ସାଂସ୍କୃତିକ ମୃତ୍ୟୁ ଓ ସାଂସ୍କୃତିକ ପୁନର୍ଜନ୍ମ ହେଲା ବୋଲି ମନେକଲି । ମୋର ନବୀନ ଜଗତରେ ଆଉ କଠୋର-ଦୃଷ୍ଟିସମ୍ପନ୍ନ ବ୍ରିଟିଶ୍ ସହପାଠୀ ମାନଙ୍କର ଶତ୍ରୁ-ପଣ ନ ଥିଲା ।

ଆମ ନିଜ କ୍ଷେତରେ କୃଷି କରୁଥିବା ହଳିଆ ଓ ବଢ଼େଇ ଆଦିଙ୍କ ପୁଅ-ଝିଅମାନେ ଥିଲେ ମୋର ନୂତନ ସହପାଠୀ । ଖଣ୍ଡିଏ ଲେଖାଁ ଗ୍ଲେଟିଆ ପତଳା ଟାମୁଗ୍ଣ ପିନ୍ଧି ସେମାନେ ବିଦ୍ୟାଳୟକୁ ଆସୁଥିଲେ । ତାଙ୍କର ଭିତରୁ ଜଣେ ଥିଲା ବେଲୁ । ସେ ମୋର ବେଞ୍ଚ୍‌ରେ ବସୁଥିଲା । ତା' ଆଖିରେ ଲେଞ୍ଚରା ଓ ଦେହ ସାରା ଘା ଥିଲା । ତା'ର ବାପା ଥିଲେ ଜଣେ ସମ୍ମାନିତ ଭିକ୍ଷୁକ । ପ୍ରତି ସକାଳେ ଭିକ ମୁଠିଏ ପାଇଁ ସେ ଆମ ଘରକୁ ଆସୁଥିଲା । ପୁଷ୍ଟିହୀନତା ଫଳରେ ବେଲୁ ହାଲଦିଆ ଦିଶୁଥିଲା । ଆମର ଜନ୍ମଦିନ ଉତ୍ସବରେ ଆମେ ସବୁ କାଙ୍ଗାଳ ଭୋଜନର ବ୍ୟବସ୍ଥା କରୁଥିଲୁ । ବେଲୁ ମଧ୍ୟ ତା' ବାପା ସାଙ୍ଗରେ ଆସୁଥିଲା ଖାଇବାକୁ । ତାର ବାପା ଆମ ସାମ୍ନାରେ ତା' କାନ ମୋଡ଼ି ଦେଉଥିଲେ, ପିତୃତ୍ୱର ଅଧିକାର ପ୍ରଦର୍ଶନ କରିବା ଇଚ୍ଛାରେ ବୋଧହୁଏ ।

ଆମ କମ୍ପାଉଣ୍ଡ୍ ଭିତରେ ଥିବା ଆମ୍ବଗଛ ମୂଳେ ଦୁଇଟି କାଠହାଣ୍ଡି ଭର୍ତ୍ତି ଭାତ ଓ ବଡ଼ କଡ଼େଇରେ ଲାଲ୍ ତରକାରି ରଖାଯାଉଥିଲା । ପିଲାମାନଙ୍କ ପାଇଁ ଗୋଟିଏ ଜିନିଷ ଅଧିକା ଥାଏ । ସେଇଟି ଆମ୍ବୁଲ । ବେଶ୍ ଲୁଣ ଜରଜର ହୋଇ ଆମ୍ବୁଲ ସବୁ ଭଣ୍ଡାର ଘର ଭିତରେ ବଡ଼ ବଡ଼ ଡେଙ୍ଗା ଘୁମ ବା ହାଣ୍ଡି ଭିତରେ ଗଚ୍ଛିତ ଥାଏ । ଏଇସବୁ ଦିନରେ ଗୃହିଣୀମାନେ ସେସବୁକୁ ବଡ଼ ବଡ଼ ହତା ବା କରଚୁଲି ସାହାଯ୍ୟରେ ବାହାର କରନ୍ତି । ମୁଁ ବେଲୁକୁ ଉଦ୍ଦେଶ୍ୟ କରି କହେ—"ବେଲୁକୁ ଆଉ ଖଣ୍ଡିଏ ଆମ୍ବୁଲ ଦିଅ ତ ।" ସବୁଥିରୁ ଅଧିକା ଅଧିକା ବେଲୁକୁ ଦେବାକୁ ମୁଁ ପରିବେଷକମାନଙ୍କୁ କହୁଥିଲି । ସେଥିରେ ବେଲୁ ଖୁସି ହୋଇ ମୋ ଆଡ଼କୁ ବନ୍ଧୁପରି ହସି ଦେଉଥିଲା ।

ମୋର ଆଉ ଜଣେ ସହପାଠୀଥିଲି ଦେବକୀ । ବେଶ୍ ହୃଷ୍ଟପୁଷ୍ଟ । ସେ ଏକଦା ମୋ ନିକଟକୁ ପ୍ରେମପତ୍ର ଲେଖିଥିଲି । ସ୍କୁଲର ପାଇଖାନା ନିକଟରେ ଲୁଚି ରହି ସେ ମୋତେ ଅତି ଗୋପନରେ ବଢ଼େଇ ଦେଇଥିଲି ସେଇଟି । କହିଲି—"ନେ, କିନ୍ତୁ ବର୍ତ୍ତମାନ ପଢ଼ିବୁନି । ଘରେ ଏକୁଟିଆ ପଢ଼ିବୁ, ଗୋପନରେ ।" ମୁଁ ସେଇ ଝିଅଟିର କଥା ଶୁଣି ଅବାକ୍ ହୋଇଯାଇଥିଲି । କିପରି ଏକ ରହସ୍ୟ-ଭାବ ମୋ ଭିତରେ ଚେଇଁ ଉଠିଥିଲା । ମୁଁ ଘରେ ପହଞ୍ଚିଲା ମାତ୍ରେ ମୋ ପକେଟ୍‌ରୁ ସେଇ ଚିଠିଟିକୁ ବୁଢ଼ୀ ମା ନେଇଗଲେ । ଚିଠିରେ "ମୋର ସୁନ୍ଦରୀ ପ୍ରିୟତମା…"ବୋଲି ସେ ସମ୍ବୋଧନ କରିଥିଲି । ବୁଢ଼ୀ ମା ସେତିକରୁ ଅଧିକା ପଢ଼ିବାକୁ ମୋତେ ଅନୁମତି ଦେଇ ନଥିଲେ । ଖାଲି ସେତିକ ନୁହେଁ ବୁଢ଼ୀମା ବଡ଼ ବିରକ୍ତ ହୋଇଗଲେ । ଦେବକୀ ସହିତ ମିଳାମିଶା କରିବାକୁ ମୋତେ ବାରଣ କଲେ । "ଦେବକୀ ବଡ଼ ବାଜେ ଧରଣର ଝିଅ । ତୋ' ପରି ନିରୀହ ଝିଅମାନଙ୍କୁ ଏପରି ଚିଠି ଲେଖି ସେ ତାର ଦୁଷ୍ଟାମିର ପରିଚୟ ଦେଇଛି" —ବୁଢ଼ୀମା କହିଲେ ।

ସପ୍ତାହକ ପରେ ଦେବକୀ ମୋତେ କାହିଁକି ଉତ୍ତର ଲେଖିଲୁନି ବୋଲି ପଚାରିଲି । ମୋତେ ମାଲୟାଲମ୍ ଭାଷାରେ ଭଲ ଲେଖି ଆସୁନି ବୋଲି ମିଛ କହି ଖସିଗଲି । ତାକୁ ପୁଣି ସାମାନ୍ୟ ଆଶା ଦେବାପାଇଁ କହିଲି ଯେ ପ୍ରାୟ ଏଇ ବର୍ଷକ ଭିତରେ ମୁଁ ତାକୁ ସୁନ୍ଦର ଓ ଦୀର୍ଘ ପ୍ରେମ ଚିଠିଟିଏ ଲେଖିପାରିବି । ଅବଶେଷରେ ସେ ମୋ ଉପରେ ବିରକ୍ତ ହୋଇଗଲା ଏବଂ ମୋ ଠାରୁ ବଡ଼ ଅନ୍ୟ ଏକ ଝିଅ ସହିତ ଜମିଗଲା । ସେମାନଙ୍କର ପାଇଖାନାରେ ପ୍ରତ୍ୟହ ପ୍ରେମ ଚିଠିର ଆଦାନ ପ୍ରଦାନ ଚାଲିଲା, ମାସ ମାସ ଧରି । ଅବଶେଷରେ ଦିନେ ଗଣିତ ଶିକ୍ଷକ ସେମାନଙ୍କୁ ଆବିଷ୍କାର କଲେ ଓ ପ୍ରଚଣ୍ଡ ଗାଳି ଦେଲେ ।

ଆମର ଧୂଳିଆ କ୍ଲାସରୁମ୍‌କୁ ଲାଗିଥିଲା ଅଷ୍ଟମ ଶ୍ରେଣୀ । ସେଥିରେ ଗୋଟିଏ ପୁଅ ପିଲା ପଢ଼ୁଥିଲା, ଶିକ୍ଷକମାନଙ୍କ ଦୃଷ୍ଟିରେ ଯେ ଥିଲା ଅବାଧ୍ୟ ଓ ଦୁଷ୍ଟ । ପ୍ରତିଦିନ ତା' ପ୍ରତି ନାନା ପ୍ରକାରର ଦଣ୍ଡବିଧାନ କରି ଶିକ୍ଷକମାନେ ଏକ ପ୍ରକାରର ଆସୁରିକ ଆନନ୍ଦ ଲାଭ କରୁଥିଲେ । ପିଲାଟି ଥିଲା ସୁନ୍ଦର । ତା'ର ଡାହାଣ ଗାଲରେ ଗୋଟି ଟିଳ ଚହଲୁଥିଲା; ହସିଲେ ସ୍ପଷ୍ଟ ଦିଶୁଥିଲା ସେଇଟି । ତାକୁ ଦେଖିଲେ ମୋ ଆଖିରେ ପଲକ ପଡ଼ୁନଥିଲା । ତା ମୁହଁ ଉପରୁ ମୁଁ ଦୃଷ୍ଟି ଫେରାଇ ଆଣି ପାରୁ ନ ଥିଲି । ତାର ରୂପରେ ମୁଁ ଆତ୍ମହରା ହୋଇ ଯାଇଥିଲି । ଦିନେ ସେ ଶ୍ରେଣୀ ବାହାର କଳାପଟାରେ ଅସଭ୍ୟ କଥା ଲେଖି ଦେଇଥିଲା; ସେଥିପାଇଁ ଶ୍ରେଣୀ ଶିକ୍ଷକ ତା' ଗାଲରେ ଚୁପୁଡ଼ି କଷିଦେଲେ । ଅସ

ଶ୍ରେଣୀରେ ବସି ତା' ଗାଲର ଲାଲ ଚନ୍ଦ୍ର ମୁଁ ଦେଖି ପାରୁଥିଲି । ତା ନାମ ଗୋବିନ୍ଦ କୁରୁପ୍ । ଏ ଘଟଣାରେ ସେ ଟିକିଏ ହସିଦେଲା ଓ ତା' ବେଞ୍ଚରେ ବସିଥିବା ପିଲାଟିକୁ ଏମିତି କଣ ସବୁ ଆସ୍ତେ ପାଟିରେ କହିଲା ଯେ ବିଚାରି ପିଲାଟିର ମୁହଁ ଲାଲ ପଡ଼ିଗଲା ଓ ସେ ତଳକୁ ମୁହଁ ପୋତି ବସି ରହିଲା । ଶିକ୍ଷକ ଏଥିରେ ଆଉରି ରାଗିଲେ । କହିଲେ—"ବାହାରି ଯା କ୍ଲାସରୁ । ଗୋବିନ୍ଦ କୁରୁପ ! ଶୀଘ୍ର ଏ କ୍ଲାସରୁ ବାହାରି ଯା ।" ତାପରେ ଗୋବିନ୍ଦ କୁରୁପ ତାର ଧୋତି ସଜାଡ଼ି ସୁସ୍ଥିର ମାରି ମାରି ବାହାରି ଯିବା ମୁଁ ଦେଖିଚି । ସେଇ ମୁହୂର୍ତ୍ତିରେ ତାକୁ ଅନୁସରଣ କରିବାକୁ ମୋର ଇଚ୍ଛା ହେଉଥିଲା । ମୋର ତାକୁ କହିଦେବାକୁ ଇଚ୍ଛା ହେଉଥିଲା—"ଯଦି ତୁମେ ଦୁଷ୍ଟ ମୁଁ ବି ଦୁଷ୍ଟାମିକୁ ଭଲପାଏ ।"

ବୁଢ଼ୀ-ମାଙ୍କ ଘରେ ତାଙ୍କ ପାଖରେ ଶୋଇଲାବେଳେ କହିଲି—"ମୁଁ ଗୋବିନ୍ଦ କୁରୁପକୁ ବାହା ହେବି ।" ସେ କହିଲେ—"ଓଁଲାଟେ କଲେ !" କିନ୍ତୁ ମୋ କଥା ଶୁଣି ସେ ହସିଲେ, ଓ ତାଙ୍କୁ ଭାରି ମଜା ଲାଗିଲା ବୋଧହୁଏ । ଥରେ ଗ୍ରୀଷ୍ମ ଛୁଟିରେ ସର୍ପବେଦୀ ନିକଟରେ ବସି ଆମେ ସବୁ ପଶା ଖେଳୁଥିଲୁ । ସେହି ସମୟରେ ଗୋବିନ୍ଦ କୁରୁପ ଫାଟକ ପାରି ହୋଇ ଥାନା ଆଡ଼କୁ ଆସିଲା । ଆମେ ଥିଲୁ ସବୁମୋଟ ଛ'ଜଣ ? ମୁଁ, ମୋ ଭାଇ ଓ ନିକଟରେ ରହୁଥିବା ଆମର କେତେଜଣ ସମ୍ପର୍କୀୟ ଭାଇ-ଭଉଣୀ । ମୁଁ ଜାଣେ ନା, କଣ ଭାବି ସେ ଗୋଟିଏ ଅପରିଚିତର ଘରକୁ ପଶି ଆସିଥିଲା । କିନ୍ତୁ ସେ ବଡ଼ ମିଜାଜ୍‌ରେ ଥିଲା । ସ୍କୁଲ୍‌ର ସିଲେଇ-ଶିକ୍ଷୟିତ୍ରୀଙ୍କୁ କେମିତି ପରିହାସ କରି ସେ ହଇରାଣ କରିଥିଲା, ସେଇ ବିଷୟ ଆମକୁ କହିବାକୁ ଆରମ୍ଭ କଲା । କହୁଁ କହୁଁ ତାର ସ୍ୱର ଅଧିକ ଉତ୍ସାହପୂର୍ଣ୍ଣ ହୋଇଗଲା ଓ ମୁଁ ନିଜେ ଡରିଗଲି । କାରଣ ମୁଁ ଜାଣିଥିଲି ସେ ସାନ-ବୁଢ଼ାବାପା ତାଙ୍କର ଖାଉବେଳ ନିଦରେ କୌଣସି ବ୍ୟାଘାତ ସୃଷ୍ଟି ହେବା ଚାହୁଁ ନ ଥିଲେ । କିନ୍ତୁ ଉପାୟ ନ ଥିଲା । ଅଳ୍ପ ସମୟ ପରେ ସତକୁ ସତ ପଦାକୁ ଆସିଲେ ସାନ-ବୁଢ଼ାବାପା ଏବଂ ଅନୁପ୍ରବେଶକାରୀଙ୍କୁ ଲକ୍ଷ୍ୟ କରି ଗର୍ଜନ କଲେ : "ସେ ଟୋକାଟା କିଏରେ—କିଏ ତାକୁ ଏଠିକି ଆସିବାକୁ ଅନୁମତି ଦେଲା ?" ସାନ-ବୁଢ଼ାପପା ଜଣେ ଦାର୍ଶନିକ-କବି ହେଲେହେଁ ବଡ଼ ଅଶ୍ଳୀଳ ଥିଲେ । ନିମ୍ନ-ମଧ୍ୟବିତ୍ତ ଓ ଦରିଦ୍ରମାନଙ୍କ ପାଇଁ ସେ ଅଗ୍ରର-ବ୍ୟବହାର ଓ ମୀତ ସବୁର ନିର୍ଦ୍ଧାରଣ କରିବାରେ ବିଶ୍ୱାସ କରୁଥିଲେ । ଉଚ୍ଚବଂଶଜ ହେଲେ ସୁଦ୍ଧା ଆମ ପକ୍ଷରେ ଯେ ସେଇସବୁ ମୀତ ଓ ଆଗ୍ରର ପାଳନୀୟ, ତାହା ସେ ବୁଝୁ ନଥିଲେ । ବଡ଼ଲୋକର ଖୁସିରେ ସେ କେବଳ ଅନ୍ୟମାନଙ୍କର ବ୍ୟବସ୍ଥାପକ ହେବାରେ ଗୌରବ ଅନୁଭବ କରୁଥିଲେ । ଆମ

ତୁଳନାରେ ଅନ୍ୟମାନଙ୍କର ସ୍ଥାନ କେଉଁଠି ତାହା ସେ ମୁଣ୍ଡ ଖୁଆଇ ଦେଉଥିଲେ । ଏହା ବ୍ୟତୀତ ଅପୌରାଣିକଙ୍କ ସହିତ କଥାବାର୍ତ୍ତା କଲାବେଳେ ସେ ବଡ଼ ଅଧୈର୍ଯ୍ୟ ହୋଇପଡ଼ୁଥିଲେ । କିନ୍ତୁ ନିଜ ପରିବାରର ଶିଶୁମାନଙ୍କ ପ୍ରତି ସେ ଥିଲେ ଦୟାଶୀଳ । ନିଜ ଚିତ୍ରରୁ ତାଙ୍କର ପ୍ରକାଶକଙ୍କ ଟେବୁଲ୍‌ରୁ ସେ ଆମ ପାଇଁ ସବଦା ପେନ୍‌ସିଲ୍ ନେଇ ଆସୁଥିଲେ ।

ନାରୀମାନେ ଗହଣା ଓ ଫୁଲରେ ମଣ୍ଡିତ ହୋଇ ପ୍ରମୋଦଦାୟୀ ହୁଅନ୍ତୁ—ଏହା ଥିଲା ସାନ-ଜେଜେବାପାଙ୍କ ଇଚ୍ଛା । ମୋର ପ୍ରିୟ ସାନ-ଜେଜେମା ଥିଲେ ତାଙ୍କର ଦ୍ୱିତୀୟ ପତ୍ନୀ । ସେ ଥିଲେ ଗହଣାରେ ଭାରାକ୍ରାନ୍ତ । ବିନା ଗହଣାରେ ତାଙ୍କୁ କେହି କେବେ ଦେଖି ନ ଥିଲେ । ଏପରିକି ରାତିରେ ବି । ତାଙ୍କର ସମସ୍ତ ଅଲଙ୍କାର ମଣି-ଖଚିତ ଓ ସମୁଜ୍ଜ୍ୱଳ ଥିଲା । ସେସବୁ ସହିତ ନାୟାର୍ ପରିବାରର ପାରମ୍ପରିକ ଅଲଙ୍କାର ବି ସେ ଧାରଣ କରୁଥିଲେ । ଗାଲରେ ହଳଦୀ, କପାଳରେ ଶୁଭ୍ର ଚନ୍ଦନର ଚିତା, ଆଖିରେ କଜଳ ଓ ଜଲରେ ପାନଖିଲ ଥିଲା ତାଙ୍କର ପ୍ରାତ୍ୟହିକ ଭୂଷଣ । 'ଓଟୋ ଦିଲ୍ ବାହାର' ନାମକ ସେସମୟର ଗୋଟିଏ ଲୋକପ୍ରିୟ ମୁସଲିମ ଅତର ମଧ୍ୟ ସେ ବ୍ୟବହାର କରୁଥିଲେ । ତାଙ୍କର ନିବାସ 'ଦି ଆମ୍ବାକେଠ୍ ହାଉସ୍' (ବା—'ଆମ୍ବାକେଠ ଭବନ') ଆମ ଇଲାକାର ପ୍ରଥମ ବୃହଦାକାର ଗୃହ ଥିଲା । ସେ ଜଣେ ବିତ୍ତଶାଳୀ ଜମିଦାରଙ୍କ କନ୍ୟା ଥିଲେ । ତାଙ୍କ ଘରେ ପିଲାମାନଙ୍କୁ ସବୁ ପାଠ ପଢ଼ିବା ପାଇଁ ଇଂଲଣ୍ଡ୍‌କୁ ପଠାଯାଉଥିଲା । ବିଲାତ ଫେରନ୍ତା ଭାବରେ ସେ ମଧ୍ୟ ସେଇଭଳି ଏକ ବିଶିଷ୍ଟ ବିତ୍ତଶାଳୀ ପରିବାରରେ ବିବାହ କରିପାରିଥା'ନ୍ତେ । କିନ୍ତୁ ତାଙ୍କର ସର୍ବାଙ୍ଗ କଳା ଚିହ୍ନରେ ପୂର୍ଣ୍ଣ ଥିଲା । ସେଗୁଡ଼ିକ ସେ ବହୁଦିନ ଧରି ଗୁପ୍ତ ରଖିଥିଲେ । ସେଥିପାଇଁ ଅନ୍ୟ ସ୍ତ୍ରୀଲୋକମାନେ ପୋଖରୀରେ ମଜାରେ ବୁଡ଼ିକରି ଗାଧୋଇଲା ବେଳେ ସେ ସ୍ନାନାଗାରରେ ଲୁଚିକରି ଗାଧୋଉଥିଲେ । ତାହା କିନ୍ତୁ ଛପି ରହିଲା ନାହିଁ । କ୍ରମେ ତାଙ୍କର ଦାନ୍ତ ଲତାକୁ ମାଡ଼ି ଆସିଲା ସେଇସବୁ କଳା ବିନ୍ଦୁ, ଓ ସେ ବାଧ୍ୟ ହୋଇ ସ୍ୱାମୀଙ୍କ ଆଗରେ ପ୍ରକାଶିତ ଓ ଖୋଲାଖୋଲି ବ୍ୟବହାର କରିବାକୁ ସହଣୀଳା ହେଲେ । ସ୍ୱାମୀ ସ୍ତ୍ରୀଙ୍କ ଭିତରେ ସମ୍ପର୍କ ଦୃଢ଼ ଥିଲା ଏବଂ ମୋ ଜାଣିବାରେ ତାହା ଥିଲା ଏକାନ୍ତ ଭାବେ ଯୌନ-ଭିତ୍ତିକ । ସେଇ ସମୟରେ ଯୌନ-ଜୀବନ ସମ୍ପର୍କରେ ମୋର ସାନ-ଜେଜେବାପା ଖଣ୍ଡିଏ ବହି ଲେଖିଥିଲେ ମଧ୍ୟ ।

ବହିଟିର ଶୀର୍ଷକ ହେଉଛି—'ରତି ସାମ୍ରାଜ୍ୟ' ତାହା ଗୋଟିଏ ଅଧ୍ୟୟନ ମୂଳକ ବିଶ୍ଳେଷଣଧର୍ମୀ ରଚନା ଏବଂ ହାଭଲକ୍ ଏଲିସ୍ ଓ ଭାରତୀୟ ଯୌନ-ତତ୍ତ୍ୱବିତ୍‌ମାନଙ୍କ ଲେଖାର ଅନୁସରଣରେ ସମ୍ପାଦିତ ।

ଯାନ ବ୍ଲାଡ଼ାପ୍ପା ତାଙ୍କର ପତ୍ନୀଙ୍କୁ "ମୋ ଜାଣିବାରେ ତୁମେ ହେଉଛ ସବୁଠାରୁ ବେଶୀ ବୁଦ୍ଧି-ଶୂନ୍ ନାରୀ''—କହିବା ମୁଁ ଶୁଣିଚି । ଏପରି ମନ୍ତବ୍ୟରେ ଅଲଙ୍କୃତା ପତ୍ନୀ ଅତି ଖୁସିରେ ହସି ଉଠନ୍ତି । କିନ୍ତୁ ରାତିରେ ଏଇ ପ୍ରମୋଦିନୀଟି ଆପଣାର ବିଶାଳ ଅଙ୍ଗ ଦ୍ୱାରା ସ୍ୱାମୀଙ୍କୁ ଦାସ କରିନିଅନ୍ତି । ଯାହା ଫଳରେ ଦିନବେଳେ ସେ ନିର୍ଭୟରେ ସ୍ୱାମୀଙ୍କୁ ପରିହାସ କରିବାକୁ ସାହସ କରିପାରୁଥିଲେ । ପ୍ରତି ରାତିରେ ପରିଚାରିକାଙ୍କ ଦ୍ୱାରା ପରିବେଷ୍ଟିତ ହୋଇ, ସାଙ୍ଗରେ ଲଣ୍ଠନ ଧରି ଆମ ଘରକୁ ସେ ଯେତେବେଳେ ଆସନ୍ତି, ଦିଶନ୍ତି ଏକ ନବବଧୂ ବା ବିବାହ-ବେଦୀର କନ୍ୟା ଭଳି । ସେ ଗୋଲେଇ ପାହାଚ ଉଠି ତାଙ୍କର ବିଖ୍ୟାତ ସ୍ୱାମୀଙ୍କୁ ଭେଟିବାକୁ ଯାଆନ୍ତି ଉପରକୁ । ସେଠାରେ ତାଙ୍କର ଶୋଇବା ଘର । ଜୂଇ ଫୁଲର ହାର ଓ ଧୂପରେ ଘରଟି ମହକିତ ହୋଇଥାଏ ତା' ପୂର୍ବରୁ ।

# ସାତ

## ନାୟାର୍ ରମଣୀମାନଙ୍କର ଯୌନ ବିଚାର

ମଧୁ-ଶଯ୍ୟାର ରାତି ପର୍ଯ୍ୟନ୍ତ ପ୍ରଜନନ ପ୍ରକ୍ରିୟାରେ ନାରୀ ଓ ପୁରୁଷଙ୍କ ଭିତରେ ଯଥାର୍ଥରେ କଣ ସବୁ ହୁଏ ମୋର କିଛି ହେଲେ ଧାରଣା ନଥିଲା । ବର୍ତ୍ତମାନ ଭଳି ଯୌନ ଶବ୍ଦଟି ସେତେବେଳେ ଫେସନରେ ପରିଣତ ହୋଇ ନ ଥିଲା । କିନ୍ତୁ ଯୌନ-ଜୀବନର ଅନୁରାଗୀମାନେ କିନ୍ତୁ ଅକର୍ମା ନ ଥିଲେ । ସେତେବେଳେ ।

ଆମର ନାଲପତ୍ ଭବନରେ ରୋଷେଇ ଘରର ଚାକରାଣୀଟି ଆମ ପୂଝାରୀଟି ସହିତ ସବୁବେଳେ ପ୍ରେମ ପରିହାସରେ ମାତିଥିଲା । ପୂଝାରୀ ବି ତାକୁ ବିବାହ କରିବ ବୋଲି କଥା ଦେଇଥିଲା । ତାର ଚନ୍ଦ୍-ଫଣ୍ଡ୍ ଉଠିବା'ର ବେଳ ହୋଇଗଲେ ସେ ଯଥେଷ୍ଟ ଅର୍ଥ ଲାଭ କରିବ ଓ ସେଥିରେ ବିବାହ-ସରଞ୍ଜାମ ସବୁ କିଣିବ ବୋଲି କଥା ଥିଲା । ଗରିବ ଶ୍ରେଣୀର ନାୟାର୍ ମାନଙ୍କ ବିବାହ ପଦ୍ଧତି ଥିଲା ଖୁବ୍ ସରଳ ଓ ନିରାଡ଼ମ୍ବର । ମିନିଟ୍ କେତୋଟିରେ ବିବାହ କାର୍ଯ୍ୟ ସମାପିତ ହେବା ସମ୍ଭବ ଥିଲା । ବରପାଇଁ କନ୍ୟାକୁ ଖଣ୍ଡିଏ ବସ୍ତ୍ର ଦେବାକୁ ହୁଏ;

କନ୍ୟା ଯେଉଁଟିକୁ ଗ୍ରହଣ କରିନେବା ମାତ୍ରେ, ବରର ସ୍ତ୍ରୀ ରୂପେ ପରିଗଣିତ ହୋଇଯାଏ । କେବଳ ଏତିକରେ ବିବାହ ଅନୁଷ୍ଠାନ ଶେଷ ।

ଅବଶ୍ୟ ସେତେବେଳେ ମାଲବାରରେ ବସ୍ତ୍ର ହିଁ ଥିଲା ମଣ୍ଡଠାରୁ ଅଧିକ ଦୁଷ୍ପ୍ରାପ୍ୟ ଓ ମହାର୍ଘ । ମାତୃପକ୍ଷରୁ ଭଗିନୀମାନଙ୍କୁ ବସ୍ତ୍ର ପ୍ରଦାନ କରିବା ସହଜ ବ୍ୟାପାର ନ ଥିଲା । ଯଦିଓ କନ୍ୟାମାନଙ୍କର ନିମ୍ନ-ବାସ ପାଇଁ ଅଢ଼େଇ ଗଜ ଓ ଉପର ପାଇଁ ଦୁଇଗଜ ବସ୍ତ୍ର ମାତ୍ର ପ୍ରୟୋଜନ ହେଉଥିଲା । ବକ୍ଷଦେଶ କେବଳ ମୋଟା ମୋଟା ମାଳ ଓ ହାର ଦ୍ୱାରା ଆବୃତ ହେଉଥିଲା ।

ପୂର୍ଣ୍ଣାଙ୍କୀ ବିବାହ ପାଇଁ ପ୍ରୟୋଜନୀୟ ବସ୍ତ୍ର କିଣିବା ଲାଗି ତ୍ରିଚୁରର ବଜାରକୁ ଯିବାଲାଗି ଅନେକଥର ଯୋଜନା କଲା ଏବଂ ତାର ଚମତ୍କାର ଯୋଜନା ବିଷୟରେ ସବୁବେଳେ ଖାଲି କହି ଚାଲିଲା । ତାର ଅନର୍ଥକ ଯୋଜନା କଥା ଶୁଣି ଶୁଣି ବାଳକାଟିର ଧୈର୍ଯ୍ୟ କ୍ଷୀଣ ହୋଇଆସିଲା କ୍ରମଶଃ । ଠିକ୍ ଏଇ ସମୟରେ ଆମର ଜଣେ ବିତ୍ତଶାଳୀ ବନ୍ଧୁଙ୍କ ଦୃଷ୍ଟିରେ ଯୁବତୀଟିର ଦୋଳାୟିତ ରୂପ ପଡ଼ିଲା ଓ ସେଥିରେ ସେ ରସିଗଲେ ।

କ୍ରମେ ଖବରନେଲେ ଯୁବତୀଟିକୁ ଗୋପନରେ ସେ ଗୋଟିଏ ଫାଙ୍କା ବଖରାକୁ ଡାକିନେଇ ତାକୁ ପୀରତି ପ୍ରସଙ୍ଗରେ ଫୁସୁଲେଇବାକୁ ଆରମ୍ଭ କଲେ । ତାଙ୍କର ଉଦ୍ଦୀପନା ଦିନକୁ ଦିନ ବଢ଼ିବାକୁ ଲାଗିଲା । ଯୁବତୀଟି ତାଙ୍କର ବାଲକୋନି ତଳଦେଇ ଅତିକ୍ରମ କଲାବେଳେ ସେ ଚିଠି ଲେଖି ତା' ଉପରକୁ ଲକ୍ଷ୍ୟକରି ନିକ୍ଷେପ କରନ୍ତି । ଯୁବତୀ ସଙ୍କେତ ବୁଝିପାରେ । ଦିନେ ଚିଠିରୁ ଖଣ୍ଡେ ଦୈବାତ୍ ଆମ ବୁଢ଼ୀ-ମାଙ୍କ ହାତରେ ପଡ଼ିଲା । ସେ କାଳବିଳମ୍ବ ନ କରି ଯୁବତୀଟିକୁ କର୍ମରୁ ଅନ୍ତର କରିଦେଲେ ।

ଏହାପରେ ପୂର୍ଣ୍ଣାଙ୍କୀ ଅଧିକାଂଶ ସମୟରେ ଯୁବତୀଟିକୁ ସାକ୍ଷାତ କରିବା ଓ ତାର ଭ୍ରାନ୍ତି ଅପନୋଦନ କରିବା ପାଇଁ ଆମଘରୁ ଖସି ଯାଉଥିଲା । ଦିନକର ଘଟଣା । ପୂର୍ଣ୍ଣାଙ୍କୀ କୌଣସି ମନ୍ଦିରର ଉତ୍ସବ ଦେଖି ଫେରୁଥାଏ । ବାଟରେ ସେହି ଧନବନ୍ତର ଭୃତ୍ୟ ତା'ଉପରକୁ କୁଦି ପଡ଼ିଲା ଓ ତା' ଉପରକୁ ପଥର ଢେଲା ଫିଙ୍ଗି ଖଣ୍ଡିଆ-ଖାବରା କରିପକାଇଲା । ସେ ଆମ ଘରେ ପହଞ୍ଚିଲା-ବେଳକୁ ଆଉ ପାହାଚ ଉଠିପାରୁ ନ ଥାଏ । ଧାର ଧାର ରକ୍ତ ବହି ତା' ଆଖି ଉପରେ ପଡ଼ୁଥିବାରୁ ବାଟ ଦେଖିପାରୁ ନ ଥାଏ । ତାର ଖୋଲା ଗ୍ରୀବ ଭିଜି ଯାଇଥାଏ ଲାଲ୍ ରକ୍ତରେ । ତାର ଅବସ୍ଥା ଦେଖି ବୁଢ଼ୀ-ମା ଭୟ ପାଇଗଲେ । ମୁଠାଏ ଗ୍ରେଟଦାନାଦାଳ ଚିନି ଆଣି ତାର କପାଳର ଖଣ୍ଡିଆ ଜାଗାରେ ଲଗାଇ

ଦେଲେ, ସେଥିରେ ରକ୍ତସ୍ରାବ ବନ୍ଦ ହୋଇଯିବା ଉଦ୍ଦେଶ୍ୟରେ । ମୂର୍ଚ୍ଛାଗ୍ରସ୍ତ ପ୍ରତିନାୟକର ନାମ ପ୍ରଲାପ କରି ଶୋଇପଡ଼ିଲା ସେଇ କାଠଖମାର ଉପରେ, ଯେଉଁ ଖମାର ଭିତରେ ଆମର ଗାଈ-ଗୋରୁଙ୍କ ପାଇଁ ଖାଦ୍ୟ ସଞ୍ଚିତ ହୋଇ ରହୁଥିଲା । ସକାଳକୁ କେବଳ ସେଠାରେ ଜମାଟ ବାନ୍ଧିଥିବା ରକ୍ତ ପଡ଼ିରହିଥିଲା । କୁଆଡ଼େ ଅନ୍ତର୍ହିତ ହୋଇଯାଇଥିଲା ମୂର୍ଚ୍ଛାଗ୍ରସ୍ତ ।

ପରେ ବୁଢ଼ୀ-ମା ଖବର ବୁଝିବା ପାଇଁ ତାର ଗାଁକୁ ଲୋକ ପଠାଇଲେ । କିନ୍ତୁ ସେଠାକୁ ମଧ୍ୟ ସେ ଯାଇନି ବୋଲି ତାର ବାପ-ମା କହିଲେ । ଖମାରରୁ ରକ୍ତଦାଗ ସବୁ ଚାକରମାନେ ଛୁରିରେ କୋରି କୋରି ଛଡ଼ାଇ ଦେଲେ ଓ ଗୋବର ପାଣିରେ ଧୋଇଦେଲେ; ଯେପରିକି ରାତିରେ କୌଣସି ବନ୍ୟଜନ୍ତୁ ସେଠାକୁ ଆସିଥିଲା ଓ କାହାକୁ ମାରି ଖାଇଥିଲା ସେଠାରେ । ଆମର ଧନବନ୍ତ ବନ୍ଧୁ ସେଇଦିନଠାରୁ ଚାକରାଣୀ-ଯୁବତୀଟି ସହିତ ସାକ୍ଷାତ ବନ୍ଦ କଲେ ଓ ତାଙ୍କର କୌଣସି ଜଣେ ସମ୍ପର୍କୀୟା ଚନ୍ଦ୍ରବଦନାକୁ ଖୁବ୍ ଶୀଘ୍ର ବାହା ହୋଇପଡ଼ିଲେ । ଚନ୍ଦ୍ରବଦନାଟି ପ୍ରତି ରାତିରେ ତାଙ୍କ ସହିତ କଳି କରୁଥିଲା ଓ କାନ୍ଦୁଥିଲା । ଦିନେ ଦିନେ କଳି ଓ କାନ୍ଦଣା ଏପରି ଉତ୍କଟ ହେଉଥିଲା ଯେ ଆତ୍ମୀୟମାନେ ତାଙ୍କ ଶୋଇବା-ଘରର କବାଟ ଠକ୍ ଠକ କରି ତାଙ୍କୁ ଡାକୁଥିଲେ ଓ ମୀମାଂସା କରିବାକୁ ଯତ୍ନ କରୁଥିଲେ ।

ଶ୍ରେଷ୍ଠ ବା ମୁଖ୍ୟ ନାୟକର ପରିବାରର ନାରୀମାନେ ଆଦୌ ଯୌନ-ଚର୍ଚ୍ଚା ନ କରିବା ସ୍ୱାସ୍ଥ୍ୟଜନକ ନୁହେଁ । ସେଇଟି ତାଙ୍କର ସର୍ବ-ପ୍ରଧାନ ଆତଙ୍କ । ହିଂସା ଓ ରକ୍ତପାତ ସହିତ ସେ ଯୌନ-କୁ ସଂପୃକ୍ତ କରିଥିଲେ । ସୀତାଙ୍କ ପ୍ରତି ପ୍ରବଳ ଆସକ୍ତିରୁ ରାବଣ କିପରି ମଲା ଓ ଦ୍ରୌପଦୀକୁ ଭୋଗ କରିବାର ଲାଳସା ଯୋଗୁ କୀଚକ କିପରି ଦ୍ରୌପଦୀର ପ୍ରକୃତ ସ୍ୱାମୀ ଭୀମ ଦ୍ୱାରା ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା— ଏଇସବୁ କାହାଣୀ ସେମାନଙ୍କୁ କୁହାହୋଇ ଆସିଥିଲା । ପ୍ରଥା ଦୃଷ୍ଟିରୁ ଶୈଶବ ଯାଉ ନ ଯାଉଣୁ ନାୟକର କୁମାରୀମାନଙ୍କ ବିବାହ ସମ୍ପନ୍ନ ହୋଇଯାଉଥିଲା । ପକ୍ଷାନ୍ତରେ ମଧୁଶଯ୍ୟା ରାତିରେ ଏଇ କୋମଳାଙ୍ଗୀ ନବ-ବଧୂମାନଙ୍କ ପ୍ରତି ସେମାନଙ୍କର ବେଶ୍ ବୟସ୍କ ସ୍ୱାମୀମାନେ ଯେପରି କଠୋର ଓ ତରବରିଆ ଭାବରେ ଯୌନ-ନିବେଦନ କରୁଥିଲେ, ସେଥିରେ ନବୀନାମାନେ ତ୍ରସ୍ତ ଓ ଚକିତ ହୋଇଯାଉଥିଲେ ।

ଭାରତୀୟ ନାୟିକାଙ୍କ ମଧ୍ୟରେ କେବଳ ରାଧାଙ୍କ ଯୌନ-ଜୀବନ ଅପେକ୍ଷାକୃତ ଅବକ୍ଷୁବ୍ଧ ଓ ଅନାହତ ଥିଲା । ଯେ ଯମୁନା କୂଳରେ ତାଙ୍କର

ନୀଳବର୍ଣ୍ଣର ପ୍ରେମିକଙ୍କ ପାଇଁ ପ୍ରତୀକ୍ଷା କରୁଥିଲେ । କିନ୍ତୁ ସେ ଥିଲେ ଅନ୍ୟ ଜଣଙ୍କର ପତ୍ନୀ; ସେଥିପାଇଁ ପରକୀୟା ନାୟିକା । ଏଭ୍ର ଅବୈଧ ଯୌନ-ଜୀବନ କଥା କିଏ କହିବ; ସେଇ ଜଗତ ଟିରେ ହିଂସ୍ରତା ଓ ବର୍ବରତା ବ୍ୟତୀତ ଅନ୍ୟ କିଛି ନ ଥିଲା ।

ଅନ୍ୟ ଯେଉଁ ଗୃହକର୍ତ୍ତ୍ରୀଟି ଆମ ନଳପତ ଭବନକୁ ଆସିଥିଲା ତାର ନାମ କୁନ୍ହକୁଟ୍ଟି । ସେ ଥିଲା ନିମ୍ନଜ । କନୋଲି କେନାଲର ଆରପଟର ଏକ ଗାଁରୁ ସେ ଆସିଥିଲା । ଆସିଲାବେଳେ ତା'ସାଙ୍ଗରେ କନା-ପଟାର ବୁଜୁଲିଟିଏ ଆଣିଥିଲା ସେ । ସେ ଥିଲା ବାଙ୍ଗି । ତାର କଲାଙ୍ଗରେ ଚମତ୍କାର ନୀଳ ଶିରାସବୁ ଫୁଟି ଦିଶୁଥିଲା । ବୁଢ଼ୀ-ମା ତା'ଉପରେ ବେଶ୍ ଖୁସି ଥିଲେ । ସେ ଗିଦଗିଣା ସ୍ୱରରେ କେବଳ ଗୋଟିକିଆ ଶବ୍ଦ ମାତ୍ର କହୁଥିଲା, ବାକ୍ୟ କହୁ ନ ଥିଲା । ଘୁଷୁରି ଶିଶୁର ଶବ୍ଦପରି ଶୁଣାଯାଉଥିଲା ତା' କଥା । ସେ ପ୍ରଚୁର ଖାଇପାରୁଥିଲା କିନ୍ତୁ କେତେକ ସମୟରେ ସେ ଗୁହାଳ ଉଡ଼ାଳକୁ ଯାଇ ଖାଦ୍ୟତକ ବାନ୍ତି କରୁଥିଲା ।

ମୁଁ ଦିନେ ତା' ପଛେ ପଛେ ଗଲି ଓ ତା'ପଛରେ ଠିଆ ହେଲି । ଭଲ ଭଲ ହୋଇ ସେ ବାନ୍ତି କଲା । ଝାଳ ବୋହି ପଡ଼ୁଥିଲା ତା' ମୁଣ୍ଡରେ । ପିନ୍ଧା କାନରେ ସେ ଝାଳ ଓ ପାଟିର କଣ ପୋଛି ଦେଲା । ମୁଁ ପଚାରିଲି—"ତୋର କଣ୍ ହେଲା କିଲୋ ?" ସେ କହିଲା—"ନା, କିଛି ନୁହେଁ । ବେଶୀଗୁଡ଼େ କଞ୍ଚା ତେନ୍ତୁଳି ଖାଇଦେଇଥିଲି ବୋଲି ଦେହ ଖରାପ ହେଲା । କଞ୍ଚା ତେନ୍ତୁଳି ଯେତେବେଳେ ଖାଏ ସେତେବେଳେ ମୋର ଏମିତି ହୁଏ । ହଁ, ବୁଢ଼ୀ-ମାଙ୍କୁ କହିବନି ।" ମୁଁ କହିଲି—"ତା'ହେଲେ ତୁ କଞ୍ଚା ତେନ୍ତୁଳି ଖାଉଚୁ କାହିଁକି ।" ସେ କହିଲା—"ମୁଁ ତ ତୁମ ଭଳି ପାଠଶାଠ ପଢ଼ିନି କି ଇଂରେଜୀ ଜାଣେନି । ମୁଁ ତ ନିହାତି ମୂର୍ଖ ଓ ଗରିବ ଘରର ଝିଅ । ବୋକା ବନିବା ଛଡ଼ା ମୋ ଦେଇ ଆଉ କଣ୍ ହୋଇପାରନ୍ତା ଯେ ।"

ମୁଁ ତାକୁ ପ୍ରକୃତରେ ନିହାତି ଓଲୀଟେ ବୋଲି ଭାବିଥିଲି । ମାସେ ଦିମାସ ପରେ ଦିନେ ସକାଳେ ପାଟିଗୋଳ ହେବାରୁ ମୋ ନିଦ ଭାଙ୍ଗିଗଲା । ଉଠିବସିଲି । ତଳ ମହଲାରୁ ଶବ୍ଦ ଆସୁଥିଲା । ଶୁଣିଲି ବୁଢ଼ୀ-ମାଙ୍କ ପାଟି । ସେ କୁନ୍ହକୁଟ୍ଟିକୁ କହୁଥିଲେ—"ତୋ' ଲୁଗାପଟା ବଦଳେଇ ଏଇ ମୁହୂର୍ତ୍ତରେ ଘରୁ ବାହାରି ଯା ।" କୁନ୍ହକୁଟ୍ଟି ବିଚରା ଗୋଟିଏ ରକ୍ତ ସରୋବର ଭିତରେ ଠିଆ ହୋଇଥିଲା । ମୁଁ ଗୃହଆଡ଼କୁ ଗୁହିଁଲି । କାନ୍ଥରେ ବି ରକ୍ତର ଛିଟାସବୁ

ପଡ଼ୁଥାଏ । ଘଟଣାର ବନ୍ଦୁ-ବସର୍ଗ ବୁଝି ନ ପାରି ମୁଁ ବୁଢ଼ୀ-ମାଙ୍କୁ ପଚାରିଲି କଣ୍ ହେଇଚ । ଉତ୍ତର ନ ଦେଇ ବୁଢ଼ୀ-ମା ମୋତେ ଠେଲିଦେଲେ କେବଳ ।

ଅଧଘଣ୍ଟାଏ ଭିତରେ କୁନ୍ଦୁକୁନ୍ଦି ଆମଘର ଛାଡ଼ିବା ପାଇଁ ପ୍ରସ୍ତୁତ ହୋଇଗଲି । ଯେଉଁ ଗୃକରଟି ତାକୁ ସାଙ୍ଗରେ ନେଇ ଡଙ୍ଗା ପାରିକରି ଆସିବା କଥା ସେ ଫାଟକ ପାଖରେ ଅପେକ୍ଷା କରୁଥିଲି ଓ ଅଶ୍ଳୀଳ ଗାଳିସବୁ ବରବର ହେଉଥିଲା । ମୁଁ ଜାଣିପାରିଲି ଯେ କୁନ୍ଦୁକୁନ୍ଦିର ପକ୍ଷରେ କେହିନାହିଁ । କିନ୍ତୁ ତାର ଅପରାଧଟି ବାସ୍ତବରେ କଣ୍ ତା' ମୁଁ ଜାଣି ନ ଥିଲି । ମୋତେ ତ ବିଷୟଟି ଏକ ଅଗୃନକ ଦୁର୍ଘଟଣା ଭଳି ଲାଗୁଥିଲା । କେଉଁଠୁ ସେ ଖସିପଡ଼ିଲା କି ?

ପରେ ପୁଷ୍ପାଙ୍କଠାରୁ ଶୁଣିଲି ଯେ ସେଇଟି ଭଲ ସ୍ତ୍ରୀ ଲୋକ ନଥିଲା । ସେ ନିଜେ ଭ୍ରୂଣ-ହତ୍ୟା କରିଛି । କଥାଟି ମୋ ପକ୍ଷରେ ନୂଆ ଓ ଅବୋଧ୍ୟ ଥିଲା । ପୁଷ୍ପାଙ୍କ କହିଲେ--'ତୁମ ବୁଢ଼ୀମା—ଏତେ ଭଲ ଯେ କାହାର ରୋଗ ବିଷୟରେ ସନ୍ଦେହ କରିପାରନ୍ତି ନାହିଁ । ମଇଳା ଲୁଗା-କବଟା ଧରି ଏଇ ସ୍ତ୍ରୀ-ଲୋକଟି ଆସିବା ବେଳରୁ ମୁଁ ସନ୍ଦେହ କରିଥିଲି ଯେ ସେ ନିଷ୍ଟୟ କିଛି କରିଛି । କିନ୍ତୁ ମୋ କଥା ଶୁଣୁଚି କିଏ ?'

## ଆଠ

## ନିଃସଙ୍ଗ ଦେବୀ

ଉତ୍ତର ଦିଗକୁ ଥିବା ଧାନ କ୍ଷେତର ଆର ପଟରେ ଥିଲା ତେଲିଙ୍ଗାବାସ୍ତି ଲିକାର୍‌ର ଘର । ତାର ଘଣାଟିଏ ଥିଲା । ଦୁଇଟି ଧଳା ଗାଈ ଓ ତା' ନିଜଘରର ଦୁଇଜଣ ସ୍ତ୍ରୀଲୋକ ମିଶି ଘଣା ଚଳାଉଥିଲେ । ଶୁଣିଥିଲି ନଡ଼ିଆ ପେଷି ସେ ତେଲ ବାହାର କରୁଥିଲା । ଖାଲି ନଡ଼ିଆ ତେଲ ନୁହେଁ ରାଶି ତେଲ ବି । ସେମାନେ ଘଣା ପେଲୁଥିଲା ବେଳେ ଗୋଟିଏ ଗଛର ଗଣ୍ଡିକୁ ଆଉଜି ଲିକାର୍ ବସୁଥିଲା ଓ ସେମାନଙ୍କୁ ଅଶାଳୀନ ଭଷାରେ ଗାଳି ଦେଉଥିଲା । ତାର ଗାଳିରେ ସ୍ତ୍ରୀ-ଲୋକମାନେ ଖୁସି ହେଉଥିଲେ । କାରଣ ସେ ଥିଲା ଅନ୍ନଦାତା ଓ ସେମାନଙ୍କୁ ନାନା ଦୃଷ୍ଟିରୁ ସୁବିଧାରେ ରଖିଥିଲା । ଅସଭ୍ୟ-ଗାଳି ଶୁଣିବା ଥିଲା ସେମାନଙ୍କର ସ୍ଵଭାବଗତ ।

ଲିଜାର୍ ପ୍ରତ୍ୟେକଙ୍କୁ ସୁନାହାର ଓ କାନ ପାଇଁ ବେଶ୍ ଓଜନିଆ ଗହଣା ଗଢ଼ାଇ ଦେଇଥିଲି । ସେ ପ୍ରଚୁର ମଦ୍ୟପାନ କରୁଥିଲି; କିନ୍ତୁ ତାର ତେଲ ଥିଲି ଖାଣ୍ଟି । ତା' ଦ୍ୱାରା ପ୍ରସ୍ତୁତ ଡାଲ ତେଲ ଥିଲି ଫେନିଲ ଓ ସୁବାସିତ । ଦେହରେ ଲଗାଇବା ପାଇଁ ବଡ଼ଶାଳୀମାନେ ତାହା କିଣି ନେଉଥିଲେ । ହଳଦୀ ଓ ଚନ୍ଦନ ଗୁଣ୍ଡରେ ଡାଲ ତେଲ ମିଶାଇ ସେମାନେ ଲଗାନ୍ତି, ଯାହା ସେମାନଙ୍କ ଚର୍ମକୁ ସ୍ୱର୍ଣ୍ଣାଭ ଓ କୋମଳ ରଖେ ଏବଂ କୁଞ୍ଚନ-ହୀନ ହେବାରେ ସାହାଯ୍ୟ କରେ । ଲିଜାର୍‌ର ପୁଅ ମାଟ୍ରିକ୍ୟୁଲେଶନ୍ ପାସ୍ କରିଥିଲେ ମଧ୍ୟ ଦୁଆର ଦୁଆର ବୁଲି ତେଲ ବିକୁଥିଲି । କିନ୍ତୁ ସେ ଶିକ୍ଷା-ସଚେତ ଥିବାରୁ କାମଟିକୁ ବିଶେଷ ଗୁରୁତ୍ୱର ସହିତ ସମାପନ କରିପାରୁ ନ ଥିଲି । ସ୍ତ୍ରୀ-ଲୋକମାନେ ତାର ଅସୁବିଧାଟି ବୁଝିପାରୁଥିଲେ, ଏଣୁ ଦାମ୍ ଘେନି ଖୁବ୍ ବେଶୀ ଟଣା ଓଟରା ନ କରି କିଣୁଥିଲେ । ଯଦିଓ କିଣିବା ବେଳେ ଦାମ୍ କମେଇବା ପାଇଁ କ୍ରମାଗତ ବାର୍‌ଗେନ୍ କରିବା ଥିଲି ସେମାନଙ୍କର ଜନ୍ମଗତ ସ୍ୱଭାବ । କାଚରା, ମସିଣା ବା ସପ-ବାଲି ଅଥବା ପରିବା-ବାଲି ପ୍ରଭୃତି ବୁଲି-ବିକାଳୀମାନେ ଆସିଲେ ସେମାନେ ଏଇପରି ତର୍କ କରି ଆନନ୍ଦ ପାଉଥିଲେ ।

ଲିଜାର୍ ଘରେ ପଛ ପଟକୁ ରହୁଥିଲେ ପରିହାମାନେ । ସିଇରା—କୁଲି-ପାଛୁଆ ବୁଣିବା ଥିଲି ସେମାନଙ୍କର କୁଳ ବେଉସା । ତା'ଛଡ଼ା ଗୁଣି-ଗାରେଡ଼ି ସେମାନେ ଜାଣିଥିଲେ । ସେମାନଙ୍କ ସ୍ତ୍ରୀ ଲୋକମାନେ ଲାଲ୍-ଅକ୍ଷ ବିଶିଷ୍ଟ ମାଳା ପିନ୍ଧୁଥିଲେ । ସେମାନଙ୍କର ବକ୍ଷ ଦେଶ ମୁକ୍ତ ରହୁଥିଲା । ଦରିଦ୍ର ଶ୍ରେଣୀର ଲୋକମାନେ ସେମାନଙ୍କ ନିକଟକୁ ପ୍ରେମ-ଔଷଧ ପାଇଁ ଯାଉଥିଲେ । ଗୁଣି ସାହାଯ୍ୟରେ ଭୟ ପ୍ରଦର୍ଶନ କରି ଶତ୍ରୁନାଶ କରିବା ମଧ୍ୟ ସେମାନଙ୍କର ଅନ୍ୟତମ କାର୍ଯ୍ୟ ଥିଲା ଦରିଦ୍ରମାନଙ୍କ ପାଇଁ । ସେଥିପାଇଁ ପରିହାମାନଙ୍କୁ ଅଜାତ କରି ଦୂରରେ ରଖାଯାଇଥିଲା । କିନ୍ତୁ ମକର ମାସରେ (ଜାନୁୟାରି—ଫେବ୍ରୁୟାରି) ପରିହାମାନଙ୍କର ଗୁରୁତ୍ୱ ବଢ଼ି ଯାଉଥିଲା । କାରଣ ସେଇ ମାସରେ କାଳୀଙ୍କର ପୂଜା ପଡ଼େ ଏବଂ ପରିହାମାନେ ଆଦିମ ଅଧିବାସୀ ହୋଇଥିବାରୁ କାଳୀଙ୍କର ପ୍ରିୟଜନ ବୋଲି ଖ୍ୟାତ ରହିଥିଲା ।

ମକର ସମୟରେ ସେମାନେ କାଳୀଙ୍କ ପରି ବେଶ ହୋଇ ଆମମାନଙ୍କ ଘରକୁ ନାଚିବାକୁ ଆସନ୍ତି । ସେମାନେ ପିତଳର ଆଖିଝଲସା ସ୍ତନାଭରଣ, ଆଣ୍ଠୁ-ବନ୍ଧନୀ ଓ କଟୀ-ବନ୍ଧା ବସ୍ତ୍ର ରୂପେ ସାଇଜ୍ କରାଯାଇଥିବା ତାଳପତ୍ର ଖଣ୍ଡ ସବୁ ପରିଧାନ କରିଥାନ୍ତି । ତାଙ୍କ ସାଙ୍ଗରେ ଆସନ୍ତି ଢୋଲିଆ ଓ ମହୁରିଆ । ମହୁରୀର ବିଳାପ ଆମପକ୍ଷରେ ଥିଲା ବ୍ୟଞ୍ଜନାତ୍ମକ ।

କାଳୀ ନାଚଲେ ଆମ ହୃଦୟକୁ କଷ୍ଟ ହେଉଥିଲା । ଘଣ୍ଟଣା ଗ୍ରନ୍ଥି ହେଉଥିଲା । କାଳୀ ଏ ପୃଥିବୀ ଠାରୁ ଅଧିକ ପୁରାତନ ଓ ଅନ୍ୟମାନଙ୍କ ମଙ୍ଗଳ ପାଇଁ ରାକ୍ଷସଙ୍କୁ ନିଧନ କରିଥିବାରୁ ସେ ବର୍ତ୍ତମାନ ଅଧିକ ନିଃସଙ୍ଗ, ଏ ଧାରଣା ଥିଲା ଆମର ଅନ୍ତର୍ଗତ । ଆମର ଆଦିମ ପ୍ରବୃତ୍ତି ସବୁ ଜାଗି ଉଠୁଥିଲା ସେତେବେଳେ । ଆମର ରକ୍ତରେ ଉଚ୍ଚାରିତ ହୋଇ ଉଠୁଥିଲା ସେଇ ମନ୍ତ୍ରଧ୍ୱନି । —ଓଂ ଇଂ, ହ୍ରୀଂ, କ୍ଲୀଂ ମହାଦୁର୍ଗେ ନବାକ୍ଷରୀ ନବ ଦୁର୍ଗେ ନବୈମିକେ ନବ-ଚଣ୍ଡୀ ମହାମାୟେ ମହାଯୋଗୀନ୍ଦ୍ରେ—ଆଲୋକ ଉତ୍ସାରିଣୀ ଅନ୍ଧକାର—ଦାନବ ସମ୍ଭବା ରାତ୍ରୀ,— ପ୍ରାଙ୍କର କଣ୍ଠ ବିଦାରଣ କରିଥିବା ନମ୍ରତା ଓ ବଳୀ-ବେଦୀରେ ଉଚ୍ଛୁଳି ପଡ଼ିଥିବା ରକ୍ତର ଗୋଲାପ ସବୁ,— ରୂପଂ ଦେହି ଶ୍ରୀୟଂ ଦେହି ଯଶୋ ଦେହି ଦ୍ୱିଶୋ ଜାହି ।

ମକରମାସରେ ସମସ୍ତ ଭଗବତୀ ପୀଠ ଜୀବନ୍ତ ହୋଇ ଉଠେ । ସହସ୍ର ଆଲୋକମାଳା ବିଭୂଷିତ ହୋଇ ଉଜ୍ଜ୍ୱଳ ହୋଇଥାଏ ପୀଠଗୁଡ଼ିକ । ହାତରେ ପୂଜା ଥାଳ ଧରି ଧାଡ଼ି ଧାଡ଼ି ତରୁଣୀମାନେ ଯାଆନ୍ତି । ଥାଳାରେ ରହିଥାଏ ଦୀପ, ନଡ଼ିଆ ଓ ଅନ୍ୟସବୁ ପୂଜା ଉପକରଣ । ଢୋଲ ବାଜିଲେ ସେମାନେ ରହି ପାରନ୍ତି ନି । ବାଦ୍ୟର ତାଳେ ତାଳେ ଅନ୍ଧାର ଘେରା ସନ୍ଧ୍ୟାରେ ତରୁଣୀମାନେ ଯାଆନ୍ତି ଦର୍ଶନ ପାଇଁ । ଦୀପର ଶିଖା ପରି ତାଙ୍କର ଆଖି ସବୁ ଉଜ୍ଜ୍ୱଳ ହୋଇ-ଉଠେ । ବାଦ୍ୟ ବନ୍ଦ ହେବା ମାତ୍ରେ ପୂଜକ ଆରମ୍ଭ କରନ୍ତି ତାଙ୍କର ନୃତ୍ୟ । ନୃତ୍ୟକାରୀ ଏ ଦିଗ ସେ ଦିଗ ଦୌଡ଼େ । ଭିଡ଼ ଭିତରେ ପଶିଯାଏ । ହାତରେ ତାର ଖର୍ପର । ତା' ପୁଣି ଗୃଳନା କରୁଥାଏ ସେ । କେତେବେଳେ ସେ କୁଦା ମାରେ, ପୁଣି କେତେବେଳେ ରଡ଼ି କରେ । ତାର ଶବ୍ଦ ହୁଏ ବୀଭତ୍ସ ଦେବୀର ହୁଙ୍କାର । କ୍ରମଶଃ ଉନ୍ମାଦନାରେ ସେ ନିଜର ବେକକୁ ଖର୍ପରରେ ଆଘାତ କରେ । ତା'ପରେ ଉତ୍ସବର ଭାରପ୍ରାପ୍ତ ମୁଖ୍ୟମାନେ ତାକୁ ଶାନ୍ତ ବଚନ କୁହନ୍ତି । ତାର ନିଜ ପୁଅ ଆସି ତା ହାତରୁ ଖର୍ପରଟି ନେଇଯାଏ ଏବଂ ମୁଣ୍ଡର କ୍ଷତ ସ୍ଥାନରେ ହଳଦୀ ଲଗାଇ ଦିଏ । ସେଥିରେ କାଳୀ ହୁଏ ଶାନ୍ତ ସେଇ ସମୟ ପାଇଁ । ଦର୍ଶକ-ମାନେ ବି ଦୀର୍ଘନିଃଶ୍ୱାସ ପକାଇ ଫେରିଯାଆନ୍ତି ନିଜ ନିଜ ଘରକୁ ।

କାଳୀ-ପୂଜକ (ଆମର କାଳସୀ ଭଳି) ଧନୀ ଲୋକଙ୍କ ଘରକୁ ମଧ୍ୟ ବୁଲିଯାଏ, ବିଶେଷ ବିଶେଷ ତିଥି ମାନଙ୍କରେ । ତା ସହିତ ଢୋଲିଆ ଓ ଭାରପ୍ରାପ୍ତ ଲୋକଙ୍କ ମଧ୍ୟରୁ କେହି କେହି ମଧ୍ୟ ଯାଇଥାନ୍ତି । ବିଶିଷ୍ଟମାନଙ୍କ ସମ୍ମୁଖରେ ସେ ନୃତ୍ୟ କରେ । ଲୋକମାନେ ଯଥାଯୋଗ୍ୟ ଦିଅନ୍ତି । ସେ ଅକ୍ଷତ ପକାଏ ଓ କଲ୍ୟାଣ

କରେ । କମ୍ପିତ ସ୍ୱରରେ ମନ୍ତ୍ର ଉଚ୍ଚାରଣ କଲାଭଳି ସେ ପ୍ରକାଶ କରେ—"ମୁଁ ତୁମକୁ ଓ ତୁମର ବଂଶଧରମାନଙ୍କୁ ଶତ୍ରୁ ମୁଖରୁ ରକ୍ଷା କରିବି. ରୋଗ ମୁଖରୁ ରକ୍ଷା କରିବି । ଏତିକି କଣ ଯଥେଷ୍ଟ ନୁହେଁ ?"

ସବୁଠାରୁ ବୟସ୍କା ସ୍ତ୍ରୀ-ଲୋକଟିଏ କହି ଉଠେ —"ହଁ ଯଥେଷ୍ଟ । ମୁଁ କୃତଜ୍ଞ, ମୁଁ କୃତଜ୍ଞ ରହିବି ।"

ଶୈଶବକାଳରେ ମୁଁ ଯେତେବେଳେ ନିଲପତ ଭବନରେ ବଢ଼ୁଥିଲି — ଏଇ କାଳୀ—ସାଧକଙ୍କୁ ଆମ ଘରକୁ ସ୍ୱାଗତ କରିବାର ଭାର ମୋ ଉପରେ ପଡ଼ୁଥିଲା । ମନ୍ଦିରର ଦୀପ ଜାଳିବା ଓ ବିଭିନ୍ନ ଦିଗ-ଦେବତାଙ୍କ ମାନ୍ୟାର୍ଥେ କେଉଁଠି ସବୁ ତେଲବଳିତା ଜଳିବା କଥା ତାହା ମୁଁ ସବୁ ଜାଣିଗଲି । ଘରର ଗୃହପଟ୍ଟରେ ଭିନ୍ନ ଭିନ୍ନ ସ୍ଥାନରେ ସେଗୁଡ଼ିକ ଜଳେଇବାକୁ ପଡ଼ୁଥିଲା । ପ୍ରାଚୀନ ପୁରାଣଗୁଡ଼ିକର ଧାରଣାରେ ପୃଥିବୀ ଚକ୍ରାକାର ଥିଲା । ଉତ୍ତର ଦିଗର ଅଧିପତି ଥିଲେ ବ୍ରହ୍ମା, ଦକ୍ଷିଣର ଅନନ୍ତ, ପୂର୍ବଦିଗର ଇନ୍ଦ୍ର ଏବଂ ପଶ୍ଚିମ ଦିଗର ଅଧିପତି ଥିଲେ ବରୁଣ । ପୁନଶ୍ଚ ଉତ୍ତର-ପୂର୍ବକୋଣର ଅଧିପତି ଭାବରେ, ଶିବଙ୍କୁ, ଉତ୍ତର-ପଶ୍ଚିମକୋଣର ଅଧିପତି ରୂପେ ବାୟୁଙ୍କୁ ଗ୍ରହଣ କରାଯାଇଥିଲା । ଏଇ ଦୁଇକୋଣର ମଧ୍ୟବର୍ତ୍ତୀ ଅଞ୍ଚଳ ଥିଲା କୁବେରଙ୍କ ଶାସନାଧୀନ । ସେଇପରି ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମକୋଣର ଅଧିପତି ରୂପେ ଯଥାକ୍ରମେ ଅଗ୍ନି ଓ ରାକ୍ଷସୀଙ୍କୁ ଅଧିଷ୍ଠିତ କରାଯାଇଥିଲା । ଏଇ ଦୁଇକୋଣର ମଧ୍ୟବର୍ତ୍ତୀ କୌଣସି ସ୍ଥାନରେ ଯମଙ୍କର ଅନ୍ଧକାରାଚ୍ଛନ୍ନ ରାଜ୍ୟ କିନ୍ତୁ ତାହା ଅନନ୍ତଙ୍କ ଊର୍ଦ୍ଧ୍ୱ ସ୍ଥଳ ।

ଅପେକ୍ଷାକୃତ ଶାନ୍ତ ମାସଗୁଡ଼ିକରେ, ବିଶେଷତଃ ବର୍ଷାକାଳରେ— ସାଙ୍ଗରେ ଢୋଲିଆ ଓ ଝାଞ୍ଜବାଲା ଘେନି ଓଟ୍ଟାନ୍‌ଥୁଲାଲ୍ ନୃତ୍ୟକାରୀ ଆସୁଥିଲା । ସାଙ୍ଗରେ ସେ ପୁରୁଣା କାଇଦାର ବେଶ-ପୋଷାକ ଓ କଜଳ, ପାଉଡର୍ ପ୍ରଭୃତି ଅନ୍ୟାନ୍ୟ ପାରମ୍ପରିକ ସରଞ୍ଜାମ ସହିତ ନକଲି ମୁକୁଟ ଓ ଗହଣା ମଧ୍ୟ ଆଣୁଥିଲା । ବର୍ଷର ବିଭିନ୍ନ ସମୟରେ ଓଟ୍ଟାନ୍‌ଥୁଲାଲ୍ ନୃତ୍ୟ ଆମର ନିଲାପତ୍ତି ଘରେ ଅନୁଷ୍ଠିତ ହେଉଥିଲା । ଅପରାହ୍ଣରେ ନୃତ୍ୟ-କାରୀ ବେଶ ହେଉଥିଲାବେଳେ ମୁଁ ତାର ଖୁବ୍ ନିକଟରେ ବସୁଥିଲି । ମୁହଁରେ ରଙ୍ଗବୋଳି ସେ ଅଲୌକିକ ଦିଶୁଥିଲା ।

ବୟସ୍କମାନଙ୍କ ଖରାବେଳ-ନିଦ ଭାଙ୍ଗିବାପରେ ଓ ଚା-ଫା ଖିଆ ସରିବାପରେ ଆରମ୍ଭ ହେଉଥିଲା ନାଚ । ବାଜା ବାଜିବା ମାତ୍ରେ ସ୍କୁଲ

ପିଲାମାନେ ଓ ଦରିଦ୍ରଶ୍ରେଣୀର ଲୋକମାନେ ଛୁଟି ଆସୁଥିଲେ । ଜନ ସମାବେଶରେ ଅମର ଦାଣ୍ଡ ପୂରି ଯାଉଥିଲା । ଆତ୍ମୀୟସ୍ୱଜନ ଓ ବନ୍ଧୁବାନ୍ଧବ-ମାନେ ମସିଣା ବା ସପ ଉପରେ ବସୁଥିଲେ ଓ ପାନ ଚୋବାଉଥିଲେ । ନୃତ୍ୟ ସାଧାରଣତଃ ମହାଭାରତର ଉପାଖ୍ୟାନଗୁଡ଼ିକ ଉପରେ ଆଧାରିତ ଥିଲା । ମୋତେ ସବୁଠାରୁ ଭଲ ଲାଗୁଥିଲା କଲ୍ୟାଣ ସୌଗନ୍ଧିକମ୍ (ସୁଗନ୍ଧିକା ହରଣ) । ଦ୍ରୌପଦୀଙ୍କ ଇପ୍‌ସିତ ସୁଗନ୍ଧିକା ଫୁଲ ଆଣିବାପାଇଁ ଭୀମ କିପରି ଅସୁରର ଉଦ୍ୟାନକୁ ଖୋଜି ଖୋଜି ଗଲା ଓ କିପରି ଛାରଖାର କଲା—ସେଥିରେ ତାହା ବର୍ଣ୍ଣିତ ହୋଇଥିଲା । ତାର ପ୍ରଭାବ ମୋର ପିଲା-ମନ ଉପରେ ଥିଲା ଅସୀମ । ମୁଁ ମଧ୍ୟ ଦ୍ରୌପଦୀ ହେବାର ଦିବାସ୍ୱପ୍ନ ଦେଖିଲି । ଅସୁରକୁ ପରାସ୍ତ କରି ମୋତେ ଦୁର୍ଲଭ ପୁଷ୍ପ ଆଣିଦେବା ଲାଗି ମୁଁ ମଧ୍ୟ ମୋର ସାହସୀ ସାଥିକୁ ଆଦେଶ ଦେବାକୁ କାମନା କଲି ନିଭୃତରେ ।

## ନଅ

## ସେ ଜଣେ ନାରୀ-ଭୂତ ସହିତ ସହବାସ କରୁଥିଲେ ବୋଧହୁଏ ସେମାନେ ଖୁସି ହୋଇଥାନ୍ତେ···

ମୋ ସାନ-ବୁଢ଼ାପ୍‌ପାଙ୍କ ମା ମାଧବୀ ଆମ୍ମା ଥିଲେ କାଟୁମଣ୍ଡମ୍‌ର ବୟୋଜ୍ୟେଷ୍ଠତମ ନମ୍ବୁଦ୍ରିପଦ ତଥା ମାଲବାରର ବିଖ୍ୟାତ ଗୁଣ୍ଡିଆଙ୍କର କନ୍ୟା । ତାଙ୍କଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିଲେ ସେ ଅଖଣ୍ଡ ଭାବରେ ନୀରବ ରହିପାରିବାର କ୍ଷମତା । ଉପରକୁ ଟାଣ ଅଥଚ ଭିତରେ ପୂରିଥାଏ ଚୋରାବାଲି ଯେଉଁଥିରେ ସେଇ ବାଟରେ ଭୁଲ୍‌କ୍ରମେ ପଶିଆସିଥିବା ଜୀବନ୍ତ ପ୍ରାଣୀମାନେ ପାଦ ଦେବାମାତ୍ରେ ହିଁ ବୁଡ଼ିଯାଆନ୍ତି ତଳକୁ ତଳକୁ । ମାଲବାରର ମୌସୁମୀ ବାୟୁଦ୍ୱାରା ସୃଷ୍ଟି ହୋଇଥିବା ସେଇସବୁ ପଶୁ ମାଂସ ପ୍ରତ୍ୟାଶୀ ସ୍ଥାନଗୁଡ଼ିକ ସଦୃଶ ଥିଲେ ସେ । ମୁଁ ତାଙ୍କୁ ବଲିଆମ୍ମା (ବା ବଡ଼-ମା) ବୋଲି ଡାକୁଥିଲି । ଅଭ୍ୟାସବଶତଃ ତାଙ୍କୁ ନାନା ପ୍ରଶ୍ନ ପଚାରୁଥିଲି । କ୍ୱଚିତ୍ ସେ ଉତ୍ତର ଦେଉଥିଲେ ।

ତାଙ୍କ ମୁଖମଣ୍ଡଳଟି ବାସ୍ତବିକ କଠିନ ଥିଲା, ଠିକ୍ ଗୋଟିଏ ବନ୍ଦ୍ ହୋଇଥିବା ଲୁହା ସିନ୍ଦୁକ ପରି, ଯାହା ଭିତରେ ତାଙ୍କ ଦୁଃଖମୟ ଜୀବନର ସମସ୍ତ ତିକ୍ତତା ରୁଦ୍ଧ ରହିଥିଲା । କେହି କେହି ତାଙ୍କ ବିଫଳ ଜୀବନ ବିଷୟରେ ମୋତେ କୁଣ୍ଠାର ସହିତ କିଛି କହିଥିଲେ । ରକ୍ଷଣଶୀଳ ପରିବାରରେ ସାନପିଲାଏ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ସାଧାରଣତଃ ପଚାରନ୍ତି ନାହିଁ ଏବଂ ବଡ଼ମାନେ ବି ଉତ୍ତର ଦେବାରେ ଆଗ୍ରହ ଦେଖାନ୍ତି ନାହିଁ । ତଥାପି ବଡ଼-ମାଙ୍କ ବିଷୟରେ ଜାଣିବାକୁ ପାଇଲି କିଛିଟା । ସେ ଜଣେ ସୁନ୍ଦର ପଣ୍ଡିତବ୍ୟକ୍ତିଙ୍କୁ ବିବାହ କରିଥିଲେ ଏବଂ ତାଙ୍କ ଔରସରୁ ପୁତ୍ରଟିଏ ଜାତ ହୋଇଥିଲା ବି । କିନ୍ତୁ ତାଙ୍କର ସ୍ୱାମୀଙ୍କ ସହିତ ତାଙ୍କ ଜେଜାଙ୍କର ପଡ଼ିଲା ନାହିଁ, ଯାହା ଫଳରେ ତାଙ୍କର ସ୍ୱାମୀ ସବୁଦିନ ପାଇଁ ଘରୁ ବିତାଡ଼ିତ ହୋଇଗଲେ ।

ନାୟାର୍‌ମାନେ, ବିଶେଷତଃ ପୁରୁଷମାନେ ରାଗିଲେ ବଡ଼ ନିର୍ଦ୍ଦୟ ହୋଇଯାଉଥିଲେ । ଏଣୁ ତରୁଣ ବ୍ରାହ୍ମଣଟି ଘର ଛାଡ଼ିଲାବେଳେ ନିଜ ସ୍ତ୍ରୀ ଓ ପୁତ୍ରଙ୍କୁ ଥରେ ହେଲେ ବି ଚାହିଁ ନଥିଲେ ।

ଗୋଟିଏ ସପ୍ତାହ ମଧ୍ୟରେ ତାଙ୍କ ନିଜ ବାପାଙ୍କ ଭଣଜା ସହିତ ତରୁଣୀ ସ୍ତ୍ରୀର ପୁନ-ର୍ବିବାହ ସମାପିତ ହୋଇଗଲା । କିନ୍ତୁ ନୂତନ ସ୍ୱାମୀଟି ପ୍ରଥମର ପରି ଭଲ ଏତେ ଭଦ୍ର କିମ୍ବା ଆବେଗ-ପ୍ରବଣ ନଥିଲା । ଅନେକ ଦିନ ଧରି ନାରୀଟି ତାର ପୁରାତନ ସ୍ୱାମୀଙ୍କୁ ଦେଖିବ ବୋଲି ବାଡ଼ କଡ଼ରେ ରାସ୍ତାକୁ ଚାହିଁ ଠିଆହୋଇ ରହୁଥିଲେ । କିନ୍ତୁ ଦିନେ ହେଲେ ବି ଇପ୍‌ସିତ ପୁରୁଷର ଛାୟା ପର୍ଯ୍ୟନ୍ତ ତାଙ୍କ ଆଖିରେ ପଡ଼ି ନଥିଲା । ବାଲ୍ୟାଆତ୍ମା ପୁଅ ସହିତ ଆଦୌ କଥାବାର୍ତ୍ତା କରନ୍ତି ନାହିଁ । ସେ ବଡ଼ ଲଜ୍ଜାଶୀଳା ଥିଲେ । ପୁରୁଷମାନଙ୍କଠାରୁ ଦୂରେଇ ରହୁଥିଲେ । ପୁଅର ଜନ୍ମ-ଦିନ ବ୍ୟତୀତ ଅନ୍ୟ ବେଳେ ସେ ତାକୁ ଖାଦ୍ୟ ବି ବାଢ଼ିଦେଉ ନଥିଲେ । ବରଂ, ପୁଅ ସହିତ ରହିଲେ ସେ ଅସ୍ୱସ୍ତି ଅନୁଭବ କରୁଥିଲେ । ପୁଅର ଚାହାଣି ତାଙ୍କ ହୃଦୟ ଭେଦି ଯାଉଥିଲା ଏବଂ ଜୀବନର ତିକ୍ତ ଓ ଗ୍ଲାନି ଭାବଗୁଡ଼ିକୁ ଅସ୍ଥିର କରିଦେଉଥିଲା । କିନ୍ତୁ ତାଙ୍କର ଚିନ୍ତାର କୌଣସି କାରଣ ନ ଥିଲା । ତାଙ୍କର ପୁଅ ଥିଲେ ଆଲୋକପ୍ରାପ୍ତ, ସହଜଜୀବୀ ଏବଂ ହିତଜ୍ଞୋଧ । ତାଙ୍କ ମନରେ ଗ୍ଲାନି ନ ଥିଲା । ମନର ପଥରେ ବହିଯାଉ ନ ଥିଲା କୌଣସି ଅନ୍ଧାରୁଆ ନିର୍ଦ୍ଦମା ।

ସେ ଇଂରାଜୀ ଓ ସଂସ୍କୃତ ଶିକ୍ଷା ପାଇ ବଢ଼ିବାକୁ ଲାଗିଲେ । ଆଧ୍ୟାତ୍ମିକ କ୍ଷେତ୍ରରେ ବିରାହମିହିର ଓ ପ୍ଳାଟୋଙ୍କର ସନ୍ତାନରେ ସେ ହେଲେ ରୂପାନ୍ତରିତ । ଶ୍ରେଷ୍ଠଚିନ୍ତାବିତ୍‌ମାନଙ୍କୁ ସେ ନିଜର ପିତାମାତା ଜ୍ଞାନ କଲେ । ତାଙ୍କର ମାଆଙ୍କ

ମନ କିଣି ନେଇଥିବା କୌଣସି ସ୍ତ୍ରେଣ ହ୍ରସ ହ୍ରସ ଓ ଗୌର ବର୍ଣ୍ଣର ବିଦ୍ଵାନ ତାଙ୍କର ପିତା ଥିବା ନଥିବା ବିଷୟରେ ସେ ଆଦୌ ଚିନ୍ତିତ ନ ଥିଲେ । ସେ ନିଜ ପାଇଁ ପ୍ରସ୍ତୁତ କଲେ ଗ୍ରନ୍ଥାଗାର କାଲର କାନ୍ଥ ଦେଇ, ଏବଂ ସଂଗ୍ରହ କରିବାକୁ ଲାଗିଲେ ଗ୍ରନ୍ଥ ପରେ ଗ୍ରନ୍ଥ ।

ସେ ସମୟର ମାଲୟାଲି ସାହିତ୍ୟର ଉଦୀୟମାନ ବ୍ୟକ୍ତି ବାଲ୍ଲାଥୋଲ୍‌ଙ୍କ ସହିତ ତାଙ୍କର ପ୍ରତିଷ୍ଠିତ ହେଲା ବନ୍ଧୁତ୍ୱ । ଦୁହେଁ ଏକା ସାଙ୍ଗରେ ଆପଣାର ଅଦ୍ଭିଜ୍ଞ ଦର୍ଶନ ଘେନି ଚର୍ଚ୍ଚା କରିବାକୁ ଲାଗିଲେ । ତାଙ୍କର ବକ୍ତୃତା ଶ୍ରୋତାମାନଙ୍କୁ ଆକୃଷ୍ଟ କଲା ମଧ୍ୟ । ସେ ଥିଓସଫିକାଲ୍ ଆନ୍ଦୋଳନରେ ଯୋଗଦାନ କଲେ । ସ୍ୱର୍ଗୀୟ ସର୍ଦ୍ଦାର କେ· ଏମ୍· ପାନିକର, ଜେମ୍‌ସ୍ କଜିନସ୍ ଏବଂ ମିସ୍ ଲାଇଟ୍-ଫୁଟ୍‌ଙ୍କ ପରି ବିଶିଷ୍ଟ ପ୍ରତିଭାମାନେ ହେଲେ ତାଙ୍କର ବନ୍ଧୁ । ନାଲାପତ ଭବନ ନିବିଡ଼ ବୌଦ୍ଧିକ ଚର୍ଚ୍ଚାରେ ମୁଖରିତ ହୋଇ ଉଠିଲା । ତାଙ୍କର ଚର୍ଚ୍ଚାସ୍ଥଳୀରୁ ଅଲଗା ଭାସି ଉଠୁଥିଲା ବାଲ୍ଲାଥୋଲ୍‌ଙ୍କ କଣ୍ଠ ଖୋଲା ହାସ୍ୟର ·ଲହରୀ । ବାଲ୍ଲାଥୋଲ୍ ନିଜେ କାଲ ପାଲଟି ଯାଇଥିଲେ । ଏଣୁ ସ୍ୱର ସଂଯତ କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ଲକ୍ଷ୍ୟ ପ୍ରତି ଅନ୍ଧ ରହି ପ୍ରଖର ଗତିରେ ବହି ଯାଉଥିବା ନଦୀର ସ୍ରୋତ ଭଳି ଥିଲା ତାଙ୍କର ବାକ୍ୟଗୁଡ଼ିକ । ବେଳେବେଳେ ତାଙ୍କର ଉତ୍ଫୁଲ୍ଲ କଣ୍ଠମାନ ସ୍ୱରରେ ଗଗନ ପବନ କମ୍ପି ଉଠୁଥିଲା ।

'କାନୁମାର୍ ଥୁଲ୍'—ଶୀର୍ଷକ ଶୋକ-କବିତା ରଚନା କରିବା ପରେ ମୋର ସାନ-ବୁଢ଼ାପପା ପ୍ରକୃତରେ ବିଖ୍ୟାତ ହୋଇଗଲେ । ଗ୍ରେଟ୍‌ବ୍ରିଟେନ୍‌ରେ ତାହାର ଅନୁବାଦ ପ୍ରକାଶିତ ହେଲା । ତା ପରେ ସାନ-ବୁଢ଼ାପପା ଓ ବାଲ୍ଲାଥୋଲ୍‌ଙ୍କ ମଧ୍ୟରେ ଦେଖାଦେଲା ଅପ୍ରିୟତା । ତାହାର ଉତ୍ପତ୍ତି ସମ୍ଭବତଃ ଜୀବିକା-ଜନିତ ଈର୍ଷାରୁ ଘଟିଥିଲା । ସାନ-ବୁଢ଼ାପପା ବାଲ୍ଲାଥୋଲ୍‌ଙ୍କ ସୃଷ୍ଟିର ସାରଲ୍ୟ ଓ ଆବେଦନ ପ୍ରତି ଈର୍ଷାପରାୟଣ ଥିଲେ; ଏବଂ ବାଲ୍ଲାଥୋଲ୍ ବୋଧହୁଏ ବନ୍ଧୁର ରଚନାରେ ପରିଦୃଷ୍ଟ ଚିନ୍ତା ଓ ଚେତନାର ଗଭୀର ସ୍ପର୍ଶ ପ୍ରତି ଈର୍ଷାନ୍ୱିତ ଥିଲେ ।

ପୁତ୍ରଟିଏ ପ୍ରସବ କରିବା ପରେ ସାନ ବୁଢ଼ାପପାଙ୍କ ପତ୍ନୀ ଇହଧାମରୁ ବିଦାୟ ନେଇଥିଲେ । ସାନ ବୁଢ଼ାପପା ସେଇ ବିୟୋଗରେ ଶୋକାତୁର ହୋଇ ପଡ଼ିଥିଲେ । ସେଇ ଶୋକ-ସନ୍ତାପ ଓ ବିୟୋଗ କ୍ଳେଶକୁ ଭୁଲିବା ପାଇଁ ତାଙ୍କୁ ପ୍ରାୟ ପନ୍ଦର ବର୍ଷ ଲାଗିଯାଇଥିଲା । ସେ ପରେ ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ । ପ୍ରଥମ ବିବାହ ପରି ତାହା ସେତେ ପ୍ରେମ-ପୂର୍ଣ୍ଣ ହେଲାନାହିଁ ।

ସେ ଜାଣିଥିଲେ ଯେ ଏ ବିବାହ ପ୍ରେମ-ସଂଯୋଗ ନୁହେଁ । ବିୟୋଗ-ଦୁଃଖରେ ଲିଖିତ ତାଙ୍କ ଲେଖାସବୁ ପଢ଼ି ଯେଉଁ ମାଲୟାଲି ପାଠକମାନେ କାନ୍ଦିଥିଲେ, ତାଙ୍କର ନୂତନ ବିବାହ ସେମାନଙ୍କ ପକ୍ଷରେ ପ୍ରୀତିପ୍ରଦ ନଥିଲା । ସେମାନେ ସବୁ ପ୍ରତାରିତ ହେବା ଅନୁଭବ କଲେ । କବିଙ୍କର ପ୍ରତିଟି ରଜନୀ ଯଦି କୌଣସି ପ୍ରେତରମଣୀ ସହିତ ମିଳନରେ ଯାପିତ ହୋଇଥା'ନ୍ତା ସମ୍ଭବତଃ ପାଠକମାନେ ସେଥିରେ ସନ୍ତୁଷ୍ଟ ଓ ଆନନ୍ଦିତ ହୋଇଥା'ନ୍ତେ କି କିଏ ? ଶାରଦା ନାମଧାରିଣୀ ଜଣେ ତରୁଣୀ ଆମ ଘରେ ଦୁଇମାସ ପାଇଁ ଅତିଥି ଭାବରେ ରହିଥିଲେ । ମୋର ମନେଅଛି, ସେ ଥରେ ମୋ ମା'ଙ୍କୁ କହୁଥିଲେ— ଯେ ପୁନର୍ବାର ବିବାହ କାରଣରୁ ସେ କେବେହେଲେ ଏଇ ନଲାପତର ନାରାୟଣ ମେନନ୍‌ଙ୍କୁ କ୍ଷମାଦେଇ ପାରିବେ ନାହିଁ ।

ତାଙ୍କର ମାତୃବିୟୋଗ ବେଳକୁ ସାନ-ବୁଢ଼ାପପା ନିଜେ ମଧୁମେହ ରୋଗରେ ଉତ୍କଟ ଭାବରେ ପୀଡ଼ିତ ଥିଲେ । ତାଙ୍କର ଦେହସାରା ଘା' ହୋଇ ଯାଇଥିଲା, ଲୁଗାପଟା ପିନ୍ଧିବା ସମ୍ଭବ ନ ଥିଲା । କେବଳ ଦେହ ଉପରେ ଖଣ୍ଡିଏ ଗୁଦର ପକେଇଥିଲେ । ସେଇଟି ବି ରକ୍ତରେ ସାଲୁବାଲୁ ହୋଇ ଯାଇଥିଲା । ମଲମ ଔଷଧର ହଳଦିଆ ଦାଗରେ ବିଚିତ୍ର ଦିଶୁଥିଲା । ପ୍ରଥମେ ତାଙ୍କର ମା'ଙ୍କର ପେଟରେ ଯନ୍ତ୍ରଣା ହେଲା ଓ ସେ ଗୋଟିଏ ଆସ୍‌ପିରିନ୍ ଟାବ୍‌ଲେଟ୍ ମାଗିଲେ । ତାଂକର ଏଇ ଆସ୍‌ପିରିନ୍ ବଟିକା ମାଗିବା ଥିଲା ସମସ୍ତଙ୍କ ପକ୍ଷରେ ବିସ୍ମୟଜନକ, କାରଣ ସାରାଜୀବନ କେବେ ବି ସେ ଆଲୋପାଥି ଔଷଧ ସ୍ପର୍ଶକରି ନ ଥିଲେ । ତାଂକର ଏଇ ବଟିକା ମାଗିବା ଶୁଣି ମୋ ବୁଢ଼ୀ-ମା ବଡ଼ ଉତ୍କଣ୍ଠା ପ୍ରକାଶ କରି କହିଲେ—"କିଣ ହେଲ ?" ଡାକ୍ତର ଆସିଲେ । ବାଲଆମ୍ମା ବା ବଡ଼-ମାଙ୍କର ଓଜନ କମିଯାଇଥିଲା ଓ ଦିଶୁଥିଲେ ଅତ୍ୟନ୍ତ ନିସ୍ତେଜ । ରକ୍ତକ୍ଷରଣ ବି ଆରମ୍ଭ ହୋଇ ଯାଇଥିଲା । ଡାକ୍ତର କର୍କଟ ରୋଗ ଆକ୍ରମଣର ସନ୍ଦେହ କଲେ । ମରଫିନ୍ ଦେଇ ସେ ତାଙ୍କୁ ଯନ୍ତ୍ରଣାହୀନ କରିଦେଲେ । ଫଳରେ କ୍ଷରିତ ରକ୍ତ ଆଉ ଦୁର୍ଗନ୍ଧି ହେଲାନି । ତାଂକ ବାଳରେ ଉକୁଣିମାନେ ସବୁ ବୁଲାବୁଲି କରିବା ଆରମ୍ଭ କରିଦେଲେ । ପ୍ରାୟ ପନ୍ଦରଦିନ ମଧ୍ୟରେ ବଡ଼ମା ଶେଷ ନିଃଶ୍ୱାସ ନେଲେ । ଗୁଦର ଢ଼ାଙ୍କି ତାଂକର ମୃତ ଶରୀରକୁ ନିଆଗଲା ବାହାରକୁ । ସବୁଦିନ ପାଇଁ ସେ ଘର ଛାଡ଼ିଲେ, ବାହା ହେଇ ଆସିବା ଦିନଠାରୁ ପାଇଖାନା ଯିବା ବ୍ୟତୀତ ଯେଉଁ ଘରର ବାହାରକୁ ସେ କେବେ ବି ଯାଇ ନଥିଲେ । ପୀଡ଼ିତ ସାନ ବୁଢ଼ାପପା ବିଛଣା ଉପରେ ବସି ସାନ ଛୁଆଙ୍କ ପରି ଭେ-ଭେ କରି କାନ୍ଦିଉଠିଲେ !

ତାଂକର ଏଇ କାନ୍ଦିବା ଥିଲା ଆପଣାର ମା'ଂକ ପ୍ରତି ସ୍ନେହ-ପ୍ରେମର ସର୍ବ-ପ୍ରଥମ ନିଦର୍ଶନ । ଶ୍ମଶାନରେ ଚିତାଗ୍ନି ଅନ୍ୟମାନଙ୍କ ଦ୍ୱାରା ଜଳିଉଠିବା ପରେ ସାନ ବୁଢ଼ାପ୍‌ପା ପୁନର୍ବାର ବିଛଣାରେ ଗଡ଼ିପଡ଼ିଲେ ଓ ଚେତାଶୂନ୍ୟ ହୋଇ ପଡ଼ିଲେ ।

ବାଲ୍ଲିଆମ୍ମାଙ୍କ ଶବାଧାର ଘର ଛାଡ଼ିଲାବେଳେ ମୁଁ ମଧ୍ୟ କାନ୍ଦିଥିଲି । ଆହା, ତାଂକର ସେଇ ନିତମ୍ବଚୁମ୍ବୀ ଦୀର୍ଘ କୁଞ୍ଚିତ, କୋମଳ, ଉଜ୍ଜ୍ୱଳ ଓ ସାମାନ୍ୟ ପକ୍ୱ କେଶରାଶି । ବିଚରା । କଣହେଲା ସେଇ ଗୌରବମୟୀ ବାଳଗୁଡ଼ିକର ଅବସ୍ଥା । ନିଆଁ ଶୃଗପାଖରେ ଘେରିଗଲା ଓ ସବୁଦିନ ପାଇଁ ଲୁଚିଗଲା ବାଲ୍ଲିଆମ୍ମାଙ୍କର ଦେହ, ମୁହଁ ଓ ବାଳସବୁ ।

ନିଳାପତିରେ ଏପରି ମୃତ୍ୟୁର ବାରମ୍ବାର ଆବୃତ୍ତି ଦେଖି ଓ ମୋର ଦେହ ବାରମ୍ବାର ଖରାପ ରହୁଥିବାରୁ ବାପା ମୋତେ କଲିକତା ନେଇଗଲେ ତାଂକ ସାଙ୍ଗରେ । ମୋ ପକ୍ଷରେ ପରିବର୍ତ୍ତନ ଆବଶ୍ୟକ ଥିଲା ।

# ଦଶ

## ସେ ମୋତେ ଚିହ୍ନିଁଲେ ନାହିଁ...

ମୁଁ ଓ ମୋ ଭାଇ, ଅନ୍ୟାନ୍ୟ ବନ୍ଧୁମାନଂକ ସହଯୋଗରେ ଆରମ୍ଭ କଲୁ ଏକ ନାଟକ ଆନ୍ଦୋଳନ । ଆମର ନାଟ୍ୟ ଅନୁଷ୍ଠାନର ନାମ ରଖାଗଲା—ବାନେର ଶିଶୁ ନାଟକ ଅନୁଷ୍ଠାନ । ନିଳାପତିର ପାହାଚ ପାହାଚ ହୋଇଥିବା ଅଗଣାରେ ନାଟକଗୁଡ଼ିକ ମଞ୍ଚସ୍ଥ ହେଲା । ଦୃଶ୍ୟପଟ୍ଟ ଓ ବେଶ ପୋଷାକ ଆଣିଲୁ ଭଡ଼ାରେ । ମଞ୍ଚ ସଜେଇବା ଓ ପରିଚାଳନା ପାଇଁ ମଧ୍ୟ ବାହାରୁ ଲୋକ ଆସି ଆମ ସହିତ ସହଯୋଗ କରିଥିଲେ ।

ମୁଖ୍ୟ ନାଗରିକମାନେ ପ୍ରଥମ ଉପରଧାଡ଼ିରେ ବସୁଥିଲେ । ତା'ପର ଧାଡ଼ିରେ ସ୍କୁଲ୍‌ରୁ ଭଡ଼ାରେ ଆସିଥିବା ଲମ୍ବା ବେଞ୍ଚ୍‌ଗୁଡ଼ିକ ପଡୁଥିଲା । ସେସବୁରେ ଆମର ଆତ୍ମୀୟ ଓ ବନ୍ଧୁମାନେ ବସୁଥିଲେ । ତା'ପରେ ମୁକ୍ତ ଅଗଣାର ବାଲି ଉପରେ ବସୁଥିଲେ ଅନ୍ୟ ଦର୍ଶକମାନେ, ଯେଉଁମାନେ, ଉତ୍କଣ୍ଠା ଓ ଆବେଗ

ବଣତଃ ନାଟକ ମଞ୍ଚରେ ତାଳି ମାରୁଥିଲେ, ପାଟି କରୁଥିଲେ ବା ପ୍ରଶଂସା କରୁଥିଲେ । ସେତେବେଳେ ଗାଁ-କୁ ବିଦ୍ୟୁତ୍ର ସଂଯୋଗ ହୋଇ ନ ଥିଲା । ହାରିକେନ ଥିଲା ଆମର ପାଦ-ପ୍ରଦୀପ । ସେସବୁ ଉପରେ ନାଟକର ଅନ୍ତର୍ଗତ ଆବେଗକୁ ସୁହାଇଲା ଭଳି ଆମେ ନାନାପ୍ରକାର ରଙ୍ଗୀନ୍ ସେଲୋଫେନ୍ କାଗଜର ଆବରଣ ଦେଉଥିଲୁ ।

ଭିକ୍ଟୋର ହ୍ୟୁଗୋଙ୍କ ପ୍ରସିଦ୍ଧ ରଚନା "ଲେ'-ମିଜରେବ୍‌ଲ୍" (Les Miserables)ର ଗୋଟିଏ ପରିଚ୍ଛେଦର ଗ୍ରସ୍ଥାରେ ମାଲସ୍ଥାଲମ୍ ଭଷାରେ ଲିଖିତ ନାଟକଟି ଆମେ ପ୍ରଥମେ ମଞ୍ଚରେ ପରିବେଷଣ କରିଥିଲୁ । କୋସେଟ୍ ନାମକ ପିତୃ-ମାତୃହୀନ ସାନ ପିଲାଟିକୁ ସାକ୍ଷାତ କରିବା ପାଇଁ କପରି ଥେନାର୍‌ଡିଏର୍‌ଙ୍କ ବାସଭବନକୁ ଜାଁ-ଭାଲ୍‌ଜାଁ ଯାଇଥିଲେ, ସେଥିରେ ତାହା ରୂପାୟିତ ହୋଇଥିଲା । ମୁଁ ଏପୋନିନ୍ ଭୂମିକାରେ ଅଭିନୟ କରିଥିଲି । ଏପୋନିନ୍ ଥିଲା ଥେନାର୍‌ଡିଏର୍‌ଙ୍କ ଉଦ୍ଧତ କନ୍ୟା । ମୁଁ ଯେତେବେଳେ ସର୍ବପ୍ରଥମେ ମଞ୍ଚରେ ପଦାର୍ପଣ କଲି—ସେତେବେଳେ ପାଦ-ପ୍ରଦୀପଗୁଡ଼ିକ ଶୀତ-କାଳୀନ କୁହେଳିଭରା ଆକାଶର ତାରାଭଳି କିଷ୍ତେଜ ଭାବରେ ଜଳୁଥିଲେ ଦପ୍‌ଦପ୍ ହୋଇ । ଦର୍ଶକମାନେ ମୁଣ୍ଡଟେକି ଚାହିଁ ରହିଥିଲେ । ସେସବୁ ଦେଖି ମୁଁ କ୍ଷଣକରେ ସମସ୍ତ ଲଜ୍ଜା ପରିତ୍ୟାଗ କରି ଶାନ୍ତ ଓ ସ୍ପଷ୍ଟ ସ୍ୱରରେ ଗୀତ ବୋଲିବାକୁ ଲାଗିଗଲି ।

ଆମ ଦଳର ଅଭିନୟ ସଫଳ ହୋଇଥିଲା । ଏପରିକି ପ୍ରଥମଧାଡ଼ିରେ ବସିଥିବା ମୁଖିଆମାନଙ୍କର କଠିନ ହୃଦୟକୁ ଆମେ ତରଳାଇ ଦେଇଥିଲୁ । ସେମାନଙ୍କ ଆଖିସବୁ ଲୁହ ଛଳଛଳ ହୋଇ ଯାଇଥିଲା । ତଳେ ବସିଥିବା ଦର୍ଶକଙ୍କ କଥା କିଏ କହିବ ? ଦସ୍ୟୁମାସୁ ଛେଉଣ୍ଡ ପିଲାଟି ପାଇଁ ଜାଁ-ଭାଲ୍‌ଜାଁ ଗୋଟିଏ ଖୁବ୍ ଦାମିକା କଣ୍ଢେଇ ଆଣିବାର ଦୃଶ୍ୟରେ ସେମାନଂକ ଅନ୍ତରକୁ ଏପରି ମଥିତ କଲା ଯେ ସେମାନେ ସବୁ ସୁଁ-ସୁଁ ହୋଇ କାନ୍ଦି ପକେଇଲେ । ସେ ଅଶ୍ରୁ ଥିଲା ସନ୍ତୋଷର, ଆନନ୍ଦର । ପ୍ରଶଂସା ଓ ପାଦ-ପ୍ରଦୀପର ଯାଦୁକରୀ ଆକର୍ଷଣ ଆମ ଭିତରେ ଅଭିନୟର ନିଶା ସୃଷ୍ଟିକଲା । ଲୋକଂକର ପ୍ରୀତି-ଭାଜନ ହେବା ଲାଗି ଆମେ ମଞ୍ଚସ୍ଥ କରି ଗ୍ଲଲୁଁ ନାଟକ ପରେ ନାଟକ ।

ମୋଗଲ୍ ମହାରାଣୀ ନୁର୍‌ଜାହାନ୍ ଭୂମିକାରେ ମୁଁ ଯେଉଁ ଅଭିନୟ କରିଥିଲି ତାହା ଥିଲି ସମ୍ଭବତଃ ମୋ ଜୀବନରେ ଶ୍ରେଷ୍ଠତମ ଅଭିନୟ । ସମର ଶେଷରେ ମହାରାଣୀଙ୍କର ସମର ପ୍ରାଙ୍ଗଣ ପରିଦର୍ଶନ କରିବା ଦୃଶ୍ୟଟି ଥିଲି ମୋର

ଶ୍ରେଷ୍ଠତମ ଦୃଶ୍ୟ । କାଗଜ ପଟିରେ ନିର୍ମିତ ଏକ ହାତୀ ଉପରେ ମୁଁ ବସିଥିଲି । କଣ୍ଠ ସ୍ଥାନରେ ମୋର ଦକ୍ଷିଣ ଗୋଡ ଝୁଲିରହିଥିଲା । ବସିବାଟି ଆରାମଦାୟକ ନଥିଲା । ପରିହିତ କାଗଜ-ପଟି ଓ ଟିଣ ନିର୍ମିତ ମୁକୁଟ ଥିଲା ବେଶ୍ ଓଜନିଆ । କିନ୍ତୁ ଦର୍ଶକମାନେ ନିଷ୍ଠୁର ଓ ଅଭିଭୂତ ହୋଇ ପଡ଼ିଥିଲେ । ଗୋଟିଏ ଝିଅଟିଏ ଯେ ମହାରାଣୀ ହୋଇଛି ଏକଥା ସେମାନେ ଭୁଲି ଯାଇଥିଲେ । ସେମାନଙ୍କ ଉଦ୍‌ବେଗ ଓ ସମ୍ଭ୍ରମ ଦେଖି ମୁଁ ଅପୂର୍ବ ଉନ୍ମାଦନାରେ ଥରି ଉଠିଥିଲି । ମୋ ଭାଇ ମୋଠାରୁ ସୁନ୍ଦର ଅନ୍ୟ କୌଣସି ଝିଅପିଲାଙ୍କ ପରିବର୍ତ୍ତେ ମୋତେ ଏଇ ଭୂମିକାଟି ଦେବାଲାଗି ଅନ୍ୟମାନଙ୍କ ଅନାଗ୍ରହ ସତ୍ତ୍ୱେ ଜିଦ୍ ଧରିଥିବାରୁ ନିଜକୁ ନିଜେ ଧନ୍ୟବାଦ ଦେଉଥିଲେ । ମୋ'ଠାରୁ ସୁନ୍ଦର ଝିଅଟି ଯୁବରାଜ ଖୁରମ୍‌ଙ୍କ ପତ୍ନୀ ମମତାଜମହଲ ଭୂମିକାରେ ଅଭିନୟ କରୁଥିଲା ଏବଂ ସେଥିରେ ସେ ତାର ସୌନ୍ଦର୍ଯ୍ୟ ବିତରଣ କରିପାରିଥିଲା, ଆଶାଜନକ ଭାବେ ।

ଗୋଟିଏ ବର୍ଷ ଭିତରେ ମାଲୟାଲମ୍ ଭାଷାରେ ଅନୂଦିତ ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ସମସ୍ତ ନାଟକ ମଞ୍ଚସ୍ଥ କରିପାରିଥିଲୁ । ଆଗେଇ ଯାଇଥିଲୁ—କାଳିଦାସଙ୍କ "ଶାକୁନ୍ତଳମ୍" ଓ ଭାସଙ୍କ—"ସ୍ୱପ୍ନ ବାସବଦତ୍ତମ୍" ପର୍ଯ୍ୟନ୍ତ । ରାଣାପ୍ରତାପ ଭୂମିକାରେ ମୋ ଭାଇଙ୍କ ଅଭିନୟ ଥିଲା ସ୍ମରଣୀୟ । କାଗଜ-ପଟି ତିଆରି ଘୋଡ଼ା ଉପରେ ସେ ଜଣେ ଅଭ୍ୟସ୍ତ ଅଶ୍ୱାରୋହୀ ପରି ବସିପାରିଥିଲେ । ସେ ଉଜ୍ଜ୍ୱଳ ଆଚ୍‌କନ୍ ପିନ୍ଧିଥିଲେ । ଉଜ୍ଜ୍ୱଳ ମୁକୁଟ ତାଙ୍କ ଶିରରେ ଶୋଭିତ ଥିଲା । କଟୀ ଦେଶରୁ ଝୁଲି ପଡ଼ିଥିଲା ତରବାରୀ ।

ସ୍ୱଦେଶର ରକ୍ଷା ପାଇଁ ସେ ମରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଦୃଢ଼ ଭାବରେ କହିପାରିଥିଲେ । ତାଙ୍କର ସଂଳାପ ଥିଲା ଉତ୍ତେଜନା ପୂର୍ଣ୍ଣ—"ହେ ମୋର ପ୍ରିୟ ମାତୃଭୂମି ! ମୋର ଶେଷ ରକ୍ତ ବିନ୍ଦୁ ପର୍ଯ୍ୟନ୍ତ ଉତ୍ସର୍ଗ କରି ମୁଁ ତୋତେ ରକ୍ଷା କରିବି ।" ଏହି ସଂଳାପ ସମୟରେ ତାଙ୍କର ମୁହଁ ଓ ପୋଷାକ ଉପରେ ପାଦ-ପ୍ରଦୀପରୁ ଲାଲ୍ ବର୍ଣ୍ଣର ଆଭାମ ଖେଳିଯାଇଥିଲା । ବାଦ୍ୟନାଦ ଆସୁଥିଲା ଗ୍ରୀନ୍‌ରୁମ୍‌ରୁ । ଦର୍ଶକମାନଙ୍କୁ ପରିବେଶ ବିଷୟରେ ସତର୍କ ଓ ସଚେତ କରି ରଖିବା ଥିଲା ବାଦ୍ୟନାଦର ଉଦ୍ଦେଶ୍ୟ ।

ମୋ ଦେହର ଶ୍ୟାମଳରଙ୍ଗ ବୁଢ଼ୀ-ମାଙ୍କୁ ବଡ଼ ଦୁଶ୍ଚିନ୍ତାରେ ପକାଇଥିଲା । ତେଣୁ ପ୍ରତି ମଙ୍ଗଳବାର ଓ ଶୁକ୍ରବାର ଦିନେ ମୋତେ କଞ୍ଚା ହଳଦୀ ଲଗାଇ ଗାଧୋଇ ଦେଉଥିଲେ । ମନ୍ଦାର ପତ୍ରର ଲାଳ ମାଖି ସେ ମୋ ମୁଣ୍ଡବାଳକୁ ଯତ୍ନର ସହିତ ପରିଷ୍କାର କରୁଥିଲେ ଓ ତେଲ ଦେଇ କୁଣ୍ଡାଉଥିଲେ । କୁଞ୍ଚିତ

କେଶ ସେତେବେଳେ ନାରୀ ପକ୍ଷରେ ଗୌରବ ଓ ଗର୍ବର କଥା ରୂପେ ପରିଗଣିତ ହେଉଥିଲା । ବୁଢ଼ୀ-ମା ମୋ ମୁଣ୍ଡବାଳ ଯେନ ଗର୍ବବୋଧ କରୁଥିଲେ । ମୋର ଦୀର୍ଘ ଓ ଘନ କେଶରାଶି ସେ ଅନ୍ୟମାନଙ୍କୁ ଦେଖାଉଥିଲେ । ଦେଖିଲା ଲୋକେ ଅବଶ୍ୟ ପ୍ରଶଂସା କରୁଥିଲେ, କିନ୍ତୁ ମୋ ଦେହର ବର୍ଣ୍ଣ ଯେନ ସେମାନେ ନିନ୍ଦାତ୍ମକ ବାକ୍ୟ ପ୍ରୟୋଗ କରୁଥିଲେ । ମୋର ମନେ ଅଛି—ମୁଁ ଥରେ ଥରେ ଅପରାହ୍ଣରେ ପୃଥ୍ୱୀରାଣିକୁ ଗୋପନରେ ପଚାରୁଥିଲି—"କହିନ, ସତରେ କଣ ମୁଁ ଅସୁନ୍ଦର ?" ମୋ ପ୍ରଶ୍ନ ଶୁଣି ସେ ଜୋର୍‌ରେ ହସି କହୁଥିଲା—"ନା—ନା—ଆଦୌ ନୁହେଁ । ବାସ୍ତବିକ ମୁଁ ଭାବୁଚି ଦଶୋଟି ବର୍ଷ ଭିତରେ ତୁମେ ଖୁବ୍ ସୁନ୍ଦରୀ ହୋଇଯିବ ।"

ଏକଦା ବାପା ଛୁଟିରେ ଘରକୁ ଆସିଥିଲେ । ଦେଖିଲେ, ମୁଁ ତାଙ୍କର ରୁଚିସମ୍ମତ ହୋଇପାରିନି । ତାଙ୍କ ରୁଚି ଅନୁସାରେ ମୁଁ କାଳେ ଖୁବ୍ ଗାଉଁଲି ହୋଇ ଯାଇଥିଲି । ଏଣୁ ବିଳମ୍ବ ନ କରି ସେ ଗୋଟିଏ ଇଂରେଜୀ ସ୍କୁଲରେ ମୋର ନାମ ଲେଖାଇ ଦେଲେ । ସ୍କୁଲଟି ରୋମାନ୍ କାଥଲିକ୍ ନନ୍‌ମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ଓ ଆବାସିକ ଥିଲା । ବାପାଙ୍କ ସହିତ ଗୋଟିଏ ଟାକ୍ସିରେ ବସି ଯାଇଥିଲି । ମୋର ଯତ୍‌ସାମାନ୍ୟ ଜିନିଷ ପତ୍ରତକ ଗୋଟିଏ କଳା ଟ୍ରଙ୍କ୍‌ରେ ଭର୍ତ୍ତି ହୋଇଥିଲା । ଟ୍ରଙ୍କ୍‌ଟି ଗୋଟିଏ ଶିଶୁର କଫିନ୍ ପରି ଦିଶୁଥିଲା । ତା' ଭିତରେ ବୁଢ଼ୀମା ମୋର ଦରକାରୀ ଜିନିଷପତ୍ର ଭର୍ତ୍ତି କରି ଦେଇଥିଲେ । ମିଲ୍-ନିର୍ମିତ ଖଦଡ଼ କପଡ଼ାରେ ତିଆରି ଚାରିଖଣ୍ଡ ଧଳା ଫ୍ରକ୍, ଚାରିଖଣ୍ଡି ପୁରୁଣା କାଳିଆ ନିକର ଏବଂ ଦୁଇଖଣ୍ଡି ତଉଲିଆ । ବୁଢ଼ୀ-ମା ସେତେବେଳେ ପେଟି-କୋଟ୍ କିମ୍ବା ସେମିଜ୍‌ର ବ୍ୟବହାର ଜାଣିନଥିଲେ । ମୁଁ ମଧ୍ୟ ସହରର ଫେସନ୍ ବିଷୟରେ ଅଜ୍ଞ ଥିଲି ।

ପ୍ରଥମେ ବାପା ମଦର୍ ସୁପିରିଅର୍‌ଙ୍କ ସହିତ ମୋର ପରିଚୟ କରାଇ ଦେଲେ । ତାଙ୍କର କଟୀରେ ଗୋଟିଏ କ୍ରସ୍ ଓ କଇଞ୍ଚି ଝୁଲୁଥିଲା । ସମ୍ଭବତଃ ମୁଣ୍ଡର ବାଳ ଗୁଡ଼ିକୁ କାଟିବା ଥିଲା କଇଞ୍ଚିର ପ୍ରୟୋଜନୀୟତା । ସବୁ ନନ୍‌ମାନଙ୍କର କଳା ଉତ୍ତରୀୟ ତଳେ ଥିଲା କେଶ-ବିହୀନ ଲଣ୍ଡିତ ମସ୍ତକ । ରାତିରେ ଶୋଇବା ପୂର୍ବରୁ ସେମାନେ ଯେତେବେଳେ ଉତ୍ତରୀ ଅନାବରଣ କରୁଥିଲେ ସେତେବେଳେ ତାଂକର ମୁଣ୍ଡସବୁ ବାଇଗଣି ଦିଶୁଥିଲା ।

ବାପା ପୁଣି ମୋତେ ସିଷ୍ଟର ଫିଲୋମେନ୍‌ଙ୍କ ସହିତ ପରିଚୟ କରିଦେଲେ । ସିଷ୍ଟର୍ ଫିଲୋମେନ୍ ଥିଲେ ବୋର୍ଡ଼ିଂର ଦାୟିତ୍ୱରେ ।

ବିମ୍ବ ତାଂକର ପ୍ରାୟ ପଚ୍ଛଣ ହୋଇଯାଇଥିଲା । ପରିଚୟ ହେଲା ମାତ୍ରେ ସେ ତାଂକର ମୋଟା ମୋଟା ବାହୁ ବିସ୍ତାରିତ କରି ମୋତେ ଆଲିଙ୍ଗନ କଲେ । କହିଲେ—"କିଛି ଦୁଃଖ କରନା । ତୁମର ଯତ୍ନନେବା ପାଇଁ ମୁଁ ଅଛି ।" ତାଂକର ନିସ୍ତେଜ ଚକ୍ଷୁକରେ ଥିଲା ଦୁଇଟି ଲେନ୍ସ, ତାଙ୍କର ମୁଖଟି ଥିଲା ବର୍ତ୍ତୁଳ ଏବଂ ହସଟି ଥିଲା କୋମଳ ଓ ମିଠା ।

କୃତଜ୍ଞତା ବଶତଃ ମୋର ଆଖି ଅଶ୍ରୁଳ ହୋଇଯାଇଥିଲା । ମୋର ବାପା ଗୋଟିଏ କାର୍‌ରେ ବସି ଅନ୍ତର୍ଦ୍ଧାନ ହୋଇଯିବା ପରେ ମୁଁ ସିଷ୍ଟର୍ ଫିଲୋମେନ୍‌ଙ୍କୁ ଅନୁସରଣ କରି ପ୍ରାୟ ଏକ ଫର୍ଲଂ ଦୂରରେ ଥିବା ଗ୍ରୁନ୍ଦୀ ଆବାସକୁ ଗଲି ।

ବାର ବର୍ଷର ବାଳିକାଟିଏ ଫାଟକ ନିକଟରେ ଠିଆ ହୋଇ ବାହାରକୁ ଚାହିଁଥିଲା । ସିଷ୍ଟର ଫିଲୋମେନ୍ କହିଲେ—"ରୁଜି, ଆସ । କମଳା ସହିତ ସାକ୍ଷାତ କର । ସେ ବି ଜଣେ ନବାଗତା ।" ରୁଜିର ମୁହଁରୁ ସେ ତା' ପୂର୍ବରୁ ବହୁତ ବହୁତ କାନ୍ଦିଥିବା ଜଣାପଡ଼ୁଥିଲା । ତାର ଆଖି ଯୋଡ଼ିକ ଥିଲା ଲାଲ୍ ବର୍ଣ୍ଣର । ତା' ଭିତରେ ଭରି ରହିଥିଲା ଦୁଃଖ ଓ ଅବିଶ୍ୱାସ । କିନ୍ତୁ ସେ ଆମ ସହିତ ଗ୍ରୁନ୍ଦୀ ଆବାସକୁ ଗଲା । ଆବାସଟି ଥିଲା ଗୋଲାକାର ଓ ଦୁଇ ମହଲା ବିଶିଷ୍ଟ । ଭିତରେ ଥିଲା ଗୋଟିଏ ବଗିଚା । କିନ୍ତୁ ବଗିଚାରେ ଫୁଲ ନ ଥିଲା, ଥିଲା ଅନ୍ୟାନ୍ୟ ଗଛ ଓ ଗୋଟିଏ କୂଅ । କୂଅ ମୂଳରେ ଥିଲା ପିଜୁଳି ଗଛଟିଏ, ଯାହାର ଛାୟା ପଡ଼ୁଥିଲା କୂଅ ଉପରେ ।

ବଗିଚାର ଫାଟକରେ ସବୁବେଳେ ତାଲା ପଡ଼ୁଥିଲା । ସମ୍ମୁଖରେ ଥିଲା ରାସ୍ତା ଓ ଗୋଟିଏ ହୋଟେଲ୍ । ସେଠି ଅନ୍ୟାନ୍ୟ ପଦାର୍ଥ ସହିତ ଆଇସ୍-କ୍ରିମ୍ ବିକା ଯାଉଥିଲା । ଅନ୍ଧାର ହେଲେ ବାଳିକାମାନେ ପାଚେରି ଉପରେ ଚଢ଼ି ଗୋପନରେ ସେଠାକୁଯାଇ ଆଇସ୍‌କ୍ରିମ୍ କିଣିଆଣୁଥିଲେ । ସିଷ୍ଟର ଫିଲୋମେନ୍‌ଙ୍କୁ କାମରେ ସାହାଯ୍ୟ କରିବା ପାଇଁ ଅନ୍ୟ ଜଣେ ନନ୍ ମଧ ନିଯୁକ୍ତ ହୋଇଥିଲେ, ଯାହାଙ୍କର ପ୍ରକୃତ ଥିଲା ଭିନ୍ନ । ସେ ହସ ଖୁସିର ଚରିତ୍ର ନ ଥିଲେ । ପିଲାମାନଙ୍କ ଦୋଷ ଖୋଜି ବାହାର କରିବା ଓ ସେମାନଙ୍କୁ ମଦର ସୁପରିଅର୍‌ଙ୍କ ନିକଟକୁ ନେଇ ଉପଯୁକ୍ତ ଭାବେ ଦଣ୍ଡିତ କରିବା କାମରେ ସମ୍ଭବତଃ ତାଙ୍କ ଜୀବନ ଉତ୍ସର୍ଗୀକୃତ ହୋଇଥିଲା । ପଢ଼ା ସମୟରେ କେହି ଭୁଲାଇଲେ କିମ୍ବା କାହା ସହିତ କଥା କହିଲେ ତାଙ୍କର ପାଟି ଲାଲେଇ ଯାଉଥିଲା ଓ ଆଖି ଜଳି ଉଠୁଥିଲା । ଛୋଟିଆ ପିଲାମାନେ ତାଙ୍କୁ ଘୃଣା କରୁଥିଲେ ।

ଗ୍ରୁନ୍ଦୀ– ଆବାସରେ ମୁଁ ଯେତେବେଳେ ପ୍ରଥମେ ପାଦ ଦେଲି, ହଲ୍ ଭିତରେ ବସିଥିବା ଆଙ୍ଗ୍ଲୋ-ଭାରତୀୟ ବାଳିକାମାନେ ବୁଣିବା ବନ୍ଦ୍ କରି ଗାଇ

ଉଠିଲେ—"She had nothing under when she came" (ଅର୍ଥାତ୍—'ସେ ଯେବେ ଆସିଲା ନ ଥିଲା ତ / ଭିତରେ ତାହାର କଚ୍ଛ')। ମୋତେ ଦେଖି ସେମାନେ ସବୁ କାହିଁକି ଯେ ହସି ଉଠିଲେ, ମୋତେ ଆଶ୍ଚର୍ଯ୍ୟ ଲାଗିଥିଲା। ପରେ ଜଣେ ଅପେକ୍ଷାକୃତ ବୟସ୍କ ବାଳିକା ଉଠିପଡ଼ି ମୋ ନିକଟକୁ ଆସିଲା। ସେ କହିଲା—"ମୁଁ ଶାରଦା ମେନନ୍। ମୁଁ ତୁମର ରୁମ୍ ସାଥୀ ହେବାକୁ ଯାଉଛି।"

ସେ ମୋତେ ତଳମହଲାର ଉତ୍ତର ପଟର ଗୋଟିଏ କୋଠରୀକୁ ନେଇ ଗଲେ। ଗୋଟିଏ ଡ୍ରେସିଂ ରୁମ୍ ତାହା ସହିତ ସଂଯୁକ୍ତ ଥିଲା। ଯୂଇ ଲତାଟିଏ ବଢ଼ିଥିଲା ଝରକା କଡ଼ରେ। କୋଠରୀଟିରେ ଥିଲା ଗୁଡ଼ିଏ ଶଯ୍ୟା। ମୋର ନିକଟବର୍ତ୍ତୀ ଥିଲା ରାଜର। ଆମ ତିନିଙ୍କ ବ୍ୟତୀତ ଥିଲା ଅନ୍ୟ ଜଣେ ପାତଳୀ ଚଉଦ ବର୍ଷର ବାଳିକା। ନାଁ ତାର ମୀନାକ୍ଷୀ, ଯେ ଗୋଟିଏ El Greco-ଚିତ୍ରଭଳି ଦିଶୁଥିଲା। ଶାରଦା ଥିଲା ଆମ ଭିତରେ ସବୁଠାରୁ ଅଧିକ ସୁନ୍ଦର ଓ ବୟସରେ ବଡ଼। ଏଣୁ ଆପଣା ଇଚ୍ଛାରେ ସେ ଆମର ମୁରବୀର ଦାୟିତ୍ୱ ଗ୍ରହଣ କଲା।

ଶାରଦାର ଶୈଶବ କଟିଥିଲା ସିଙ୍ଗାପୁରରେ। ତାର ପୋଷାକ-ପତ୍ର ଥିଲା ଅଲଗା। ତାହାର କଟୀଭାଗର ସାମାନ୍ୟ ବଙ୍କତାକୁ ପ୍ରକଟ କରି ତାହାର ନୂଆ କାଇଦାର ପରିଧେୟ ମାତ୍ର ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିଲା। ଫଳତଃ ତାର ଅନାବୃତ ଲୋଭନୀୟ ଗୋଡ଼ ଦୁଇଟି ସତକୁ ସତ ଆକର୍ଷଣୀୟ ହୋଇ ପଡ଼ୁଥିଲା।

ସେ ଥିଲା ଗମ୍ଭୀର ସ୍ୱଭାବର। କଥା କହୁଥିଲା ଖୁବ୍ କମ୍। ରୁମ୍-ସାଥୀ ଓ ଶିକ୍ଷୟିତ୍ରୀମାନଙ୍କ ବ୍ୟତୀତ ସେ ଅନ୍ୟ କାହା ସାଙ୍ଗରେ ପ୍ରାୟ ଗପୁ ନ ଥିଲା। ଗୋଆରୁ ଆସିଥିବା ଜଣେ ଦ୍ୱିତୀୟ ଶ୍ରେଣୀର ଅନ୍ତେବାସିନୀ ଶାରଦାର ପ୍ରେମରେ ପଡ଼ିଗଲା। ବାରମ୍ବାର ସେ ଆସି ତାକୁ କୋମଳ କଥା କହିବାକୁ ଲାଗିଲା ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହିଁବାକୁ ଲାଗିଲା। ଦିନ ପରେ ଦିନ ବିତିଗଲା ସେଇପରି ପ୍ରେମ ନିବେଦନରେ। କ୍ରମେ ତାର ବ୍ୟବହାର ଅତ୍ୟଧିକ ଅସହ୍ୟ ହେବାରୁ ଅବଶେଷରେ ଦିନେ ଶାରଦା ରାଗିଗଲା ଓ ଯାଚ୍ଛାତା କହି ଗାଳି ବୃଷ୍ଟି କଲା।

ଦିନେ ଉକ୍ତ ପ୍ରଶଂସିକା ଓ ନିବେଦିକା ଆମ ରୁମ୍‌କୁ ଆସିଲା। ଶାରଦା ସେତେବେଳେ ଯାଇଥିଲା ଗାଧୋଇ। ଡ୍ରେସିଂରୁମ୍‌ରେ ଶୁଖୁଥିବା ଶାରଦାର ଅନ୍ତର୍ବାସ ଓ ତକିଆ ଖୋଳ ପ୍ରଭୃତିକୁ ଚୁମ୍ବା ଦେଇ ସେ ଫେରିଗଲା। ମୋର ଶେଯରେ ଶୋଇ ମୁଁ ତାର କ୍ରିୟାକଳାପ ଲକ୍ଷ୍ୟ କରୁଥିଲି। କିନ୍ତୁ ଶାରଦାର ପ୍ରେମରେ ସେ ଏପରି ଭାବେ ନିମଗ୍ନ ଥିଲା ଯେ ମୋତେ ଦେଖି ବି ପାରିଲା ନାହିଁ।

# ଏଗାର

## ବିଦ୍ୟାଳୟର ଅନ୍ତେବାସିନୀମାନେ...

ମୋର ରୁମ୍-ସାଥୀ ରାଜ ଥିଲା ଜଣେ ଡାକ୍ତରଙ୍କ କନ୍ୟା । ବେଶ୍ ଯତ୍ନରେ ବଢ଼ିଥିଲା ସେ । ଶୃଙ୍ଖଳାର ସହିତ କିଛି ଶିକ୍ଷା ଅର୍ଜନ କରିବା ପାଇଁ ତାକୁ ଆବାସିକ ବିଦ୍ୟାଳୟଟିରେ ତାର ବାପ-ମା ଛାଡ଼ିଦେଇଥିଲେ । କିନ୍ତୁ ନନ୍‌ମାନେ ସେମାନଙ୍କର ଧାର୍ମିକ ଭଣ୍ଡତା ପାଇଁ ପାନେ ଶିକ୍ଷା ପାଇବା ଉଚିତ ବୋଲି ସେ ଭାବୁଥିଲା । ଛାତ୍ରୀ-ଆବାସର ସହକାରୀ-ତତ୍ତ୍ୱାବଧାରିକା ସୁଯୋଗ ପାଇବା ମାତ୍ରେ ପ୍ରାୟ ଦିନକୁ ଦୁଇଥର ରାଜକୁ ଗାଳି ଦେଉଥିଲେ ।

ରାଗରେ ଭିତରେ କୁହୁଳିଲେ ବି ରାଜ ନୀରବରହୁଥିଲା ସବୁବେଳେ । ଯେତେବେଳେ ସେ ମୁହଁ ଖୋଲୁଥିଲା ସେଇ କଠୋର ନନ୍‌ଟିର ଅପବିତ୍ରତା ବିଷୟରେ ଗରଗର ହେଉଥିଲା । ଦିନେ ରାଜ କହିପକେଇଲା—"ରାତିରେ ବାଇବଲ୍ ଧରି ପ୍ରାର୍ଥନା କରିବା ପୂର୍ବରୁ ଦିନେ ସେ ମରିଯାଆନ୍ତା କି ?"

ମୋର ରୁମ୍-ସାଥୀମାନେ ମୋତେ ଉଲ୍‌ବା ନାମରେ ଡାକୁଥିଲେ । ଆଇସ୍-କ୍ରିମ୍ ଓ ମିଠା ଉପହାର ଦେଇ ସେମାନେ ମୋତେ ଖୁସି କରୁଥିଲେ । ସେମାନେ ମୋତେଭଲ ଭଲ ଜାମାପଟା ପିନ୍ଧିବାକୁ କହୁଥିଲେ । କହୁଥିଲେ— "ତୁମ ବାପାଙ୍କୁ ଲେଖ, ସେ କଲିକତାରୁ ତୁମ ପାଇଁ ଦଶମ ଜନ୍ମୋତ୍ସବ ଉପଲକ୍ଷେ ଭଲ ସିଲ୍‌କର ଫ୍ରକ୍ ପଠେଇବେ ।"

ଏପରି କରିବା ମୋ ସମ୍ମାନରେ କିପରି ଆଞ୍ଚ ଆସୁଚି, ତାହା ସେମାନେ ବୁଝୁ ନ ଥିଲେ । ଭଲ ଫ୍ରକ୍ ପାଇଁ ଲେଖିବା ଦ୍ୱାରା ବାପାଙ୍କ ପ୍ରତି ମୋର ଭକ୍ତି ଓ ଶ୍ରଦ୍ଧା କ୍ଷେତ୍ରରେ କିପରି କଳଙ୍କ ଲାଗିଯିବ, ତାହା ସେମାନେ ବୁଝୁ ନ ଥିଲେ । ସେମାନଙ୍କ ପାରିବାରିକ ପରମ୍ପରା ମୋ'ଠାରୁ ଥିଲା ଭିନ୍ନ । ସେମାନେ ଏକ ଭିନ୍ନ ଭୂମିରେ, ଭିନ୍ନ ପରିବେଶରେ ଓ ଭିନ୍ନ ପରିସ୍ଥିତିରେ ବଢ଼ିଥିଲେ । ପିଲାମାନେ ଭଲ ଜାମାପଟା ପିନ୍ଧିବା ଓ ବାଳରେ ରିବନ୍ ବାନ୍ଧିବା ସେମାନଙ୍କ ଦୃଷ୍ଟିରେ ନିହାତି ସାଧାରଣ ବିଷୟ ଥିଲା । ମୁଁ ସେମାନଙ୍କର ମୋର ବୟସର ସାନ ଭଉଣୀ ଓ ସମ୍ପର୍କୀୟାଙ୍କ ପରି ସୁନ୍ଦର ଦିଶେ—ତାହାହିଁ ସେମାନେ ଚାହୁଁଥିଲେ ।

ପ୍ରତି ଦୁଇ ମାସରେ ଥରେ ଶନିବାରଆ ଦେଖି ମୋତେ ନିଳଗିରି ଭବନକୁ ନେଇଯିବା ପାଇଁ ବୁଢ଼ୀମା କାହାକୁ ନା କାହାକୁ ପଠାଉଥିଲେ । ଥରେ ସେଇପରି ଏକ ଛୁଟିରୁ ଫେରୁଥିଲା ବେଳେ ମୋତେ ଛାଡ଼ିବାକୁ ଆସିଥିଲେ ମୋ ସାନ-ବୁଢ଼ାପପାଂକ ସଦା ସାନ ଶଳା । ମୋ ପାଇଁ ସହରର ବଜାରରୁ କିଛି ଫ୍ରକ୍-କନା କିଣିଦେବା ଲାଗି ତାଙ୍କୁ କୁହାଯାଇଥିଲା ତାହା ମୋ ଜନ୍ମଦିନ ଉପଲକ୍ଷେ । ମୋ ପାଇଁ ସିଲ୍କ କନା କିଣିବାର ଶକ୍ତି ବୁଢ଼ୀ-ମାଂକର ନ ଥିଲା । ସେ ବୋଧହୁଏ ତାଙ୍କୁ ଖୁବ୍ କମ୍ ପଇସା ଦେଇଥିଲେ । ଏଣୁ ଦୋକାନରେ ସେ କିଛି ରଙ୍ଗୀନ୍ ଅଥଚ ଶସ୍ତା କପଡ଼ା ଦେଖାଇବାକୁ କହିଲେ । ଦୋକାନଦାର ଥାନ ପରେ ଥାନ ଟାଣିଆଣି ଫୁଲପକା ଓ ଜୀବ-ଜନ୍ତୁ ଛବିରେ ପୂର୍ଣ୍ଣ ଥିବା ଛିଟ ପପ୍‌ଲିନ୍ କପଡ଼ା ସବୁ ଦେଖାଇଲା । କିନ୍ତୁ ସାନ ବୁଢ଼ାପପାଂକ ଶଳା ବଡ଼ ପାଟିରେ କହିଲେ—"ଇଆଁଠୁ ଶସ୍ତା କଣ୍ କିଛି ନାହିଁ ?" ତାଂକ ସ୍ୱର ଶୁଣି ବାଟରେ ଯାଉଥିବା ଲୋକ ବି ଅଟକି ଗଲେ କଣ୍ ହେଉଛି ଦେଖିବା ପାଇଁ । "ମୁଁ ପ୍ରକୃତରେ ଏଇ ପିଲାଟି ପାଇଁ ଶସ୍ତା କପଡ଼ା ଚାହେଁ"—ସେ କହି ଉଠିଲେ । ମୁଁ ବଡ଼ ଲଜ୍ଜିତ ହୋଇଗଲି । ସେତେବେଳେ ମୋର ମନେ ହେଲା—ସୀତାଂକ ପରି ପୃଥିବୀ ଭିତରକୁ ପଶିଯିବାକୁ । ଅବଶେଷରେ ମିଲ୍-ଢିଆରି ଖଦଡ଼ ଛିଟ କନା ଆସିଲା, ଯାହା ଆମର ପଇସାକୁ ସୁହାଇଲା । କନାଟି ଥିଲା ନୀଳ ରଙ୍ଗର, ତା' ଭିତରେ ଧଳାର କାରୁକାମ ହୋଇଥିଲା । ମୂଲ୍ୟ ପଡ଼ିଲା ଦୁଇଟଂକା ଆଠଣା ।

ରୁମ୍ ସାଥୀମାନେ ଖଦ-ଖଦଡ଼ିଆ କପଡ଼ାଟିକୁ ଦେଖି ନାକ ଟେକିଲେ । ସେମାନେ କହିଲେ—"ବିଗୃଷ୍ଣ ଉଲ୍‌ବା" । ମୁଁ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ କହିଲି—ଯେ କଲିକତାରୁ ବାପାଙ୍କ ପାଖରୁ ମୋ ପାଇଁ ଭଲ କପଡ଼ା ନିଶ୍ଚୟ ଜନ୍ମଦିନ ପୂର୍ବରୁ ପହଞ୍ଚିଯିବ । ମୋର ଜନ୍ମଦିନକୁ ଆଖି ଆଗରେ ରଖି ସାଥୀମାନେ ମୋତେ ବଜାରକୁ ଡାକିନେଇଗଲେ । କହିଲେ—ଶାରଦାର ସମ୍ପର୍କୀୟା ଭଉଣୀ ସତ୍ୟବତୀ ପାଇଁ କିଛି ଉପହାର କିଣିବାର ଅଛି ।

ଦୋକାନଗୁଡ଼ିକର କାଉଣ୍ଟର୍‌ରେ ଆଖିଝଲସା ଥାନ ପରେ ଥାନ ଜମା ହେଲା । ରଙ୍ଗ ଦେଖି ମୋ ଆଖିର ପଲକ ପଡ଼ିଲା ନାହିଁ । ସୂର୍ଯ୍ୟକିରଣର ସ୍ପର୍ଶରେ ଚକ୍ ଚକ୍ ଦିଶୁଥିଲା ସିଲ୍କ କପଡ଼ାଗୁଡ଼ିକ ।

ଶାରଦା ପଚାରିଲା—"ତୁମେ ସତ୍ୟବତୀ ହୋଇଥିଲେ କେଉଁଟି ପସନ୍ଦ କରିଥାନ୍ତ କହିଲ ?" କିଛିକ୍ଷଣ ପରେ ସିଲ୍କ ଗୁଡ଼ିକର ରଙ୍ଗ, ଛବି, ଓ

କୋମଳତା ପରୀକ୍ଷା କରି ମୁଁ ମୋର ପସନ୍ଦଟି ପ୍ରକାଶ କଲି । ସେଥିରେ ଧଳା ଫୁଲର ଛବି ଥିଲା । ଶାରଦା କିଣିଲା ସେଇଟି । ବୁଲି ବୁଲି କ୍ଳାନ୍ତ ହେଲା ପରେ ଆମେ ଫେରିଲୁ ସ୍କୁଲ୍‌କୁ । ତା'ପରଦିନ ଥିଲା ମୋର ଜନ୍ମତିଥି । ସକାଳୁ ମୁଁ ଉଠିବା ମାତ୍ରେ ମୋର ରୁମ୍-ସାଥୀମାନେ 'ହାପି ବାର୍ଥ୍ ଡେ ଟୁ ୟୁ'-ଗୀତ ସମସ୍ୱରରେ ଗାଇ ମୋତେ ଦଶମ ଜନ୍ମତିଥିର ବଧେଇ ଜଣାଇଲେ, ଏବଂ ସତ୍ୟବତୀ ନାଁରେ ଜଣାଯାଇଥିବା କପଡ଼ାଟି ସେମାନେ ମୋତେ ଉପହାର ଦେଲେ । ମୁଁ ବିସ୍ମିତ ହେଲି । ଉନ୍ମାଦନାରେ ମୋ ଆଖିରେ ଲୁହ ଜକେଇ ଆସିଲି । ଶାରଦାର କେଶଗୁଚ୍ଛ ତଳେ ମୁହଁ ଲୁଚାଇ ମୁଁ କାନ୍ଦି ପକାଇଲି । ମୀନାକ୍ଷୀ କହିଲା—"ଏଇ ବାଇଗଣି ରଙ୍ଗର କପଡ଼ାରେ ତିଆରି ଫ୍ରକ୍ ପିନ୍ଧିଲେ ତୁମେ ବଡ଼ ସୁନ୍ଦର ଦେଖାଯିବ ।"

ମଦର୍ ସୁପରିଅର୍ ମୋତେ ଡକାଇ ପଠାଇଲେ । ତାଙ୍କ ଡାକରା ଶୁଣି ମୁଁ ଡରିଗଲି ପ୍ରଥମେ । କାରଣ ସେଇ ସନ୍ଧ୍ୟାରେ ପାଚେରି ଆରପଟରୁ କିଛି ଆଇସ୍-କ୍ରିମ୍ ଗୋପନରେ ଅଣା ହେବାର ଆୟୋଜନ ମୁଁ କରିଥିଲି । କିନ୍ତୁ ମୁଁ ଯେତେବେଳେ ତାଙ୍କ ନିକଟରେ ପହଞ୍ଚିଲି ସେ ମୋତେ ଜନ୍ମଦିନର ଶୁଭେଚ୍ଛା ଜଣାଇ ଗୋଟିଏ କାରୁକଳାମଣ୍ଡିତ ରୁମାଲ୍ ପାକେଟ୍ ଉପହାର ବଢ଼ାଇଦେଲେ ।

ପ୍ରାୟ ମାସେ ଅନ୍ତରରେ କଲିକତାରୁ ବାପାଙ୍କ ପ୍ରେରିତ ଫ୍ରକ୍ ପହଞ୍ଚିଲା । ବାପା କର୍ମବ୍ୟସ୍ତ ରହୁଥିବାରୁ ସେକ୍ରେଟେରିଙ୍କ ହାତରେ ସେଇଟିକୁ କିଣାଇଥିଲେ । ଏଣୁ ସେଇଟି ମୋ ତୁଳନାରେ ଥିଲା ବହୁତ ବଡ଼ । କାହାକୁ ନ ଦେଖାଇ ମୁଁ ସେଇଟିକୁ ମୋ କଳା ବାକ୍ସ ଭିତରେ ବିଛଣା ଗୃଦିର ଓ ତଉଲିଆ ପ୍ରଭୃତିର ତଳେ ଲୁଚେଇ ଦେଲି ।

ଥରେ ରାଜ ଅସୁସ୍ଥ ହୋଇ ପଡ଼ିଲା । ସହକାରୀ ତତ୍ତ୍ୱାବଧାରିକା ତା'ପ୍ରତି ସମ୍ବେଦନଶୀଳ ହେବା ପରିବର୍ତ୍ତେ ବଡ଼ କର୍କଶ ଓ କଠୋର ବ୍ୟବହାର କଲେ । ପ୍ରଥମ ଟର୍ମର୍ ପରୀକ୍ଷା ଫାଙ୍କିବା ପାଇଁ ରାଜ ଦେହ ଖରାପ ବାହାନା କରୁଛି ବୋଲି ଅଭିଯୋଗ କଲେ । ରାଜ ତା'ଶୁଣି କାନ୍ଦିବାକୁ ଆରମ୍ଭ କଲା ଓ ବାନ୍ତିକରି ପକେଇଲା । ରାଜର ଅବସ୍ଥା ଦେଖି ମୋ ଆଖିରେ ବି ଲୁହ ରହିଲା ନାହିଁ । ମୁଁ ରାଜକୁ ଖୁବ ଭଲ ପାଉଥିଲି ସେ ଅନ୍ୟମାନଙ୍କ ପ୍ରତି କଠୋର ଥିଲେ ମଧ୍ୟ ମୋ ପ୍ରତି ଅତ୍ୟନ୍ତ ସ୍ନେହ-ପ୍ରବଣ ଥିଲା । ମୋର ଭୟହେଲା —ରାଜ ମରିଯିବ କି ଆଉ ? ସପ୍ତାହକରୁ ବେଶୀ ହେବ, ତାର ଦେହ ହଳଦିଆ ପଡ଼ି ରହିଥିଲା । ବଡ଼ ବିବର୍ଣ୍ଣ ଦିଶୁଥିଲା ସେ । ବହୁ ଘଣ୍ଟାଧରି ସେ କିଛିହେଲେ

ଖାଇ ନ ଥିଲା ମୁଁ ତାକୁ ସାମାନ୍ୟ ଦୁଧ ପିଇବା ପାଇଁ ନାନା ଭାବରେ ବହିଲେଇଥିଲି । କିନ୍ତୁ ତାହା ବି ସେ ନ ପିଇ ଫୋପାଡ଼ି ଦେଇଥିଲା ।

ରାଜା କହିଲା—"ଭଲ୍ ବା, ତୁମେ ଡରନା । ମୁଁ ଏଇସବୁ ଅସୁବିଧାରୁ ମୁକ୍ତିହେବା ମାନେ ଭଲ ହୋଇଯିବ ।" ସେଇଦିନ ସନ୍ଧ୍ୟାରେ ରାଜାର ବାପା ଓ ମା ଆସି ପହଞ୍ଚିଲେ । ତାର ବାପା ରୋଗ ଚିହ୍ନିଲେ । ରାଜାକୁ ହଳଦିଆ-କାମଳ ବା ଜଣ୍ଡିସ୍ ହୋଇଯାଇଥିଲା । ମୁଁ ରାଜାର ଜିନିଷପତ୍ର ସଜାଡ଼ିବାରେ ସାହାଯ୍ୟ କଲି । ବାପା-ମାଂକ ସାଙ୍ଗରେ ସେ ଗୁରୁଜୀ-ଆବାସ ଛାଡ଼ି ଚାଲିଯିବା ସ୍ଥିର ହୋଇଥିଲା । ମୁଁ ପଚାରିଲି—"ଭଲହେବା ପରେ ତୁମେ କଣ୍ ଆଉ ଏଠିକି ଫେରିବ ନାହିଁ ?"

"ନା—" ରାଜା ଉତ୍ତର ଦେଲା—"ଶୁଣ, ମୁଁ ପାଇଖାନା କାନ୍ଥରେ ନନ୍‌ମାନଂକ ବିଷୟରେ କେତେକଥା ଲେଖିଛି । ମୁଁ ଗଲାପରେ, ତୁମେ ସେ ସବୁକୁ ଗୋପନରେ ପଢ଼ିବ । କିନ୍ତୁ ମୁଁ ଲେଖିଛି ବୋଲି କାହାକୁ କହିବନି ।"

ରାଜା ଗଲା ପରେ, ମୁଁ ସହସା ଏକୁଟିଆ ହୋଇ ପଡ଼ିଲି । ରାତି ଦଶଟାରେ ସାଇଲେନ୍‌ସ୍ ଘଣ୍ଟା ବା ନୀରବ ରହିବାର ସତର୍କ ଘଣ୍ଟା ବାଜିବାପରେ କେବଳ ରାଜା ହିଁ ମୋ ସହିତ ଚୁପାଗଲାରେ କଥାବାର୍ତ୍ତା କରୁଥିଲା । ଶାରଦା ଓ ମୀନାକ୍ଷୀ ଉଭୟେ ତାଂକର ପଢ଼ାପଢ଼ିରେ ମଗ୍ନ ରହୁଥିଲେ । ନନ୍‌ମାନଂକ ଚରିତ୍ର ଓ କ୍ରିୟାକଳାପ ବିଷୟରେ ଚର୍ଚ୍ଚା କରିବାଟା ସମୟର ଅଯଥା ଅପବ୍ୟୟ ବୋଲି ସେମାନେ ମନେ କରୁଥିଲେ । ଏକଦା ରାତିରେ ରାଜା ମୋତେ ଝରକା କଡ଼କୁ ଡାକିନେଇ ଉପରକୁ ଚଢ଼ି ଫାଂକବାଟେ ନନ୍‌ମାନେ ରହୁଥିବା କୋଠରୀ ଆଡ଼କୁ ଦୃଷ୍ଟି ପକେଇବାକୁ କହିଥିଲା । ନନ୍‌ମାନଂକର ଲଣ୍ଡିତ ମସ୍ତକ ଦେଖିବାକୁ ତାକୁ ଭାରି ମଜା ଲାଗୁଥିଲା । ଯେତେବେଳେ ଆମର ସେଇ ଦୃଶ୍ୟ ମନେ ପଡ଼ୁଥିଲା, ଆମେ ବହେ ହସୁଥିଲୁ ।

ରାଜାର ଅନୁରୋଧ ଅନୁସାରେ ପାଇଖାନା କାନ୍ଥରେ ଅଙ୍ଗାରରେ ସେ ଯାହାସବୁ ଲେଖିଥିଲା ମୁଁ ପଢ଼ିଲି । ସେ ଲେଖିଥିଲା ଯେ: ସହକାରୀ ତତ୍ତ୍ୱାବଧାରିକା ଗୋଟିଏ ମର୍କଟୀ ଓ ତାଂକ ମୁଣ୍ଡରେ ବୁଦ୍ଧି ବଦଳରେ ଥିଲା ଗୋବର । ସେ ପୁଣି ଲେଖିଥିଲା ଯେ—ଦିନେ ନନ୍‌ମାନେ ମାରାତ୍ମକ ଶେଷ ଅବସ୍ଥା ଭୋଗ କରିବେ, କାରଣ ଯେତେ ଯାହା କଲେ ବି, ସର୍ବଦ୍ରଷ୍ଟା ଈଶ୍ୱରଂକ ଆଖିକୁ ସେମାନେ ଫାଂକଦେଇ ପାରିବେ ନାହିଁ ।

# ବାର

## ଆନ୍ନିର ପ୍ରେମିକ...

ଅନ୍ତେବାସିମାନଙ୍କ ପାଇଁ ଛୁଟିଦିନଗୁଡ଼ିକରେ ପାଠପଢ଼ାର ତିନଟି ଅଲଗା ଅଲଗା ସମୟ ଧାର୍ଯ୍ୟ କରାଯାଇଥିଲା । ସକାଳେ ଘଣ୍ଟାଏ, ଅପରାହ୍ଣରେ ଦୁଇଘଣ୍ଟା ଓ ସନ୍ଧ୍ୟାରେ ସାତଟାରୁ ଆଠଟା ଭିତରେ ଘଣ୍ଟାଏ । ସେଇ ସମୟରେ ପିଲାମାନଙ୍କଠାରୁ ଏକାନ୍ତ ନୀରବତା ଆଶା କରାଯାଉଥିଲା ।

ଜଣେ ଲେଖାଁ ନନ୍ ପାଠପଢ଼ା ଠିକ୍ ଚାଲିଛି କି ନା ଦେଖିବା ପାଇଁ ଜଗି ରହୁଥିଲେ । କୌଣସି ବୁଣାବୁଣି କାମ କରୁଥିଲେ ବି କେଉଁ ପିଲା ବହି ଉପରୁ ଆଖି ଉଠାଇ ଅନ୍ୟ କାହାକୁ ଚାହୁଁଛି କି କଣ, ସେ ବିଷୟରେ ଠିକ୍ ନଜର ରଖୁଥିଲେ । କେବଳ ସିଷ୍ଟର୍ ଥେକ୍ଲା ଦାୟିତ୍ୱରେ ରହିଲେ ପିଲାମାନେ ନିଜକୁ ଭାଗ୍ୟବାନ୍ ମନେ କରୁଥିଲେ । କାରଣ ସେ ଥିଲେ ନମ୍ର ସ୍ୱଭାବର । ସେ ସିଲେଇ କରିବା ଓ ପଢ଼ିବାରେ ମଗ୍ନ ରହୁଥିଲେ, ଓ ପିଲାଙ୍କର ସାମାନ୍ୟ ଏପଟ ସେପଟ ହେବାଟାକୁ କ୍ରୂର ଦୃଷ୍ଟିରେ ଦେଖୁ ନ ଥିଲେ ।

ଦିନେ ପଢ଼ା ସମୟରେ ମୋ ନିକଟରେ ବସିଥିଲେ ଆନ୍ନି । ସେ ପନ୍ଦର ବର୍ଷର ବାଳିକା ସେତେବେଳେ । ବହି ବଦଳରେ ସେ ଲୁଚେଇ ଲୁଚେଇ ଚିଠିଟିଏ ପଢ଼ୁଥିଲା, ଓ ପଢ଼ୁଥିଲା ବାରମ୍ବାର । ମୁଁ ଜାଣିପାରିବାରୁ ସେ ମୋତେ ଆସ୍ତେ ପାଟିରେ କହିଲା—"ନିଅ ପଢ଼ ।" ଚିଠିଟି ସେ ଗୋଟିଏ ପୁଅ ପିଲା ନିକଟରୁ ପାଇଥିଲା । ତାର କଥାନୁସାରେ, ସେ ପିଲାଟି ଥିଲା ବେଶ୍ ଧନୀ, ଓ ସୁନ୍ଦର । ବେଶ୍ ଡେଙ୍ଗା ଓ ଗୌରବର୍ଣ୍ଣର । ଆନ୍ନି କହିଲା—"ମୋତେ ସବୁବେଳେ ଏମିତି ଚିଠି ଲେଖୁଚି ସେ ।" କହିଲାବେଳେ, ତା' ମୁହଁ ରଙ୍ଗାପଡ଼ି ଯାଇଥିଲା ।

ଯଥେଷ୍ଟ କୌତୂହଳତାର ସହିତ ମୁଁ ତାର ଚିଠିଟି ନେଇ ପଢ଼ିଥିଲି । ପଢ଼ୁ ପଢ଼ୁ ମୁଁ ଶିହରି ଉଠିଥିଲି ସେତିକିବେଳେ । ତାର ପ୍ରେମିକର ଧାରଣାରେ—ଆନ୍ନି ଥିଲା ଜଗତର ଶ୍ରେଷ୍ଠ ସୁନ୍ଦରୀ । ଅପଣାର ବାହୁ ଭିତରେ ସେ ଆନିକୁ ଆଲିଙ୍ଗନ କରିବାକୁ ଚାହୁଁଥିଲା; କେବଳ ତ ଆଲିଙ୍ଗନ ନୁହେଁ ଆନିର

ସମଗ୍ର ଓଠରେ ପ୍ରୀତିଭରା ଚୁମ୍ବନ ଦେବା ଥିଲା ତାର ଅଭିଳାଷ । ପ୍ରେମିକଟି ଲେଖିଥିଲା—"ପ୍ରିୟତମା ଆନି, ମୋ ପ୍ରତି ନିର୍ଦ୍ଦୟ ହୁଅନା । ଥରୁଟିଏ ଯଦି ସୁଯୋଗ ଦିଅନ୍ତ ତା'ହେଲେ ମୁଁ ତୁମକୁ କେତେ ଭଲପାଏଁ ତା'ର ପ୍ରମାଣ ଦେଇପାରନ୍ତି ।" ଚିଠିଟି ପଢ଼ିସାରିବା ପରେ ଆନି ମୋତେ ପଚାରିଲା—"ଏଥିରୁ କଣ୍ ତୁମେ ଅନୁମାନ କରୁଚ ? ଏହା ପ୍ରେମିକଟିର ଦୁଃସାହସ ନୁହଁ କି ?" ମୁଁ କିଛି ନ କହି ସେତେବେଳେ ଖାଲି ମୁଣ୍ଡ ହଲାଇଥିଲି ।

ଆନିର ମୁହଁଟିକୁ ମୁଁ ଏକ ନୂତନ ଆଗ୍ରହରେ ଲକ୍ଷ୍ୟ କରିବାକୁ ଲାଗିଲି । ସେତେବେଳେ ତା' ମୋତେ ବଡ଼ ସରଳ ଲାଗୁଥିଲା । ସେ ଥିଲା ପାତଳୀ । ତାର ଦାନ୍ତର ଆକୃତିରେ ସମତା ନ ଥିଲା । ଶ୍ୟାମଳ ବର୍ଣ୍ଣର ଚର୍ମରେ କଳା ଚିହ୍ନସବୁ ଥିଲା ସ୍ପଷ୍ଟ । କେଶରାଶି ତେଲ ଯୋଗେ ଉଜ୍ଜ୍ୱଳ ଥିଲା; ପୃଷ୍ଠଦେଶରେ ଝୁଲୁଥିଲା ଦୁଇଟି ବେଣୀ । ଏପରି ଏକ ବାଳିକାର ପ୍ରେମ ପାଇଁ ଅଧିର ପ୍ରାୟ ହୋଇ ଯାଇଥିଲା ଧନୀ-ପୁତ୍ର ଜଣକ । ସେଇ ମୁହୂର୍ତ୍ତରେ ପ୍ରେମିକଟି ପ୍ରତି କାହିଁକି କେଜାଣି ମୋର ଦୟା ହେଲା । ବିଚରା ! କିନ୍ତୁ ମନର ଭାବନା ଗୁପ୍ତ ରଖି ମୁଁ ଆନିକୁ କହିଲି—"ତୁମେ ତାକୁ ତୁମର ସାଧ୍ୟମତେ ପ୍ରେମର ପ୍ରତିଦାନ ଦେବାକୁ ଚେଷ୍ଟାକର ପ୍ରେମରେ ।"

ଆନି ପଚାରିଲା—"ତୁମେ ପ୍ରେମରେ ବିଶ୍ୱାସ କର ।" କିନ୍ତୁ ମୋତେ ଉତ୍ତର ଦେବାର ସୁବିଧା ନ ଦେଇ ସେ ତାର କାନ୍ଧ କୁଞ୍ଚିତ କରି ଟିକିଏ ହସି ଦେଇ କହିଲା—"ତୁମେ ତଥାପି ପିଲା । ତୁମେ କୁଆଡ଼ୁ ଜାଣିବ ପ୍ରେମର ମାନେ ?" ପରେ ଯେତେବେଳେ ମୁଁ ଶାରଦାକୁ ଆନିର ପ୍ରେମ ବିଷୟରେ କହିଲି, ସେ ତ ସାଂଘାତିକ ରାଗିଗଲା । ସେ ମୋତେ ଦୃଢ଼ ଭାବରେ ବାରଣ କରି କହିଲା—"ଦେଖ, ତୁମେ ସେଇ ସାଂଘାତିକ ଝିଅଟା ସହିତ ଆଉ କେବେ ବି କଥା କହିବ ନାହିଁ । ଏଣିକି ପଢ଼ା ସମୟରେ ମୋ ନିକଟରେ, ନ ହେଲେ ମୀନାକ୍ଷୀ ନିକଟରେ ବସିବ । ବାଜେ ଓ ଫାଜିଲ୍‌ମାନଙ୍କ ସହିତ ମିଳାମିଶା କର ନା ।"

କିନ୍ତୁ ଆନି ମୋତେ ଦିନୁଟିଏ ବି ଛାଡ଼ିଲା ନାହିଁ । ମୋ ସାଙ୍ଗେ ସାଙ୍ଗେ ଲାଗି ରହିଲା । ରବିବାର ଦିନ ଅପରାହ୍ଣରେ ସେ ମୋତେ ଗୋପନରେ ଗାଧୁଆ ଘର ଭିତରକୁ ଡାକ ନେଉଥିଲା । ସେଠି କାନ୍ଥକୁ ଆଉଜି ସେ ମୋତେ ତାର ପ୍ରେମିକ ବିଷୟରେ କୁହେ । ଦିନେ ଆଉ ଖଣ୍ଡିଏ ଚିଠି ଦେଖେଇ-ଥିଲା । ଯେଉଁ ଚିଠିରୁ ସେମାନେ ଆଉରି କେଇ ପାଦ ଆଗେଇ ଥିବାର ସ୍ପଷ୍ଟ

ସୂଚନା ଦିଉଥିଲା । ଆନିର କୋମଳ ବର୍ତ୍ତୁଳ ବକ୍ଷୋଜ ଯୁଗଳର ସ୍ପର୍ଶ ନ ପାଇଲେ ସେ ମରିଯିବ ବୋଲି ପ୍ରେମିକଟି ଲେଖିଥିଲା । ମୁଁ ତ ପଢ଼ି ଡରି ଯାଇଥିଲି । ଆନି କହିଲା—"ମୁଁ କହୁଥିଲି ନା, ପିଲାଟା ଗୋଟାଏ ଅପଦାର୍ଥ ରୂପପିପାସୁ ମାତ୍ର । ସେ ମୋତେ ଭଲପାଏନା । ସେ କେବଳ ମୋ ଦେହଟା ଚାହେଁ,—ଦେହଟା..."

ଏବଂ ମୁଁ ଚାହିଁ ରହିଲି ଆନିର ସ୍ତନଯୁଗଳକୁ, ଯେଉଁ ଦୁଇଟି ଥିଲା ଅବର୍ତ୍ତୁଳ । ଆକର୍ଷଣ କଲାଭଳି ଆକୃତି ତାର ନ ଥିଲା । ମୁଁ କହିଲି—"ତାଙ୍କୁ ଆଉ ଚିଠିଦେବାକୁ ବାରଣ କରିଦିଅ । ତାଙ୍କୁ କହିଦିଅ ଯେ ଅଧିକ ହେଲେ ତୁମେ ତାଙ୍କ କଥା ମଦର ସୁପିରିଅର୍‌ଙ୍କୁ ଜଣାଇ ଦେବ ।"

ଅନ୍ୟଦିନେ—

ଆନି ମୋତେ ଅଲଗା ଆଡ଼କୁ ଡାକି ନେଇ ତାର ଉପର ଓଠରେ ହୋଇଥିବା ଗୋଟିଏ ଲାଲ୍ ଦାଗ ଦେଖାଇ କହିଲା—"ଜାଣିଚ, ମୋତେ କାମୁଡ଼ି ଦେଇଚି ।" ଏତିକି କହି ସେ ବଡ଼ ବିହ୍ୱଳିତ ଜଣା ପଡ଼ିଲା ।

"କିଏ କାମୁଡ଼ିଲା ?"—ମୁଁ ପଚାରିଲି ।

"ସେଇ ।"

"କିଏ ସେ ?"—ମୁଁ ପ୍ରଶ୍ନ କଲି ।

"ସେଇ ମୁଁ, ମୋର ପ୍ରେମିକ"—ଆନି କହିଲା । ମୁଁ ଆଚମ୍ବିତ ହୋଇ ତା' ଓଠଟିକୁ ଚାହିଁଥାଏ । ସେ ପୁଣି କହିଲା—"ଗତ କାଲି ରାତିରେ ସେ ଆସିଥିଲା । ପାଚେରି ଡେଇଁ । ତୁମେ ସବୁ ସେତେବେଳେ ଶୋଇ ପଡ଼ିଥିଲ । ରାତି ଥିଲା ନୀରବ, ନିଃଶବ୍ଦ । ସେ ମୋର ଶେଯ ନିକଟକୁ ଆସିଥିଲା ।"

"ଏ ତ ବଡ଼ ଖରାପ କଥା"—ମୁଁ କହିଲି—"ତୁମେ ଏ ବିଷୟ ମଦର ସୁପିରିଅର୍‌ଙ୍କୁ କହି ଦେଉନ କାହିଁକି ? ଆଜି କାମୁଡ଼ିଚି, ଦିନେ ହୁଏତ ତୁମକୁ ସେ ମାରି ଦେଇପାରେ !"

ମୋ କଥା ଶୁଣି ଆନି ହସିଲା । ତାର ହସ ଥିଲା ରହସ୍ୟପୂର୍ଣ୍ଣ । ତା'ପରେ ସେ କହିଲା—"ତୁମେ ବାସ୍ତବିକ ପିଲା, ପ୍ରେମ ଓ ଭଲପାଇବା ବିଷୟ ବୁଝିବା ତୁମ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ତୁମେ ହେଉଛ ଏକମାତ୍ର ଯାହା ଆଗରେ ମୁଁ ମୋର ଗୋପନ କଥା ବିଶ୍ୱାସର ସହିତ କହି ପାରିବି ।"

ବର୍ଷର ଶେଷ ଆଡ଼କୁ, ତୃତୀୟ ଟର୍ମ୍ ସରିବା ପୂର୍ବରୁ ଛାତ୍ରୀ-ଆବାସରୁ ଆନ୍ନିକୁ ବହିଷ୍କାର କରାଗଲା । ତାର ବାହାରିଯିବା ପରେ ନନ୍‌ମାନେ କୌଣସି ସଙ୍ଗତ କାରଣ ଦର୍ଶାଇ ପାରି ନ ଥିଲେ ।

ପରେ ଶାରଦାଠାରୁ ଜାଣିଲି ଯେ ଆନ୍ନି ତାର ଆପଣା ଛାଆଁର ଜଗତରେ ବିଚରଣ କରୁଥିଲା । କେହି ତାକୁ ଚିଠି ଲେଖି ନ ଥିଲେ । ସେସବୁ ନିଜେ ଲେଖି ନିଜେ ପଢ଼ି ଆତ୍ମ-ବିସ୍ମୃତ ହେଉଥିଲା । ସେ କଥା ଶୁଣି ହସିଲା ମୀନାକ୍ଷୀ, କିନ୍ତୁ ମୁଁ ହସି ପାରି ନ ଥିଲି । ଆନ୍ନି ପ୍ରତି କେମିତି ଗୋଟାଏ ବିଶ୍ୱସ୍ତତା ମୋତେ ଆଚ୍ଛନ୍ନ କରି ରଖିଥିଲା । ମୁଁ ନୀରବ ରହିଲି । ନିଜର ଲମ୍ବା ବାଳ କୁଣ୍ଡାଉ କୁଣ୍ଡାଉ ଶାରଦା କହିଲା—"ସେ ଯାଇଚି ଭଲ ହୋଇଚି । ଆମର କୁନି ଉଲ୍‌ବା ପକ୍ଷରେ ସେ ଗୋଟିଏ କୁ-ପ୍ରଭାବ ଥିଲା ।"

ସେଇ ବିଦ୍ୟାଳୟଟିରେ ତିନିପ୍ରକାରର ଅନ୍ତେବାସୀ ଥିଲେ । ପ୍ରଥମ ଶ୍ରେଣୀର ଅନ୍ତେବାସୀମାନଙ୍କୁ ପ୍ରାତଃଭୋଜନରେ କଚ୍ଚା ଶସ୍ୟ ପ୍ରସ୍ତୁତ ଖାଦ୍ୟ ସହିତ ଅଣ୍ଡା ଓ ପାଁଉରୁଟିର ଟୋଷ୍ଟ, ମଧ୍ୟାହ୍ନ ଭୋଜନରେ ମାଂସ ପ୍ରଭୃତି, ଅପରାହ୍ନରେ ଚା' ଓ କିଛି ସ୍ନାକ୍‌ସ୍ ଓ ରାତ୍ରିଭୋଜନ ଶେଷରେ ପୁଡିଂ ଦିଆଯାଉ ଥିଲା । ଦ୍ୱିତୀୟ ଶ୍ରେଣୀର ଅନ୍ତେବାସିନୀମାନଙ୍କୁ ଅଣ୍ଡା ଇତ୍ୟାଦି ପ୍ରାତଃଭୋଜନରେ ଦେବାର ବ୍ୟବସ୍ଥାଥିଲା । ମଧ୍ୟାହ୍ନରେ ସେମାନଙ୍କୁ କେବଳ ଭାତ ଓ ମାଛ ଦିଆଯାଉଥିଲା । ରାତି ଭୋଜନର ଶେଷରେ ସେମାନଙ୍କୁ ପୁଡିଂ ଦିଆଯାଉନଥିଲା । ତୃତୀୟ ଶ୍ରେଣୀର ଅନ୍ତେବାସୀମାନଙ୍କକଥା କହିଲେ ନ ସରେ । ସେମାନଙ୍କୁ ସକାଳୁ ମକାର ଯାଉ, ମଧ୍ୟାହ୍ନରେ ଭାତ ଓ ରାତିରେ ପୁଣି ମକାଯାଉ ପରିବେଷଣ କରାଯାଉଥିଲା । ଏସବୁ ବ୍ୟତୀତ ଆଉରି ଏକ ଶ୍ରେଣୀର ଅନ୍ତେବାସୀ ଥିଲେ ଯାହାଙ୍କୁ ଆଉରି କଦର୍ଯ୍ୟ ଖାଦ୍ୟ ଦିଆଯାଉଥିଲା । ପାଇଖାନା ପରିଷ୍କାର କରିବା, ଝାଡୁ ଦେବା, ପତର ଗୋଟେଇବା, ଜାଳେଣି କାଠ ହାଣିବା ଓ ରୋଷେଇରେ ସାହାଯ୍ୟ କରିବା ଯେଉଁ ପିତୃମାତୃହୀନ ମାନଙ୍କର କାମ ଥିଲା, ସେମାନଙ୍କୁ ମାତ୍ର ଦୁଇଓଳି ଯାଉ ଖାଇବାକୁ ଦିଆଯାଉଥିଲା ସେଠାରେ ।

ସେମାନଙ୍କର ପରିଧେୟର ରଙ୍ଗ ଥିଲା ଧଳା ଓ ମୁଣ୍ଡରେ ଥିଲା ନଡ଼ିଆ ତେଲର ବାସ୍ନା । ସେଇ ଛେଉଣ୍ଡମାନେ ପ୍ରାୟ ସବୁବେଳେ ବଡ଼ ବଡ଼ କାଠ ଟବ୍‌ରେ ପାଣି ଭର୍ତ୍ତି କରିବାରେ ବ୍ୟସ୍ତ ରହୁଥିଲେ । ଟବ୍‌ଗୁଡ଼ିକ ଗାଧୁଆ ଘରେ ରହୁଥିଲା ନନ୍ ଓ ଛାତ୍ରୀମାନଙ୍କ ସ୍ନାନ ନିମିତ୍ତ । ସେଥିକରେ ସେମାନେ କ୍ଳାନ୍ତ ଅନୁଭବ କରୁଥିଲେ । ଏଣୁ ନିଜେ ଗାଧୋଇବା ପାଇଁ କୂଅରୁ ପାଣି କାଢ଼ିବାକୁ ତାଙ୍କର ଧୈର୍ଯ୍ୟ ରହୁ ନ ଥିଲା । ଏଣୁ ସେମାନେ ପ୍ରାୟ ସପ୍ତାହରେ ଥରେ ମାତ୍ର ସ୍ନାନ କରୁଥିଲେ ।

ସେଇ ଅନାଥମାନଙ୍କ ମଧ୍ୟରେ ସବୁଠାରୁ ଯେଉଁ ଜଣକ ବୟସ୍କ ଥିଲା ତାର ନାମ ଥିଲା ରକ୍‌ ମାରଆନ୍‌ । ସେ ସେତେବେଳକୁ ସତୁରି ବର୍ଷର ବୁଢ଼ୀ । ସେ ପାଛିଆ ନେଇ ରୋଷେଇ ସଉଦା କିଣିବାକୁ ବଜାର ଯାଉଥିଲା ।

ତାକୁ ଦେଖିଲେ ବତକମାନେ ତା' ପଛେ ପଛେ ନାନା ପ୍ରକାରର ଶବ୍ଦ କରି ଗୋଡ଼ଉଥିଲେ । ସେ ସେଇ ପକ୍ଷୀମାନଙ୍କୁ ମାଲୟାଲମ୍‌ ଭାଷାରେ କେତେ ରକମର ଗେହ୍ଲା କଥା କହି ଶାନ୍ତ କରୁଥିଲା । ତାର ମତରେ ପକ୍ଷୀ-ମାନେ ତାକୁ ଡାକନ୍ତି—ଆମ୍ମାଚ (ମା) । ଦିନେ ତା'କଥା ଶୁଣି ରୋଷେୟାଣୀ ହସିଲା ଓ ତାର ହସ ପକ୍ଷୀମାନଙ୍କ ଶବ୍ଦପରି ଶୁଣାଯାଉଥିଲା । ରୋଷେୟାଣୀର ନାମ ଥିଲା ଫେଲସିଟାସ୍‌ । ତାକୁ ସବୁ ଅନାଥମାନେ ସମ୍ମାନ କରୁଥିଲେ । କାରଣ ସେମାନଙ୍କୁ ଟିକେ କମ୍‌ ବା ବେଶୀ ଖାଇବାକୁ ଦେବାର କ୍ଷମତା ତା' ହାତରେ ହିଁ ରହିଥିଲା । ସେ ବଡ଼ ଦୁଃଖିନୀ ଓ ପାତଳୀ ଥିଲା । ତା' ଦାନ୍ତଗୁଡ଼ିକ ମଇଳା ଓ ବିବର୍ଣ୍ଣ ନଖ ପରି ଦିଶୁଥିଲା । ସେଗୁଡ଼ିକ ଥିଲା ତୀକ୍ଷ୍ଣ । ପୁଣି ଦିନସାରା ପାନ ଓ ଦୋକତା ଖାଇବା କାରଣରୁ ତାର ଦାନ୍ତସବୁ ବଦରଙ୍ଗୀ ହୋଇ ଯାଇଥିଲା ।

ପ୍ରତି ଛୁଟି ଶେଷରେ ଆମେମାନେ ପ୍ରାୟ ସମସ୍ତେ ଘରୁ କିଛି ମିଠା, ଫଳ ଓ କଦଳୀ ନେଇ ହଷ୍ଟେଲ୍‌କୁ ଫେରୁଥିଲୁ । ଥରେ ମୁଁ ଛୁଟି ଶେଷରେ ଘରୁ ଫେରିଲାବେଳେ ବୁଢ଼ୀ-ମା ମୋ ସାଙ୍ଗରେ କିଛି ହଳଦିଆ ରଙ୍ଗର ପାଚିଲା କଦଳୀ ଦେଇଥିଲେ । ମୁଁ ସେଗୁଡ଼ିକୁ ଡ୍ରେସିଂ ଟେବୁଲ୍‌ ଉପରେ ଥୋଇ ଦେଇଥିଲି । ଦିନେ ଖୋଜିଲା ବେଳକୁ ପାଇଲି ନାହିଁ । ଜାଣିଲି, କୌଣସି ଜଣେ କ୍ଷୁଧାତୁରା ସେଗୁଡ଼ିକୁ ଆମେ ସବୁ ଶୋଇଥିଲାବେଳେ ଆମ ରୁମ୍‌କୁ ଚୁପ୍‌ଚାପ୍‌ ଆସି ନିଶ୍ଚୟ ଖାଇ ଦେଇଛି । କାରଣ,ଚୋପାଗୁଡ଼ିକ ବାହାରେ ପଡ଼ିଥିବା ଦେଖାଗଲା ।

ମୁଁ ଏ ବିଷୟ କାହାକୁ ଜଣାଇଲି ନାହିଁ । କିନ୍ତୁ ସହକାରୀ ତତ୍ତ୍ୱାବ-ଧାରିକା କୌଣସି ସୂତ୍ରରୁ ଏହି ଘଟଣା ଠଉରାଇ ନେଲେ ଏବଂ ଗୋଟାଏ ବଡ଼ ଧରଣର କାଣ୍ଡ କଲେ । ପ୍ରାର୍ଥନା ପରେ ସେ ଶୁଣାଇ ଦେଲେ ଦୋଷୀ ସେଣ୍ଟ୍‌ ଆନ୍‌ଥୋନିଙ୍କ ପ୍ରଭାବରେ ତିନିଦିନ ମଧ୍ୟରେ ପାଗଳିନୀ ହୋଇଯିବ । ଦୀର୍ଘ ଦୁଇଦିନ ଧରି ଆମେ ସବୁ ପାଗଳାମିର ଚିହ୍ନ ପାଇବା ଆଶାରେ ପରସ୍ପରର ମୁହଁକୁ ପରୀକ୍ଷା କରିବାକୁ ଲାଗିଲୁ ।

ଅବଶେଷରେ ଦିନେ ସନ୍ଧ୍ୟାରେ ଗୋଟିଏ ଖିତ-ନିଦ୍ରା ବାଳିକା ସେଣ୍ଟ୍ ଆନ୍ଥୋନିଙ୍କ ମୂର୍ତ୍ତି ନିକଟକୁ ଯାଇଁ କାନ୍ଦିବା ଦେଖାଗଲା । ନନ୍‌ମାନେ ଅବସ୍ଥା ଦେଖି ସେଣ୍ଟ୍ ଆନ୍ଥୋନିଙ୍କୁ ସେଇ ଅଳ୍ପବୟସ୍କ ଝିଅଟିର ଦୋଷ କ୍ଷମା କରିଦେବା ପାଇଁ ପ୍ରାର୍ଥନା କଲେ । ଝିଅଟି ଭାରି ମୋଟା ଥିଲା ।

ଖାଇବା ପ୍ରତି ଥିଲା ତାର ବଡ଼ ଆଗ୍ରହ । ସମ୍ଭବତଃ ଛାତ୍ରୀ-ଆବାସରେ ପରିବେଷିତ ଖାଦ୍ୟରେ ସେ ସନ୍ତୁଷ୍ଟ ହୋଇପାରୁ ନ ଥିଲା । ମଦର୍ ସୁପିରିଅର୍ ତାକୁ ସତର୍କ କରିଦେଲେ । ସେଥିରେ ତାର ମନ ବିଗିଡ଼ି ଗଲା । ପରିଶେଷରେ ଦିନେ ସେ ସବୁଦିନ ପାଇଁ ହଷ୍ଟେଲ୍ ଛାଡ଼ି ଘରକୁ ଚାଲିଯାଇଥିଲା ।

ଅନେକ ସହଜ ଓ ସାଧାରଣ କଅଁଳ-କୁମାରୀଙ୍କ ମନକୁ ନଷ୍ଟ-ଭ୍ରଷ୍ଟ କରିଦେଉଥିଲା ଆନ୍ତରିକ ପାପବୋଧ । ଯଦି ପାପର ମରୁଡ଼ି ଦେଖାଦିଏ, ତେବେ କୌଣସି ନା କୌଣସି ଉପାୟରେ ପାପ ଉତ୍ପାଦନ କରିବାକୁ ପଡ଼ିବ ଯେମିତି । କାରଣ ପାପୀମାନଙ୍କୁ କ୍ଷମାଦେବା ଏକ ଧର୍ମଗତ ବ୍ୟାୟାମ ସଦୃଶ । ଯେଉଁମାନେ ଉତ୍କଟ ଭାବରେ ଧର୍ମାନୁଗତ ତାଙ୍କ ପକ୍ଷରେ ପାପୀକୁ କ୍ଷମା ଦେବାଟାହିଁ ଏକ ପ୍ରିୟ କାର୍ଯ୍ୟ ।

# ତେର

## ନନ୍‌ମାନେ ଆମ ଶଠି ଯାଞ୍ଚ୍ କରୁଥିଲେ···

ଥରେ ହଷ୍ଟେଲ୍‌ରେ ମୁଁ ପୀଡ଼ିତ ହୋଇପଡ଼ିଲି । କ୍ରମେ ମୋ ଦେହସାରା ଛୋଟ ଛୋଟ ଦାନାସବୁ ବାହାରି ପଡ଼ିଲା । ନନ୍‌ମାନେ ମୋତେ ଘରକୁ ପଠାଇ ଦେବାକୁ ସିଦ୍ଧାନ୍ତ କଲେ । ପୁନ୍ନାମା ନାମଧାରିଣୀ ଜଣେ ପ୍ରୌଢ଼ା ଅବିବାହିତା ମୋତେ ସାଙ୍ଗରେ ନେଇ ପହଞ୍ଚେଇ ଦେବାକୁ ଯାଇଥିଲା । ଶାରଦା ମୋ ମୁହଁରେ ଭଲକରି ପାଉଡର୍ ବୋଳିଦେଲା, ଯେମିତି ନାଲି ଚିହ୍ନଗୁଡ଼ିକ ଜଣା ନ ପଡ଼ନ୍ତି । ମୁଣ୍ଡବାଳକୁ ଭଲକରି କୁଣ୍ଡାଇ ପଛରେ ହଳଦିଆ ଓସାରିଆ ରିବନ୍ ବାନ୍ଧିଦେଲା । ପୁନ୍ନାମା ଓ ମୁଁ ଗଲୁ ବସ୍‌ରେ । ବାଟସାରା ଯାତ୍ରୀମାନେ ମୋ କଥା ପଚାରୁଥିଲେ । ପୁନ୍ନାମା ସେମାନଙ୍କୁ ଧୈର୍ଯ୍ୟର ସହିତ ବୁଝାଇ ଚାଲିଥିଲା

ଯେ—ମୋର ମିଲିମିଲା ହେଉଛନ୍ତି । ଏକପ୍ରକାର ମାଛଖାଇ ସାମାନ୍ୟ ଏଲର୍ଜି ବାହାର ପଡ଼ିଚି । ଦସ୍‌ର କଣ୍ଡକ୍ଟର୍ ଆମପ୍ରତି ସହାନୁଭୂତିଶୀଳ ଥିଲି । ସେ ପୁନାମାଙ୍କୁ ଭଉଣୀ ବୋଲି ସମ୍ବୋଧନ କରୁଥିଲି, ଯଦିଓ ପୁନାମା ସହିତ ସେଇ ଥିଲି ତାର ସର୍ବପ୍ରଥମ ସାକ୍ଷାତ ।

ମୋତେ ଦେଖି ବୁଢ଼ୀ-ମା ଆଚମ୍ବିତ ହୋଇଗଲେ । ପୁନାମା ବୁଝେଇ ଦେଲି—'ବ୍ୟସ୍ତ ହୁଅନ୍ତୁ ନାହିଁ । ଟିକିଏ ମିଲିମିଲା ବାହାର ପଡ଼ିଚି ।' ମୁଁ ପହଞ୍ଚିବାର ଦିନକ ପୂର୍ବରୁ ମୋ ଭାଇ ମିଳିମିଲାରେ ଆକ୍ରାନ୍ତ ହୋଇ ହଷ୍ଟେଲରୁ ନଳିପତି ଭବନକୁ ଆସି ସାରିଥିଲେ । ବୁଢ଼ୀ-ମା ମୋତେ ଉପରକୁ ନେଇଗଲେ ମଝି ବଖରାକୁ । ସେଠି ଦେଖିଲି, ମୋ ଭାଇ ମୋହନ ଦାସ ବିଛଣାରେ ଶୋଇ H.G. Wells (ଏଚ୍. ଜି. ଓ୍ୱେଲ୍‌ସ୍)ଙ୍କ ବହି ପଢୁଛନ୍ତି । ମିଳିମିଲା ବାହାରି ତାଙ୍କ ମୁହଁ ଲାଲ୍ ଦିଶୁଥାଏ । ମୋତେ ଦେଖି ଟିକିଏ ହସି ଭାଇ କହିଲେ—"ତୁ ବି ଆସିଗଲୁ ନା ?"

ସବୁବେଳେ ଆମ ଦୁହିଙ୍କର ପ୍ରାୟ ଏକାସାଙ୍ଗରେ ଦେହ ଖରାପ ହେଉଥିଲା । ପିଲାଦିନେ କଲିକତାରେ ଥିଲାବେଳେ ବି ସେଇକଥା । ଏକା ସମୟରେ ଦୁହିଙ୍କୁ ଜର ହେଉଥିଲା । ଯାହା ଫଳରେ ବିଶ୍ରାମ କାଳଟିକୁ ଆମେ ଦୁହେଁ ଏକାଠି ଛବି ଆଙ୍କି ଅଥବା ରୋଗ ଶଯ୍ୟାରେ ବସି ଆଲବମ୍‌ରେ ଷ୍ଟାମ୍ପ୍ ଚଟେଇ ଚଟେଇ ବେଶ୍ ଉପଭୋଗ କରୁଥିଲୁ । ମୋର ବ୍ୟକ୍ତିଗତ ଜୀବନରେ କିଏ 'ହିରୋ' ବା 'ଆଦର୍ଶ ବ୍ୟକ୍ତି' ବୋଲି ଯଦି ପ୍ରଶ୍ନ କରାଯାଏ; ତେବେ ମୁଁ କହିବି ସେଇ ହିରୋଟି ମୋର ଭାଇ । କାରଣ ସେ ଯେଉଁ ସ୍କୁଲରେ ଓ ଯେଉଁ ଶ୍ରେଣୀରେ ପଢୁଥିଲେ ସବୁବେଳେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସ୍କୁଲ୍‌ର ସବୁ ପୁରସ୍କାର ତାଙ୍କୁ ମିଳୁଥିଲା । ସେ ଜାତୀୟ ନେତାମାନଙ୍କର ଚମତ୍କାର ବ୍ୟଙ୍ଗ-ଚିତ୍ର ଆଙ୍କି ପାରୁଥିଲେ ଓ ହାସ୍ୟରସାତ୍ମକ ଲେଖା ରଚନା କରିପାରୁଥିଲେ । ତାଙ୍କର ବକ୍ତୃତା ମଧ୍ୟ ଆକର୍ଷଣୀୟ ଥିଲା । ତାଙ୍କର ସ୍ୱରଭଙ୍ଗୀ ଏମିତି ଅପୂର୍ବ ଥିଲା ଶ୍ରୋତାମାନଙ୍କୁ ସେ ଆପଣାର ଚିନ୍ତା ଓ ବକ୍ତବ୍ୟ ଆଡ଼କୁ ଟାଣିଆଣି ପାରୁଥିଲେ ; ବାସ୍ତବିକ, ସେ ଜଣେ ବିଚକ୍ଷଣ ରାଜନୈତିକ ନେତା ହୋଇ ପାରିଥାନ୍ତେ । କିନ୍ତୁ ସେ ଚିକିତ୍ସା-ବିଜ୍ଞାନ ଆଡ଼କୁ ଚାଲି ପଡ଼ିଲେ । ଅବଶ୍ୟ, ସେ ଜଣେ ସଫଳ ଚିକିତ୍ସକ ହୋଇ ପାରିଛନ୍ତି ।

ବଡ଼ ହେଲେ ମୁଁ ଆଇନ୍ ପଢ଼ିବି ବୋଲି ଭାଇଙ୍କୁ କହୁଥିଲି । କାରଣ ସେତେବେଳେ ଆଇନ୍-ଜୀବୀମାନେ ବହୁତ ପଇସା ପାଉଥିଲେ । ବଡ଼

ଆଡ଼ମ୍ବରରେ ରହିପାରୁଥିଲେ । ଜଣଜଣଙ୍କର ତିନି ତିନିଖଣ୍ଡି କାର୍ ଥିଲା । ସେମାନେ ବହୁତ ଚାକର-ଚାକରାଣୀ ମଧ୍ୟ ରଖିପାରୁଥିଲେ । ତାଙ୍କର ସେଇ ସ୍ୱଚ୍ଛଳ ଜୀବନର କାଇଦା ଓ ଫୁର୍ତ୍ତି ମୋତେ ଆକୃଷ୍ଟ କରିଥିଲା ଆଇନ୍-ବୃତ୍ତି ପ୍ରତି । କାରଣ, ମୁଁ ସେତେବେଳେ ଆଡ଼ମ୍ବରକୁ ପସନ୍ଦ କରୁଥିଲି, ଭଲ ପାଉଥିଲି ଐଶ୍ୱର୍ଯ୍ୟକୁ । ସମ୍ଭବତଃ, ସେଇ କାରଣରୁ ଯେତେବେଳେ ନାଟକରେ ଅଭିନୟ କରିବା କଥା ଉଠୁଥିଲା ମୁଁ ମୋ ପାଇଁ ବାଛି ନେଉଥିଲି ରାଣୀ କିମ୍ବା ରାଜଜେମାର ଭୂମିକା । ମଣି ଖଚିତ ଅଲଙ୍କାର, ସିଲ୍କ ବସନ ଓ ଅତର୍‌ର ସମ୍ମୋହନୀ ଶକ୍ତି ମୋର ପ୍ରିୟ ଥିଲା । ସମଗ୍ର ଦେଶର ଶାସନ କ୍ଷମତା ପାଇଥିବା ଓ ନାନାବିଧ ମହାର୍ଘ ଅଲଙ୍କାରରେ ଭୂଷିତ ହୋଇ ଜକଜକ ଦିଶୁଥିବା କୌଣସି ସାମ୍ରାଜ୍ଞୀ ହେବାର ଦିବାସ୍ୱପ୍ନ ମୁଁ ଦେଖୁଥିଲି । ଯେମିତି କି ଗୋଟିଏ ନୁର୍‌ଜାହାନ୍ । ଯେମିତି ବାସ୍ତବରେ ଥିଲି ସେଇମିତି ରହିବାକୁ ଘୃଣା କରୁଥିଲି ମୁଁ । ଦର୍ପଣରେ ମୋର ଛବି ମୋତେ ବଡ଼ କରୁଣ ଦିଶୁଥିଲା । ମୋର କ୍ଷୀଣ ଅଙ୍ଗ ଓ ସରଳ ମୁଖ ଉପରକୁ ବାହାରି ପଡ଼ିଥିବା ଦାନ୍ତସବୁକୁ ଦେଖିଲେ ମୋର ନିଜପ୍ରତି ଘୃଣାଜାତ ହେଉଥିଲା ।

ମୁଁ ଓ ମୋ ଭାଇ ଯେତେବେଳେ ପରସ୍ପର ଠାରୁ ଅଲଗା ହୋଇଗଲୁ, ମୋତେ ବଡ଼ ଏକୁଟିଆ ଲାଗିଲା । ନିଜ ପାଖରେ ନିଜେ ହଜିଗଲି ଭଳି ଲାଗିଲା ମୋତେ । କାରଣ ଏକାନ୍ତ ନୀରବତା ମଧ୍ୟରେ ବି ତାଙ୍କ ଓ ମୋ ଭିତରେ ଏକ ଶୁଦ୍ଧ ଭାବ-ବିନିମୟ ଚାଲିଥାଏ, ଚାଲିଥାଏ ଅଶେଷ ନୀରବ ସଲାପ, ଯେଉଁ ସଂଲାପ ଚାଲିଥାଏ ମାଟି ସହିତ ପବନର କିମ୍ବା ଗଛ-ଲତା ସହିତ ସୂର୍ଯ୍ୟଙ୍କର । ଜଣକର ନୀରବ ସମର୍ଥନ ଆଉ ଜଣକୁ ଶକ୍ତି ଓ ଧୈର୍ଯ୍ୟ ଦାନ କରିଥାଏ । ହଷ୍ଟେଲ୍‌ରୁ ମୁଁ ଭାଇଙ୍କୁ ଦୁଇଖଣ୍ଡି ଚିଠି ଲେଖିଥିଲି । କିନ୍ତୁ ଚିଠିଗୁଡ଼ିକ ନିହାତି ଭାବ-ସ୍ଥାନ ଓ ଆଡ଼ମ୍ବରପୂର୍ଣ୍ଣ ଥିଲା । ଏଣୁ ସେ ଉତ୍ତର ଦେବାକୁ ମନ କରି ନ ଥିଲେ । ତାଙ୍କ ଘରକୁ ଯିବା ପୂର୍ବରୁ ଆମର ସମସ୍ତ ଚିଠି ନନ୍‌ମାନେ ପଢ଼ି ଉଚିତ-ଅନୁଚିତ ବିଚାର ପୂର୍ବକ କଟା-କଟି କରୁଥିଲେ । ଏଠାରେ ଆମେ ସବୁ କୁଶଳରେ ଅଛୁ, ଆମର କିଛି ଅସୁବିଧା ନାହିଁ ଏବଂ ତୁମେ ସବୁ ଭଲଥିବ, ତୁମମାନଙ୍କର ମଙ୍ଗଳ ପାଇଁ ଆମେ ଏଠି ଈଶ୍ୱରଙ୍କୁ ପ୍ରାର୍ଥନା କରୁଛୁ ଏଇପରି ସବୁ ଲେଖିବାକୁ ସେମାନେ ଆମକୁ ବାଧ୍ୟ କରୁଥିଲେ । ମୋର ଚିଠି ପଢ଼ି ଭାଇ ଭାବିଥିବେ ଯେ ମୋର ମୁଣ୍ଡ ଖରାପ ହୋଇଗଲାଣି, ମୋର ସାମାଜିକ ଚେତନା, ମୋର ରାଜନୈତିକ ଅନୁଚିନ୍ତା ଓ ମୋର ଜାଣିବାର ସ୍ପୃହା ସବୁ କୁଆଡ଼େ ଉଭେଇ ଗଲାଣି ।

ପ୍ରଥମେ ପ୍ରଥମେ ଯେତେବେଳେ ମୋର ଅବସ୍ଥା ନିହାତ ଦୟନୀୟ ହୋଇଯାଇଥିଲା ସେତେବେଳେ ଜଣେ ଦୟାଶୀଳ ସହପାଠିନୀର ସହାୟତାରେ ମୁଁ ବାପାଙ୍କ ନିକଟକୁ ଚିଠି ଦେଇଥିଲି । ମୋତେ ସେଇ ହଷ୍ଟେଲ୍ ନାମକ ନର୍କରୁ ଉଦ୍ଧାର କରିବା ପାଇଁ ତାଙ୍କୁ ନିବେଦନ କରିଥିଲି ସେଥିରେ । ନିସ୍ତେଜ ତର୍କାରିର ଆଇଁଷିଆ ଗନ୍ଧ ମୋତେ ଭଲ ଲାଗୁନଥିଲା । ସୁପ୍ ଥିଲା ମୋ ପକ୍ଷରେ ଅଖାଦ୍ୟ ଭଳି, ଥଣ୍ଡା ପାଣିରେ ନିୟମିତ ସ୍ନାନ ଫଳରେ ମୋର ଦେହରେ ଅଧିକାଂଶ ସମୟରେ ବନ୍ଧା-ବନ୍ଧ ହେଉଥିଲା । ମୋର ସେଇ ଅଶ୍ରୁଳ ଚିଠିର କୌଣସି ଉତ୍ତର ବାପା ଦେଇନଥିଲେ । କ୍ରମେ ବର୍ଷେ ବିତିଗଲା । ମୁଁ ମୋର ସାଥୀ-ସାଥୀମାନଙ୍କୁ ଭଲ ପାଇବାକୁ ଲାଗିଲି ଏବଂ ଏକଦା ନର୍କପରି ଲାଗୁଥିବା ଆବାସ କ୍ରମେ ମଧୁରତର ହୋଇଉଠିଲା ।

ତା'ପରେ ବାପା ମୋତେ କଲିକତା ନେଇଗଲେ । ସେଠି ପରିବାର ବର୍ଗଙ୍କ ଗହଣରେ ରହିବାକୁ ହେଲା । ସେତେବେଳେ ପରିବାରର ସଭ୍ୟ ସଂଖ୍ୟା ଛ' ହୋଇ ସାରିଥିଲେ । ମୋ ତଳକୁ ଭାଇଟିଏ ଓ ଭଉଣୀଟିଏ ହୋଇ ସାରିଥିଲେ । ଆମେ ସେତେବେଳେ ଲାନ୍‌ସଡ଼ୋନ୍ ରୋଡ଼ରେ ଗୋଟିଏ ପୁରୁଣା ହାଲଦିଆ କୋଠାରେ ରହୁଥିଲୁ । ଶୋଇବା ବଖରା ଗୁଡ଼ିକ ବେଶ୍ ବଡ଼ ବଡ଼ ଥିଲା, ଛାତ ବେଶ୍ ଉଞ୍ଚା ଥିଲା । ବାରଣ୍ଡାଟିଏ ବି ଥିଲା । ସେଥିରେ ଖାସର୍ ପରଦା ଲାଗିଥିବାରୁ ଛାୟା ପଡ଼ୁଥିଲା ସେଠି । ସଙ୍କୀର୍ଣ୍ଣ ହେଲେ ବି ଘରକୁ ଲାଗି ଛୋଟ ବଗିଚାଟିଏ ଥିଲା । ଆମେ ସେଠାରେ ସିଝୁ ଓ ବାକ୍ସ ଗଛ ରୋପଣ କରୁଥିଲୁ । ପଛ ପଟକୁ ଥିଲା ରୋଷେଇ ଘର । ସେଥିରେ ରାନ୍ଧିବା ପାଇଁ ବଖରାଏ, ଓ କୋଇଲା ପ୍ରଭୃତି ରଖିବାକୁ ବଖରେ ଥିଲା । ତା' ବ୍ୟତୀତ ରୋଷେଇ ଜିନିଷ ରଖିବା ପାଇଁ ଆଉ ଗୋଟିଏ ସଙ୍କୀର୍ଣ୍ଣ ବଖରା ସେଠାରେ ଥିଲା, ଯେଉଁଠି ରାତି ହେଲେ ପୂଝାରୀ ଓ ତା' ସ୍ତ୍ରୀ ଶୋଉଥିଲେ । ପୂଝାରୀର ସ୍ତ୍ରୀ ଥିଲା ଆମର ଆୟା । ଘରର ଉତ୍ତର-ପଶ୍ଚିମ ଦିଗକୁ ମାଝ କେଇଗଜ ଦୂରରେ ଚାକରମାନଙ୍କ ପାଇଖାନା ଥିଲା ଅଲଗା । ସେଠି ଗୋଟାଏ ଗର୍ଭବତୀ ତରୁଣୀର ଭୂତଥିଲା ବୋଲି ସେମାନେ କହୁଥିଲେ । କାଳେ ଗର୍ଭବତୀ ନାରୀଟିଏ ସେଠି ଦଉଡ଼ିଦେଇ ମରିଥିଲା । ଏଣୁ ରାତି ହେଲେ ଚାକରମାନେ ପାଇଖାନା ଯିବାକୁ ଭୟ କରୁଥିଲେ ।

ବୁଢ଼ା ଚପ୍ରାସି ଶୋଉଥିଲା କୋଇଲା ଘରେ ଏବଂ ସେଇଠି କଣରେ ପରସ୍ରା କରୁଥିଲା, ଯାହାର ଦୁର୍ଗନ୍ଧ ଭାସି ଆସୁଥିଲା ରୋଷେଇ ଘର ପର୍ଯ୍ୟନ୍ତ । ସବୁଦିନେ ସେ ଟିକିଏ ହାଣ୍ଡିଆ ପିଉଥିଲା ଓ ଅନ୍ଧାରରେ ଖଟ ଉପରେ ବସି ବାଡ଼ି

ଟାଣୁଥିଲା । ତା’ କୋଠରୀରେ ଗୋଟିଏ ଫୁଙ୍ଗୁଳା ବଲ୍‌ବ୍ ଝୁଲୁଥିଲା, କିନ୍ତୁ ସୁଇଚ୍ ଟିପିବାକୁ ସେ ଘୃଣା କରୁଥିଲା ଯେମିତି । ଦିନେ ମୋତେ ସେ କାରଣ ସ୍ୱରୂପ କହିଥିଲା—“ମୁଁ ତୁମ ମାଆଙ୍କ ପଇସା ଅଯଥାରେ ବ୍ୟୟ କରିବାକୁ ଚାହେଁନା । ମୁଁ ଯେତେବେଳେ ଖାଇବାକୁ ନପାଇ ଭୋକ-ଉପାସରେ କୁନମ୍‌କୁଲମ୍‌ରେ ବୁଲୁଥିଲି ସେତେବେଳେ ତୁମ ବାପା ମୋତେ ବଞ୍ଚାଇଥିଲେ ଓ ଏଠିକି ନେଇ ଆସିଥିଲେ । ବର୍ତ୍ତମାନ ମୁଁ ମୋ ପୁଅର ପାଠ ପଢିବା ପାଇଁ ଓ ଝିଅର ଭଲ ଲୁଗା ପଟା ପାଇଁ ଯଥେଷ୍ଟ ପଇସା ଘରକୁ ପଠାଇ ପାରୁଛି । ତୁମ ବାପା ଜଣେ ରଜା ଲୋକ । ଏ ଦୁନିଆରେ ଭଗବାନଙ୍କ ପରେ ପରେ ମୁଁ ତାଙ୍କୁ ହିଁ ମାନ୍ୟ କରେ । ଏଥର ବୁଝିଲ ?” ମୁଁ ତାର ଖଟ ଉପରେ ବସି ତା’ କଥା ଶୁଣି କେବଳ ମୁଣ୍ଡ ଟୁଙ୍ଗାରିଥିଲି ।

ତାର ବୟସ ସେତେବେଳକୁ ଷାଠିଏ ବର୍ଷରୁ ଯଥେଷ୍ଟ ଅଧିକ ହୋଇ-ସାରିଥିଲା । ଶୀର୍ଣ୍ଣ ଦିଶୁଥିଲା ବି । ଦିନବେଳେ ସେ ବାପାଙ୍କ ଅଫିସ୍‌ରେ କାମ କରୁଥିଲା । କିରାଣୀମାନଙ୍କ ପାଇଁ ଚା’ ତିଆରି କରିବା ଥିଲା ତାର ମୁଖ୍ୟ କାମ । ସନ୍ଧ୍ୟାରେ ସେ ଥିଲା ଆମ ଘରର ଚପ୍ରାସି । କେହି ଆସିଲେ ଫାଟକ ଖୋଲି ଦେଉଥିଲା, ଦି-ପଦ ଇଂରେଜୀ କହି ସ୍ୱାଗତ କରୁଥିଲା ଓ ବେଶ୍ ଶାଳୀନ ଥିଲା ତାର ବ୍ୟବହାର । ଆମର ସମ୍ପର୍କୀୟ ଅଭ୍ରେ ମେନନ୍‌ଙ୍କ ପିତାମାତା ଶ୍ରୀ ଓ ଶ୍ରୀମତୀ କେ. ଏନ୍. ମେନନ୍‌ଙ୍କ ଘରେ ବର୍ଷ କୋଡିଏ ସେ କାମ କରିଥିଲା । ପାଶ୍ଚାତ୍ୟ ସଂସ୍କାର ଅନୁରାଗୀ ଭାରତୀୟମାନଙ୍କୁ କିପରି ସନ୍ତୁଷ୍ଟ ଓ ଖୁସି କରିବାକୁ ପଡ଼େ ତାହା ସେ ସେଇଠାରୁ ଶିଖି ନେଇଥିଲା ।

ଦିନେ ସେ ତା’ ପୁଅ ପାଖରୁ ଚିଠି ପାଇଲା ଯେ ତା’ର ସ୍ତ୍ରୀ ମରିବା ଅବସ୍ଥାରେ । ବୁଢ଼ା ଚପ୍ରାସି ନାକ ଘଷି ଘଷି ମା’ଙ୍କୁ ଜଣେଇଲା ଯେ ସ୍ତ୍ରୀର ଶୁଦ୍ଧିକାମ ପାଇଁ ସେ ଅତଶୀଘ୍ର ଶହେଟଙ୍କା ତା’ର ପୁଅ ନିକଟକୁ ପଠାଇବାକୁ ଚାହେଁ । ଟେଲିଗ୍ରାମ୍ ମନିଅର୍ଡ଼ର୍ ଯୋଗେ ସାଙ୍ଗେ ସାଙ୍ଗେ ଟଙ୍କା ପଠାଗଲା ମଧ୍ୟ । ତା’ପରେ ବୁଢ଼ା ତାର ଖଟ ଉପରେ ବସି ସ୍ତ୍ରୀକୁ ମୃତ ମନେକରି ସେ କେମିତି ଥିଲା, କଣ କରୁଥିଲା ସେସବୁ ବିଷୟ ଅତୀତ କଥା ଗପିଲା ଭଳି ସମସ୍ତଙ୍କୁ କହିଲା ବି ।

କିନ୍ତୁ ସପ୍ତାହକ ପରେ ଆସିଲା ଆଉ ଖଣ୍ଡିଏ ଚିଠି । ସେଇଖଣ୍ଡି ଲେଖିଥିଲା ସ୍ତ୍ରୀ । ବୁଢ଼ା ଯଥା ସମୟରେ ଟଙ୍କା ପଠାଇଥିବାରୁ ସେ କିପରି ଆରୋଗ୍ୟ ହୋଇପାରିଲା, ତାହା ସେ ଲେଖିଥିଲା ଓ ଧନ୍ୟବାଦ ଜଣାଇଥିଲା । ବୁଢ଼ାକୁ

ଚିଠିଟି ପଢ଼ି ଶୁଣାଇଦେବା ମାତ୍ରେ ସେ ଚିଠିକୁ ନିଆଁ ଲଗାଇଦେଲି ଓ ଗାଳିଦେଲି ସେମାନଙ୍କୁ । ସେ କହିଲି ଯେ ସ୍ତ୍ରୀଟା ତାକୁ ଚମତ୍କାର ଭାବରେ ଟଙ୍କାଟଙ୍କା ଠକିଦେଇଛି । ପୁଣି ଯଦି ସିଏ ଅଳ୍ପ କେଇମାସ ଭିତରେ ମରିବାକୁ ଠିକ୍‌କରେ ତେବେ ବୁଢ଼ା ଏଥର କେଉଁଠୁ ଟଙ୍କା ଯୋଗାଡ଼ କରିବ ? ସ୍ତ୍ରୀର ଶୁଦ୍ଧିକ୍ରିୟା ସେତେବେଳେ ଆଉ ହେବ କେମିତି ? ପ୍ରକୃତରେ ବୁଢ଼ାର ଦୁଶ୍ଚିନ୍ତା ବଢ଼ି-ଯାଇଥିଲା । ସେଦିନ ସନ୍ଧ୍ୟାରେ ବାହାରକୁ ଯାଇ ସେ ପ୍ରଚୁର ହାଣ୍ଡିଆ ପିଇ ଆସିଲା ମୁଣ୍ଡ ଥଣ୍ଡା କରିବାପାଇଁ । ମୋତେ ସେ ପଚାରିଲା—“ତୁମେ କହି ତ କାହିଁକି ସେ ଯଥା ସମୟରେ ନ ମରି ବଞ୍ଚିଲା ?” ମୁଁ ଆଉ କଣ କହିଥାନ୍ତି ଯେ ? ଖାଲି ହସିଦେଲି ଟିକିଏ । ସେ ମୁଣ୍ଡ ଝୁଙ୍କାଇ କହିଲା—“ଭଗବାନଙ୍କ ଇଚ୍ଛା ।”

# ଚଉଦ

## ଚାହିଁଥିଲି ଜଣେ ଧନବନ୍ତ ବିଧବାକୁ ବାହାହେବ

ଆମ ବାଲ୍‌କୋନିର ଆୟତକ୍ଷେତ୍ରରୁ ରାସ୍ତା ଓ ରାସ୍ତାର ଅନ୍ୟପଟରେ ଥିବା ଜଣେ ସମ୍ଭ୍ରାନ୍ତ ମହିଳାଙ୍କର ବଗିଚା ଦେଖାଯାଉଥିଲା । ସେ ମହିଳା ଜଣକ ବିଖ୍ୟାତ ଭୋଆଲ୍ ସନ୍ନ୍ୟାସୀ ମକଦ୍ଦମା ସହିତ ସମ୍ପୃକ୍ତ ଥିଲେ । ସେ ତଥାପି ତରୁଣୀ ଥିଲାବେଳେ କୌଣସି ପାର୍ବତ୍ୟ ସହରରେ ତାଙ୍କର ସ୍ୱାମୀ ମରିଯାଇଥିଲେ ।

କିନ୍ତୁ ଅନେକ ବର୍ଷ ଅତିବାହିତ ହୋଇଯିବା ପରେ ଏକଦା ଜଣେ ସନ୍ନ୍ୟାସୀ ଆସିଲା ତାଙ୍କ ଘରକୁ ଓ କହିଲା—“ମୁଁ ସେଇ, ଯାହାକୁ ତୁମେ ମୃତ ବୋଲି ଘୋଷଣା କରିଛ ।”

ତାଙ୍କ ବକ୍ତବ୍ୟ ଅନୁସାରେ—ଶବବାହକମାନେ ତାଙ୍କୁ ଶ୍ମଶାନରେ ଚିତା-ଶଯ୍ୟାରେ ଅଗ୍ନିସଂଯୋଗ ମାତ୍ର କରି ପ୍ରବଳ ବୃଷ୍ଟିପାତ ହେବା ଫଳରେ ଛାଡ଼ି ଚାଲିଯାଇଥିଲେ । ବର୍ଷା ଫଳରେ ନିଆଁ ଲିଭିଗଲା ଓ ତାଙ୍କର ହୃତଚୈତନ୍ୟ ପୁନର୍ବାର ଫେରିଆସିଲା । ଜଣେ ସନ୍ନ୍ୟାସୀ ତାଙ୍କୁ ସେଠାରୁ ନିଜ ଆଶ୍ରମକୁ ନେଇଯାଇ ରଖିଥିଲେ । ତାଙ୍କର ଯତ୍ନରେ ସେ ଆରୋଗ୍ୟ ହେଲେ ଓ ପୁନର୍ଜୀବନ ଲାଭ କଲେ ଯେମିତିକି । ସେ ମଧ୍ୟ ସନ୍ନ୍ୟାସ ବ୍ରତ ଆଚରଣ କଲେ, ସେଇଠି

ରହିଗଲେ । କିନ୍ତୁ ପରେ ବହୁତ ଦିନ ପରେ ସେ ଠିକ୍ କଲେ କଲିକତା ଆସିବାକୁ, ତାଙ୍କ ବିପୁଳ ପାରିବାରିକ ସମ୍ପତ୍ତିର ଦାବୀ ଜଣାଇବାକୁ । କିନ୍ତୁ ତାଙ୍କ ସ୍ତ୍ରୀ ଚିହ୍ନିଲେ ନାହିଁ । ସନ୍ନ୍ୟାସୀଟି ଯେ ତାଙ୍କର ସେଇ ହଜିଲା ସ୍ୱାମୀ ଏହା ସେ ସ୍ୱୀକାର କଲେ ନାହିଁ । ସନ୍ନ୍ୟାସୀଙ୍କ ରୂପ ଓ ଗଠନ ଭିତରେ ସେ ଆପଣା ସ୍ୱାମୀଙ୍କ ରୂପ ଓ ଆକୃତିର କୌଣସି ସାମଞ୍ଜସ୍ୟ ଖୋଜି ପାଇଲେ ନାହିଁ । ସନ୍ନ୍ୟାସୀ ନିରୁପାୟ ହୋଇ ବିଚାରାଳୟର ଆଶ୍ରୟ ନେଲେ । ମକଦ୍ଦମା ଚାଲିଲା । ସନ୍ନ୍ୟାସୀ ଧୈର୍ଯ୍ୟର ସହିତ ବିଚାରାଳୟର ରାୟକୁ ଅପେକ୍ଷା କରି ରହିଥିଲେ । କିନ୍ତୁ ତାଙ୍କ ସପକ୍ଷରେ ନିଷ୍ପତ୍ତି ହୋଇଥିବା ମକଦ୍ଦମାରୁ କିଛି ଲାଭ ପାଇବା ପୂର୍ବରୁ ସନ୍ନ୍ୟାସୀ ଅସୁସ୍ଥ ହୋଇପଡ଼ିଲେ ଓ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ସେଇ ବାଧବାର ବଗିଚା ଦିଶୁଥିଲା । ସାଦା ଧଳା ବସ୍ତ୍ରଟିଏ ପରିଧାନ କରି ମହିଳା ଜଣକ ଖଣ୍ଡିଏ ଶୀର୍ଣ୍ଣ ଶୁଭ୍ର ତୁଷାର ଖଣ୍ଡ ସଦୃଶ ବୁଲୁଥିଲେ ବଗିଚାରେ ଯେଉଁଠି ନାନା ରଙ୍ଗର ଗୋଲାପ ସବୁ ଫୁଟିଥିଲା । ବଗିଚାରେ ଥିଲା ଗୋଟିଏ କୃତ୍ରିମ ପାହାଡ଼ ଓ କୃତ୍ରିମ ସରୋବର । ତା'ର ତଟଦେଶରେ ସେ ସନ୍ଧ୍ୟାରେ ଜଳରାଶି ଓ ହଳଦିଆ ଫୁଲ ମାନଙ୍କ ଶୋଭା ଦିଶୁଥିବା ଗଛଟିଏକୁ ଚାହିଁ ଚାହିଁ ବସୁଥିଲେ । ବଗିଚାଟି ପକ୍ଷୀମାନଙ୍କର କଳରବରେ ମୁଖରିତ ହୋଇଉଠୁଥିଲା । ମହିଳା ଜଣକ କାହାକୁ କିଛି କହୁ ନ ଥିଲେ କିମ୍ବା ଘର ଛାଡ଼ି କେବେ ବି ବାହାରକୁ ଯାଉ ନ ଥିଲେ । ସାଙ୍ଗରେ ରହୁଥିଲେ ତାଙ୍କର ଭାଇ । ଲମ୍ବା ଲମ୍ବା ପାହୁଲ ପକାଇ ସେ ବୁଲନ୍ତି ବଗିଚାରେ । କିନ୍ତୁ ସେ ବି ଥିଲେ ଶାନ୍ତ ଓ ନୀରବ ପ୍ରକୃତିର । ଯେଉଁ ସନ୍ଦେହ ତାଙ୍କ ମନକୁ ଆଘାତ କରିଛି ସେଇ ସନ୍ଦେହର ଜ୍ୱାଳାରୁ ସେ ଦୁହିଁଙ୍କ ମନର ମୁକ୍ତି ନାହିଁ ବୋଲି ସେମାନେ ଜାଣି ସାରିଥିଲେ ଯେପରି ।

ଆମ ବସାର ବାମପଟକୁ ଯେଉଁ ପରିବାରଟି ରହୁଥିଲେ ସେମାନେ ପ୍ରଚୁର ଭୋଗ-ବିଳାସରେ ବୁଡ଼ି ରହିଥିଲେ । ଆନ୍ତର୍ଜାତିକ ସ୍ତରର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ସେମାନଙ୍କର ଉଲ୍ଲେଖଯୋଗ୍ୟ ପିଆ-ପିଇ ଚାଲିଥିଲା । ନୈତିକତାର ପୁନର୍ସଂସ୍ଥାପନରେ ସେମାନଙ୍କର ଗଭୀର ବିଶ୍ୱାସ ଥିଲା । ସ୍ୱାଧୀନତା ଆନ୍ଦୋଳନର କର୍ମୀମାନେ ଯେତେବେଳେ କଲିକତା ଆସୁଥିଲେ ତାଙ୍କର ଘରେ ରହୁଥିଲେ କିଛି ସମୟ । ସେଇ ଘରର ଗୃହିଣୀଙ୍କୁ ସକାଳ ବେଳା ଖାଇବା ଟେବୁଲ୍ ନିକଟରେ ବସିବା ଦେଖାଯାଉଥିଲା । ସେ ବେଶ୍ ମୋଟା ଓ ଖୁସି ଥିବା ପରି ଜଣାଯାଉଥିଲେ । ବସି ବସି ସେ ପୁଷ୍ଟିକରଠାରୁ ଖାଦ୍ୟ ପେୟର ଖର୍ଚ୍ଚର ହିସାବ ବୁଝୁଥିଲେ ଓ ଛୁରୀ ସାହାଯ୍ୟରେ ତାଙ୍କ ସାଲାଡ୍ ପାଇଁ ପରିବା କାଟିବା

ଦେଖା ଯାଉଥିଲା । ସନ୍ଧ୍ୟାରେ ତାଙ୍କର ସବା ସାନପୁଅ ଆସୁଥିଲା ଆମ ଘରକୁ ସ୍ତଟଲ୍‌କକ୍ ଖେଳିବା ପାଇଁ । ଆମର ରୋଷେଇ ଘର ଓ ଖାଇବା ଘର ମଝିରେ ଯେଉଁ ଜାଗା ଟିକିକ ଖୋଲା ଥିଲା, ଖେଳୁଥିଲୁଁ ଆମେ ସେଇଠି ।

ସେଇ ପିଲାଟି ଥିଲା ବାଉଁଆ ଓ ବେଶ୍ ପୃଥୁଳ । ସ୍କୁଲ୍‌ରେ କପଟ ସେ ଅନେକ ପ୍ରତିଯୋଗିତାରେ ଜିତିଥିଲା ସେଇସବୁ ବିଷୟ ପୁଙ୍ଖାନୁପୁଙ୍ଖ ଭାବରେ କହି କହି ଭାରି ବିରକ୍ତ କରୁଥିଲା ସେ ଆମକୁ । ପ୍ରମାଣ ସ୍ୱରୂପ ସେ ଆମକୁ ଥରେ ଗୋଟିଏ ନିମନ୍ତ୍ରଣ ପତ୍ର ଦେଖାଇଥିଲା—ଯେଉଁଥିରେ ସେ ଟାଲିଗଞ୍ଜ କ୍ଳବ୍‌କୁ ଗୋଟିଏ ଟୁର୍ଣ୍ଣାମେଣ୍ଟ୍ ପାଇଁ ଡାକୁଚି ବୋଲି ବ୍ୟକ୍ତ କରାଯାଇଥିଲା । ମୁଁ, ମୋ ଭାଇ ଓ ଅନ୍ୟ ଗୁଟିଏ ବନ୍ଧୁ ମିଶି ଆମେ ଯେଉଁ **Casma Players Badminton Club** ନାମକ କ୍ରୀଡ଼ା-ସଙ୍ଘ .କରିଥିଲୁ, ସେଥିର ସେ ବି ଜଣେ ସଭ୍ୟ ହୋଇଗଲା । ତାକୁ ଆମ ଦଳର ଅଧିନାୟକ କରିବା ପାଇଁ ସେ ସବୁବେଳେ ଆମକୁ କହିବୁଲିଥାଏ । ତାକୁ କୌଣସି ମାନ୍ୟ ଦେବା ଆଗରୁ ଟାଲିଗଞ୍ଜ କ୍ଳବ୍‌ରୁ ଉତ୍ତର ଆସିବା ଯାଏଁ ଆମେ ଧୈର୍ଯ୍ୟର ସହିତ ଅପେକ୍ଷା କରିବା ଉଚିତ ହେବ ବୋଲି ଆମେ ମନେକଲୁ । କିନ୍ତୁ ଟାଲିଗଞ୍ଜ-ବାଲା ତା'ଚିଠିର କୌଣସି ଉତ୍ତର ଦେଇ ନ ଥିଲେ ।

ତାର ସବୁବେଳେ ପଇସା ଦରକାର ଥିଲା । ତାଙ୍କ ରୋଷେଇ ଘରକୁ ଆମ ରୋଷେଇ ଘରର ଟିଣ ଛାତ ଲାଗିଥିଲା । ସେଇ ଛାତ ଉପରୁ ତଳକୁ ନାକ କରି ସେ କହୁଥିଲା—"ଏସ୍ତ୍, ଗୁଟିଏଣା ପଇସା ଅଛି କି ଦେବ ?···ମୋର ନିହାତି ଦରକାର ଅଛି ।" ମୋ ମା ଗୋଟିଏ ପୁରୁଣା ଡବା ଭିତରେ ବାପାଙ୍କ ସାର୍ଟ୍ ପାଇଁ ବୋତାମ ଓ ବକ୍‌ଲସ୍ ରଖୁଥିଲେ । ମୁଁ ସେଇ ଡବା ଅଣ୍ଡାଳି ବନ୍ଧୁଟି ପାଇଁ କିଛି ପଇସା ପାଇ ଯାଉଥିଲି । ସେଇ ଜରୁରୀ ଆବଶ୍ୟକତାଟି ଆଇସ୍‌କ୍ରିମ୍ କିଣିବା ବ୍ୟତୀତ ଆଉ କିଛି ନ ଥିଲା । ଆଇସ୍‌କ୍ରିମ୍ ବାଲାମାନେ ସେଇ ବାଟରେ ସାଇକେଲ୍‌ରେ ଡାକି ଡାକି ଯାଉଥିଲେ—"ଆଇସ୍‌କ୍ରିମ୍ ମାଗ୍ନୋଲିଆ··· ।"

ଆମ ବସାର ଡାହାଣକୁ ଯେଉଁ ପୁରାତନ ପ୍ରାସାଦୋପମ ଅଟ୍ଟାଳିକାଟି ଥିଲା ସେଥିରେ ମଧୁପୁରର ଜମିଦାର ରହୁଥିଲେ । ତାଙ୍କର ମୋର ସମବୟସୀ କନ୍ୟାଟିଏ ଥିଲା । ତାହାର ନାମ ଶାନ୍ତି । ଶାନ୍ତିର ଗାଲରେ ଗୋଟିଏ କଳାଜାଇ ଚିହ୍ନ ଥିଲା । ସେଇ କଳା ଚିହ୍ନଟି ସେ ଅତି ଗର୍ବର ସହିତ ଦେଖାଉଥିଲା ମୋତେ । କହୁଥିଲା—"ଏଇଟି ସୌନ୍ଦର୍ଯ୍ୟ-ବିନ୍ଦୁ । ଏପରି ବିନ୍ଦୁ ଘେନି ଜନ୍ମିଥିବା ଝିଅ କୋଟିକରେ ଗୋଟିଏ ।" ତା'କଥା ଶୁଣି ମୁଁ ଈର୍ଷାରେ

କାତର ହୋଇ ପଡ଼ୁଥିଲି । ଦୃଷ୍ଟି ଠିକ୍ କରିବା ପାଇଁ ମୁଁ ସେତେବେଳେ ଚଷମା ବ୍ୟବହାର କରୁଥିଲି । ଶାନ୍ତୁ ମୋତେ ଦେଖେଇ କହିଲି—"ମୁଁ ବରଂ ମରିବି, କିନ୍ତୁ ଚଷମା ଲଗେଇ ବି ନାହିଁ ।"

ସେଇ ଶାନ୍ତୁ ସନ୍ଧ୍ୟାରେ ମୋ ଶିକ୍ଷକଙ୍କଠାରୁ ମଣିପୁର ନାଚ ଶିଖିବା ପାଇଁ ଆମ ଘରକୁ ଆସୁଥିଲି । ଶ୍ରୀଯୁକ୍ତ ବ୍ରଜବାସୀ ସେତେବେଳେ ମୋତେ ମଣିପୁର ନୃତ୍ୟ ଶିଖାଉଥିଲେ ।

ଦିନେ ମୋ ବାପା-ମା ଘରେ ନ ଥିଲାବେଳେ ମୋତେ ସେ ତାଙ୍କ ଘରକୁ ଡାକି ନେଇଗଲା । ତାଙ୍କର ଅଳ୍ପାଲୋକିତ ଘର ଭିତରେ ନାନା ଧରଣର ମୂର୍ତ୍ତି, ଦାମିକା ପାରସ୍ୟର ଗାଲିଚା ପ୍ରଭୃତି ଅନେକ ପ୍ରକାରର ଜିନିଷ ଦେଖି ମୁଁ ଚମତ୍କୃତ ହୋଇଯାଇଥିଲି । ପାହାଚ ଦେଇ ଆମେ ଉପରକୁ ଯିବାରୁ ଗୋଟିଏ ଅନ୍ଧାରୁଆ ମହଲରେ ପହଞ୍ଚିଲୁ । ସେଠି ତାଙ୍କର ଶୋଇବା ଘର । ଗୋଟିଏ ଘର ଭିତରେ ସିଲ୍କ ବସନରେ ଆବୃତ ହୋଇ ଶୋଇଥିଲେ ଜଣେ ବୃଦ୍ଧ ପଲଙ୍କ ଉପରେ । ଶାନ୍ତୁ ତାଙ୍କ ସହିତ ମୋର ପରିଚୟ କରାଇ ଦେଲା—"ଦାଦୁ ଇଏ ମୋର ବାନ୍ଧବୀ କମଳା ।" ବୃଦ୍ଧ ଜଣକ ଥିଲେ ଶାନ୍ତୁର ଜେଜେବାପା । ସେ ମୁହୂର୍ତ୍ତେକ ମୋତେ ଚାହିଁଲେ । ତାଙ୍କର ଜୀବନ-ହୀନ ଦୃଷ୍ଟି ଓ ହସହସ ମୁଖ ଦେଖି ମୁଁ କାହିଁକି ଡରିଗଲି । ସେଇ କୋଠରୀରୁ ବାହାରି ଆସିଲା ବେଳକୁ ମୋ ଦେହରୁ ପଟେ ଝାଳ ବୋହିଯାଇଥିଲା ।

କିନ୍ତୁ ପରେ ଆମ ଛାତରେ ଠିଆ ହୋଇ ହାତ ବଢ଼େଇ ମୁଁ ଯେତେବେଳେ ଜାମୁ ଗଛର ଡାଳ ଟାଣି କୋଳି ତୋଳୁଥିଲି, ସେତେବେଳେ ମନେ ମନେ ପ୍ରାର୍ଥନା କରୁଥିଲି ଈଶ୍ୱରଙ୍କୁ, ମୋର ଯେମିତି ଅକଳନ୍ତ ଧନରତ୍ନ ହୁଏ, ମୁଁ ଯେମିତି ତାଙ୍କପରି ଗୋଟିଏ ପୁରୁଣା ପ୍ରାସାଦରେ ଅନେକ ସୁନ୍ଦର ମୂର୍ତ୍ତିଙ୍କ ଗହଣରେ ରୂପା ଓ ସିଲ୍କର ପ୍ରାଚୁର୍ଯ୍ୟ ଭିତରେ ଜୀବନଯାପନ କରିବାର ସୁବିଧା ପାଏ ।

କୌଣସି ଧନବନ୍ତ ଜମିଦାରକୁ ବିବାହ କରିବାର ଅଭିଳାଷ ମୋ ଭିତରେ ଚେଇଁ ଉଠିଥିଲା ସେତେବେଳେ । ବାହାହୋଇ ମୁଁ କଲିକତାରେ ରହିବାକୁ ମନେ ମନେ କଳ୍ପନା କରୁଥିଲି । କହିବାକୁ ଗଲେ, ମୁଁ ହେବାକୁ ଚାହୁଁଥିଲି ଜଣେ ଅଶାଳୀନ ମହିଳା ।

# ପନ୍ଦର

## ଅନ୍ତର୍ଗତ କ୍ରୂରତା…

ଆମ ବସାର ଖୁବ୍ ନିକଟରେ ଥିବା ସ୍କୁଲ୍‌ଟିରେ ବାପା ମୋର ନାମ ଲେଖାଇ ଦେଇଥିଲେ । ବିଦ୍ୟାଳୟଟି ସହିତ ଏକଦା କଲେଜଟିଏ ଲାଗିକରି ଥିଲା । କୌଣସି ଜଣେ ବିପ୍ଳବୀ ଗ୍ରୀନ୍ ବ୍ରିଟିଶ୍ ଗଭର୍ଣ୍ଣର୍‌ଙ୍କୁ ଗୁଳିବିଦ୍ଧ କରି ମାରିଦେବାର ଯୋଜନା ସେଠାରେ କରିଥିଲେ ଓ ଅସଫଳ ହୋଇଥିଲେ । କିନ୍ତୁ, ପରିଣାମରେ କଲେଜଟି ବନ୍ଦ୍ ହୋଇଯାଇଥିଲା ସବୁଦିନ ପାଇଁ ।

ତାର ବଡ଼ ବଡ଼ ପ୍ରଶସ୍ତ କୋଠରୀଗୁଡ଼ିକ ଶିକ୍ଷକମାନଙ୍କର ଶୟନାଗାର ଓ ଗ୍ରନ୍ଥାଗାରରେ ରୂପାନ୍ତରିତ ହୋଇଥିଲା । ଯେଉଁ ସମ୍ଭ୍ରାନ୍ତ କଲିକତାବାସୀ ବୁଦ୍ଧିଜୀବୀମାନେ ଭୁଲ୍ କ୍ରମେ ବା ନିର୍ବୋଧତା ବଶତଃ ଗାନ୍ଧୀବାଦର ଜାବରେ ପଡ଼ିଯାଇଥିଲେ, 'ସେମାନେ ତାଙ୍କର ସନ୍ତାନମାନଙ୍କୁ ଲୋରେଟ୍‌ଟୋ ହାଉସ୍ ନାମକ ଇଂରାଜି ସ୍କୁଲ୍‌କୁ ନ ପଠାଇ ଆମ ସ୍କୁଲ୍‌କୁ ପଠାଉଥିଲେ ।

ଆମର ପ୍ରିନ୍‌ସିପାଲ୍ ବା ଅଧ୍ୟକ୍ଷା ଥିଲେ ଜଣେ ବୟସ୍କା ଅବିବାହିତା ରମଣୀ । ଦୈହିକ ସୌନ୍ଦର୍ଯ୍ୟ ଓ ସ୍ୱାସ୍ଥ୍ୟ ଥିବା ନଥିବା ଯେନ ତାଙ୍କର ଗଭୀର ଶ୍ରଦ୍ଧା ଓ ଅଶ୍ରଦ୍ଧା ରହିଥିଲା । ବେଳେ ବେଳେ ସେ ମୋର ଜଣେ ସହପାଠିନୀକୁ ନରମ ସ୍ୱରରେ କହୁଥିଲେ ଯେ ତାର ବେଶୀ ରାତିଯାଏଁ ପଢ଼ାପଢ଼ି କରିବା ଉଚିତ ନୁହେଁ । ତାହା ଦ୍ୱାରା ତାର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବାର ଆଶଙ୍କା ରହିଛି । ଆମର ଶିକ୍ଷୟିତ୍ରୀମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଥିଲେ ପୂର୍ବତନ ଛାତ୍ରୀ । ନିଯୁକ୍ତିରୁ ବହିଷ୍କୃତ ହୋଇଥିବାର ଭୀରୁତା ଥିଲା ତାଙ୍କ ମନରେ । ଫଳରେ ଆମେ ଥିଲୁ ସେମାନଙ୍କ ସୂକ୍ଷ୍ମ ଦୁଃଖବାଦର ଶରବ୍ୟ ।

ସେତେବେଳେ ରମଲା ନାମ୍ନୀ ସୁସ୍ଥସବଳ ଝିଅଟିଏ ଥିଲା ମୋର ଏକମାତ୍ର ବାନ୍ଧବୀ । ସବୁଠାରୁ ଅଶାଳୀନ ଓ ସବୁଠାରୁ ଦୁଷ୍ଟ ପ୍ରକୃତିର ପିଲାଙ୍କୁ ବି ସେ ଭଲ ପାଇବାକୁ ପ୍ରସ୍ତୁତ ଥିଲା । ଅନାୟାସରେ ସେ ମଜା କରିପାରୁଥିଲା ଓ ଯେ କୌଣସି ଘଟଣା ପ୍ରତି ତାର ପ୍ରତିକ୍ରିୟା ଥିଲା ଅତ୍ୟନ୍ତ ସହଜ ଓ ମନମତାଣିଆ । କେହି ତାକୁ ଘୃଣା କରୁ ନ ଥିଲେ, ଯଦିଓ ତାକୁ ପରିହାସ କରୁଥିଲେ ସମସ୍ତେ ।

ସବୁଠୁ ବେଶୀ ଅଶାଳୀନ ଥିଲେ ପଶ୍ଚିମବଙ୍ଗୀୟା ଧନବନ୍ତଙ୍କର ଦୁଲାଲୀମାନେ । ସେମାନେ ଡଗଡଗ କରି ତାଙ୍କ ଭାଷା କହୁଥିଲେ ଓ ଅଲଗା

ହୋଇ ରହିଥିଲେ । ଶରତବାବୁଙ୍କ ଉପନ୍ୟାସ ବିଷୟରେ ତାଙ୍କର ଚର୍ଚ୍ଚା ଥିଲା ଅସରନ୍ତି । ରବୀନ୍ଦ୍ର ସଙ୍ଗୀତର ଲହରକୁ ଗୁଣୁଗୁଣେଇବା ତାଙ୍କର ଥିଲା ଅଭ୍ୟାସ । ସେମାନଙ୍କ ମଧ୍ୟାହ୍ନ ଭୋଜନ ଚକଚକିଆ ପିତ୍ତଳ ଟିଫିନ୍ କାରିଅର୍‌ରେ ତାଙ୍କର ଚାକରମାନେ ପ୍ରତିଦିନ ଆଣୁଥିଲେ । ସ୍କୁଲ୍ ଡେସ୍କ ଉପରେ ସେସବୁକୁ ଖୋଲି ସେମାନେ ଖାଉଥିଲେ । ସେଥିରେ ଥିଲା ଲାଲ୍ ରଙ୍ଗର ମାଛ ତର୍କାରୀ, ଭାତ, ଚିଙ୍ଗୁଡ଼ି ମାଛର ଭଜା ଓ ସନ୍ଦେଶ ।

ଆମେ ଯେଉଁମାନେ ଶୁଖିଲା ଖାଦ୍ୟ ଖାଉଥିଲୁ ଅନ୍ୟ କୋଠରୀକୁ ଚାଲି ଯାଉଥିଲୁଁ । ତାଙ୍କ ବାଟଦେଇ ଗଲେ ସେମାନେ ଆମ ଆଖିରେ ପଡ଼ିଯିବ ବୋଲି ପ୍ଲେଟ୍ ଲୁଚେଇ ଦେଉଥିଲେ, ଏପରିକି ଚାକୁଲେଇବା ବନ୍ଦ୍ କରି ଦେଉଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଆମେ ତାଙ୍କୁ ହିଂସା କରୁଛୁ । ଯେ ଆମ ଆଡୁର ଦୃଷ୍ଟି ପଡ଼ିଲେ ତାଙ୍କର ଦେହ ଖରାପ ହୋଇଯିବ । ତାଙ୍କର ସେଇ ଅସୁବିଧାଜନକ ଅବସ୍ଥା ଦେଖି ଆମେ ଆନନ୍ଦିତ ହେଉଥିଲୁ । ତାଙ୍କର ଖାଦ୍ୟ ଆମକୁ ସବୁବେଳେ ଅପରିଚ୍ଛନ୍ନ ଦିଶୁଥିଲା । ପକ୍ଷାନ୍ତରେ ଆମର ଛେନାଦିଆ ସାଣ୍ଡୱିଚ୍‌ଗୁଡ଼ିକ ଆମକୁ ପରିଷ୍କାର ଓ ଆରାମଦାୟକ ଲାଗୁଥିଲା ।

ଆଉରି ଦଳେ ଥିଲେ । ସେମାନେ ସବୁ ରକ୍ଷଣଶୀଳ ତାମିଲ୍ ଘରର ଝିଅ । ସେମାନେ ସବୁ ଘରୁ ଆଣିଥିବା ଦହିମିଶା ଭାତ ପାହାଚ ତଳେ କିମ୍ବା ବାଥ୍‌ରୁମ ଅନ୍ତରାଳରେ ବସିଖାଆନ୍ତି । ତାଙ୍କର ବିଧବା ବୁଢ଼ୀ-ମା ମାନେ ଅଥବା ମା-ମାନେ ପ୍ରସ୍ତୁତ କରିଥିବା ଆଚାର ଖାଇବା ଥିଲା ତାଙ୍କର ନିତିଦିନିଆ ଅଭ୍ୟାସ । ଗୋଲାକାର ବାସନରେ ସେସବୁ ଆସୁଥିଲା ତାଙ୍କ ପାଇଁ । ତାଙ୍କର ଖାଦ୍ୟ ପଦାର୍ଥ ଯୋଗୁ ତାମିଲ୍‌ମାନଙ୍କର ଗୌଣ ମନୋଭାବ ରହିଥିଲା । ସେମାନେ ମଧ୍ୟ ଅଲଗା ରହିବାକୁ ପସନ୍ଦ କରୁଥିଲେ । ତାଙ୍କର ଚର୍ଚ୍ଚା ବା କଥାବାର୍ତ୍ତାର ପ୍ରସଙ୍ଗ ଥିଲା ଏମ୍. ଏଲ୍. ବସନ୍ତ କୁମାରୀ ଓ ଏମ୍. ଏସ୍. ଶୁଭଲକ୍ଷ୍ମୀଙ୍କ ବିଷୟ । ବଙ୍ଗାଳୀ ଝିଅମାନେ ତାଙ୍କୁ ସବୁ ମୁହଁ ଫୁଲେଇ ଚାହୁଁଥିଲେ ଓ 'ଅନ୍ଧା ପୁନ୍ଧା ଅନ୍ଧା ପୁନ୍ଧା' କହି ପରିହାସ କରୁଥିଲେ ।

ଆମର ଗଣିତ ଶିକ୍ଷୟିତ୍ରୀ ଜଣେ ତରୁଣୀ ଥିଲେ । ଭ୍ରୂ-ଭଙ୍ଗୀ କରିବା ଥିଲା ତାଙ୍କର ଅଭ୍ୟାସ । ସେ କଟୀ-ବନ୍ଧ ପରିଧାନ କରୁଥିଲେ, ସମ୍ଭବତଃ ତାଙ୍କ କ୍ଷୀଣକଟୀକୁ ଦୃଢ଼ ରଖିବା ଉଦ୍ଦେଶ୍ୟରେ । ମୋ'ର ବେଞ୍ଚ୍‌ରେ ବସୁଥିବା ମମତା ତାଙ୍କର ପ୍ରେମରେ ପଡ଼ିଯାଇଥିଲା । ସେ ପାଠ ପଢ଼ାଉଥିଲାବେଳେ ମମତା ତାଙ୍କୁ ବିଭୋର ଦୃଷ୍ଟିରେ ଚାହିଁ ରହୁଥିଲା । ମମତା ମୋତେ ବାରମ୍ବାର ପଚାରୁଥିଲା— "କୁହନ୍ତ ଏଇ ମହିଳାଟି କଣ୍ ସବୁଠାରୁ ସୁନ୍ଦରୀ ନୁହେଁ ?" ମମତା କାନ୍ଦୁ

ଗଣିତରେ ଦୁର୍ବଳ ଥିଲି ଓ ବେଳେ ବେଳେ ଦଣ୍ଡିତ ହେଉଥିଲି ଶ୍ରେଣୀରେ । ଦଣ୍ଡ ଦେଲାବେଳେ ଶିକ୍ଷୟିତ୍ରୀଙ୍କ ମୁହଁର ଭାବ ଥିଲା ଭିନ୍ନ, ଯେପରିକି ସେ ଜଣେ ସାଧ୍ୱୀ ବା 'ଆର୍କ୍ ର୍' ଜଣେ 'ଜୋଆନ୍' । ଖଣ୍ଡିଏ ଭଲ ଚାକିରି ଉଦ୍ଦେଶ୍ୟରେ ଶିକ୍ଷୟିତ୍ରୀ ନଳିନୀ ଛାଡ଼ିବା ପରେ ପରେ ମମତା ମଧ୍ୟ ସ୍କୁଲ ଛାଡ଼ି ଚାଲି ଯାଇଥିଲି ।

ଆମର ଇଂରେଜୀ ଶିକ୍ଷୟିତ୍ରୀ ଥିଲେ ଜଣେ ଅଷ୍ଟ୍ରିଆ-ଦେଶୀ ଶରଣାର୍ଥୀ । ସେ କୌଣସି ମତେ ନାଜି ଜର୍ମାନରୁ ଖସି ଆସିଥିଲେ । ସେ ଥିଲେ ବେଶ୍ ସୁସ୍ଥ ସବଳ । ତାଙ୍କ ମୁହଁଟି ଥିଲା ଲାଲ୍ ବର୍ଣ୍ଣର । ତାଙ୍କର କେଶ ଦେଖିବାକୁ ଇହୁଦୀମାନଙ୍କପରି । ଠିକ୍ ଏ ଜର୍ମାନ୍-କାଇଦାରେ ସେ ଇଂରାଜୀ ଉଚ୍ଚାରଣ କରୁଥିଲେ, 'ଷ୍ଟପ୍'-କୁ କହୁଥିଲେ 'ଷ୍ଟପ୍' । ଝିଅମାନେ ତାଙ୍କ କ୍ଲାସ୍‌ରେ ବଦ୍‌ମାସି କରୁଥିଲେ ଓ ତାଙ୍କର ମାତ୍ର ଚାରିଜୋଡ଼ା ପୋଷାକ ଥିଲେ ବି ତାଙ୍କ ଉପରକୁ କାଳି ଫିଙ୍ଗିବାକୁ ଉଦ୍ୟମ କରୁଥିଲେ । ଦିନେ ଗୋଟିଏ ଝିଅ କଲମ ଖୋଲି ତାଙ୍କ ଉପରକୁ କାଳି ଛାଟିବାକୁ ଯାଉଥିଲାବେଳେ ସେ ତାକୁ ଧରି ପକାଇଲେ ଓ ରାଗିଗଲେ । ସେ କହିଲେ—"ମୁଁ ତୁମପରି ଧନୀ ନୁହେଁ । ତୁମଭଳି ଯୋଡ଼ା ଯୋଡ଼ା ନୂଆ ପୋଷାକ କିଣିବା ପାଇଁ ମୋର ପଇସା ନାହିଁ ।" କହିଲାବେଳେ ତାଙ୍କର ଆଖିରେ ଲୁହ ଭରି ଯାଇଥିଲା । ଲାଜରେ ଦୋଷୀ ଝିଅଟିର ମୁହଁ ତଳକୁ ହୋଇଯାଇଥିଲା ସେଦିନ ।

ଯେହେତୁ ସ୍କୁଲ୍‌ରେ ମୁଁ ଦ୍ୱିତୀୟ ଫର୍ମ୍‌ରେ ଯୋଗ ଦେଇଥିଲି, ସେଥିଲାଗି ମୋ ପଢ଼ାର ତତ୍ତ୍ୱନେବା ପାଇଁ ଓ ମୋତେ ସାହାଯ୍ୟ କରିବା ପାଇଁ ବାପା ଅନେକ ଘରୋଇ ଶିକ୍ଷୟିତ୍ରୀ ନିଯୁକ୍ତ କରିଥିଲେ । ତାଙ୍କ ଭିତରୁ ଜଣେ ସିରିଆ-ବାସୀ ଖ୍ରୀଷ୍ଟଧର୍ମାବଲମ୍ବୀ ମହିଳା ଥିଲେ । ତାଙ୍କର ଉଚ୍ଚତା କମ୍ ଥିଲା, କିନ୍ତୁ ସେ ବଡ଼ ଉପରେ ପଡ଼ିବା ପ୍ରକୃତିର ଥିଲେ । ତାଙ୍କୁ ଜଣେ ଆକ୍ରମଣକାରିଣୀ ମହିଳା ନେପୋଲିଅନ୍ ରୂପେ ନାମିତ କରାଯାଇପାରେ । ମୁଁ ତାଙ୍କୁ ଖୁବ ଡରୁଥିଲି । ଥରେ ଦାରିଣ୍ଡାର ପର୍ଦ୍ଦା ଅନ୍ତରାଳରେ ଠିଆହୋଇ ସେ ଆମ ପ୍ରତିବେଶୀର ଘରକୁ ଚାହିଁ ସେଠି ବଲ୍-ନୃତ୍ୟ ଚାଲିଥିବା ଦେଖିଲେ । ଅଳଙ୍କୃତା ନାରୀ ଓ ପୁରୁଷମାନେ ମଧୁର ଓ ମନ୍ଥର ସଙ୍ଗୀତ ଝଙ୍କାରର ତାଳେ ତାଳେ ନାଚୁଥାନ୍ତି । ଫୁଲକୁଣ୍ଡ ଥୁଆ ହୋଇଥାଏ । ଅବଶ୍ୟ କୁଣ୍ଡଗୁଡ଼ିକୁ ସେମାନେ ଆମ ବଗିଚାରୁ ମାଗିନେଇ ଥିଲେ ସେଇ ଅପରାହ୍ନରେ । କ୍ରିଷ୍ଟାଫୁଲ ଓ ନାରୀମାନେ ଲଗାଇଥିବା ଅତରର ସୁବାସ ପବନରେ ଭାସି ଆସୁଥିଲା ଆମ ଘର ପର୍ଯ୍ୟନ୍ତ । ମୁଁ ସେସବୁ ଦେଖି ବେଶ୍ ମୁଗ୍ଧ ହୋଇଥିଲି ସେଦିନ ।

ତା'ପରେ ସେଇ ବଲ୍-ନୃତ୍ୟର ସ୍ଥାନକୁ ଜଣେ କଳାବର୍ଣ୍ଣର ଲୋକ ପ୍ରବେଶ କରିବା ଆମେ ଲକ୍ଷ୍ୟ କଲୁ । ସେ ସୁଟ୍ ପିନ୍ଧି ନ ଥିଲା । ପିନ୍ଧିଥିଲା ଝିଣ୍ଡି ଏ ବୁସ୍ ସାର୍ଟ୍ । ସେ ଗମ୍ଭୀର ଆତ୍ମ-ପ୍ରତ୍ୟୟର ସହିତ ସମସ୍ତଙ୍କ ଆଡ଼କୁ ବୁଲି ବୁଲି ଚାହିଁଲା ଓ ହସିଲା । ସହସା ପର୍ଦ୍ଦା ଉପରେ ଥିବା ଆମ ଶିକ୍ଷୟିତ୍ରୀଙ୍କ ହାତରେ ଖିଡ଼ ସଞ୍ଚାରିତ ହୋଇଗଲା । ସେ ମୋତେ ଆସ୍ତେ କରି କହିଲେ—"ସେଇ ବୁସ୍-ସାର୍ଟ୍ ପିନ୍ଧିଥିବା ଲୋକଟାକୁ ଆଦୌ ଚାହିଁବୁନି । ତା'ଠାରୁ ବେଶୀ ଦୁଷ୍ଟ ଲୋକ ଆଉ କେହି ବଞ୍ଚି ନାହାନ୍ତି । ମୁଁ ଏକଦା ତାର ଅସଲ ପରିଚୟ ପାଇଛି ।" ଶିକ୍ଷୟିତ୍ରୀଙ୍କ ମୁଖମଣ୍ଡଳ କ୍ରମେ ନିସ୍ତେଜ ପଡ଼ିଗଲା । ସେ ଘୃଣାରେ ଶିହରି ଉଠୁଥିଲେ । 'ମୁଁ ସେଇ ଲୋକଟାକୁ ବଡ଼ ଘୃଣା କରେ'—ସେ କହୁଥିଲେ ।

ମୋ ଶିକ୍ଷୟିତ୍ରୀଙ୍କ ମନରେ ଏପରି ଏକ ଝଡ଼ ସୃଷ୍ଟି କରିଥିବା ସେଇ ଲୋକଟାକୁ ମୁଁ ଭଲକରି ନିରୀକ୍ଷଣ କଲି । ତା' ମୁହଁରେ ଏକ ପାଶବିକ ଛାୟା ସ୍ପଷ୍ଟ ଦିଶୁଥିଲା । ସେ ଅତ୍ୟନ୍ତ ଉଲ୍ଲାସ ପଦପାତରେ ନାଚୁଥିଲା, ଯେମିତିକି ସ୍ପ୍ରିଙ୍ଗ୍ ଲାଗିଥିଲା ତାର ଜୋତା ତଳେ । ତାର ଚାହାଣୀଟି ମୋତେ ଭଲ ଲାଗୁଚି ବୋଲି ମୁଁ ଶିକ୍ଷୟିତ୍ରୀଙ୍କୁ ଜଣାଇଲି । କାଳବିଳମ୍ବ ନ କରି ସେ ମୋତେ ଭିତରକୁ ଟାଣି ନେଇଗଲେ । କହିଲେ—"ତୁମେ ସେଇ ଲୋକଟାକୁ ଚାହିଁବା ଅନୁଚିତ । ସେ ଅନେକ ସୁନ୍ଦରୀ ଯୁବତୀଙ୍କ ଜୀବନ ନଷ୍ଟ କରିଛି । ଅନେକ ଭଲ ଭଲ ଘରୋଇ ପରିବାରକୁ କଳଙ୍କିତ କରିଛି ସେଇ ।" ମୁଁ ପଚାରିଲି "କେମିତି ? କେମିତି ସେ ଝିଅମାନଙ୍କ ଜୀବନ ନଷ୍ଟ କଲା ?"

ସେ ମୋ ପ୍ରଶ୍ନର ଉତ୍ତର ଦେବା ଅବସ୍ଥାରେ ନ ଥିଲେ ।

ସେଇ ଘଟଣାର ପରେ ମୁଁ ସେଇ ଲୋକଟି କଥା ବାରମ୍ବାର ସ୍ମରଣ କରିଥିଲି । ସେ ଥିଲା କଳା ଓ ଅଳ୍ପ ଉଚ୍ଚର । ତାର ଚାହାଣୀଟି ବ୍ୟତୀତ ଦୃଷ୍ଟି ଆକର୍ଷଣ କଲାଭଳି ତା'ଠାରେ ଅନ୍ୟକିଛି ନ ଥିଲା । ତାର "ଦୁଷ୍ଟ"-ଗୁଣ ତାର ସମସ୍ତ ଅଭାବକୁ ପରିପୂର୍ଣ୍ଣ କରୁଥିଲା ଯେମିତି । କୌଣସି ଦୁଷ୍ଟ ପ୍ରକୃତିର ଲୋକଙ୍କୁ ଦେଖିବା ସେଇ ମୋର ପ୍ରଥମ । ମୁଁ ବଡ଼ହେଲେ ଦିନେ ତାକୁ ନିଶ୍ଚୟ ସାକ୍ଷାତ କରିବି ଓ ସମ୍ଭବ ହେଲେ ଲୋକଟିକୁ ବାହା ହେବବୋଲି ମନେ ମନେ ସ୍ଥିର କରିନେଲି । ମୋର କୈଶୋରକାଳର ସମସ୍ତ ଅଭିଜ୍ଞତା ଓ ଜ୍ଞାନ ଦୁଷ୍ଟ ଲୋକକୁ ବାହାହେବା ଉଚିତ ନୁହେଁ ବୋଲି ମୋତେ ବାରଣ କରୁଥିଲେ । ତାକୁ ବାହାହେବା ଅର୍ଥଥିଲା ଅନେକ ମଧୁର ସହିହେଲାଭଳି ଯନ୍ତ୍ରଣା ଲାଭ କରିବା ଓ ମଧୁର ପାପୀର ପାପସକଳକୁ କ୍ଷମା କରିବାର ଅନେକ ଅନେକ ସୁଯୋଗ ପାଇବା ।

# ଷୋହଳ

## ପୁଅଟିଏ ମାଗିଲି ସୂର୍ଯ୍ୟଙ୍କୁ

ଆମର ଗୃହକର୍ତ୍ତ୍ରୀଟି ପୂଝାରୀକୁ ବିବାହ କରିବା ପରେ ସେମାନେ ରୋଷେଇ ଘର ଉପରେ ଥିବା ଗୋଟିଏ କୋଠରୀରେ ଏକାଠି ଶୟନ କଲେ ଓ ସେହିଦିନ ଠାରୁ ମୋତେ ବାରଣ୍ଡା ସାମ୍ନାକୁ ଥିବା କୋଠରୀଟିରେ ଏକୁଟିଆ ଶୋଇବାକୁ ପଡ଼ିଲା । ଘରଟି ପୁରାତନ ହୋଇ ଯାଇଥିଲା । ଛାତ ଥିଲା ବେଶ୍ ଉଚ୍ଚାରେ । ଲମ୍ବା ଲୁହା ଦଣ୍ଡ ସାହାଯ୍ୟରେ ପଙ୍ଖା ଝୁଲୁଥିଲା । ଗୁଲିଲାବେଳେ କର୍ କର୍ ଶବ୍ଦ କରୁଥିଲା ପଙ୍ଖାଟା ।

ମୁଁ ଅନ୍ଧାରକୁ ଓ ସମସ୍ତ ଅନ୍ଧାରୁଆ ଜୀବମାନଙ୍କୁ ଡରୁଥିଲି । ଭୂତ ଓ ଦୁଷ୍ଟ ପ୍ରେତାତ୍ମାମାନଙ୍କ ମୋର ପ୍ରାଣେ ଭୟ ଥିଲା । ରାତି ସାରା ଆଲୁଅ ଜାଳି ଶୋଉଥିଲି କିଏ କଣ ଭାବିବେ ବୋଲି ପଢ଼ୁ ପଢ଼ୁ ଶୋଇପଡ଼ିବାର ବାହାନା କରୁଥିଲି । କିନ୍ତୁ ପାହାନ୍ତା ପହରରେ ନିଦ ଭାଙ୍ଗିଲା ପରେ ମୁଁ ଆଲୁଅ ଲିଭିଯାଇଥିବା ଦେଖୁଥିଲି । ସମ୍ଭବତଃ ରାତିରେ ବାପା କି ମାଆ ଉଠି ମୋ' ରୁମ୍‌ର ଆଲୋକ ଲିଭାଇ ଦେଇ ଯାଉଥିଲେ ।

ବହୁତ ରାତି ପର୍ଯ୍ୟନ୍ତ ମୁଁ ବିଛଣାରେ ଗୁହିଁକାଠ ଶୋଇ ରହୁଥିଲି । ମୋ କାନରେ ଗୋଟାଏ ସୂକ୍ଷ୍ମ ସିଁ-ସିଁ ଶବ୍ଦ ଧ୍ୱନିତ ହେଉଥିଲା, ଠିକ୍ ଭୂତମାନଙ୍କ ଦୀର୍ଘଶ୍ୱାସ ଭଳି । ମୋ ଶୋଇବା ଘର ପାଖକୁ ଥିଲା ଗୋଟିଏ ହଲ୍ । ସେଠାରେ ପୂର୍ବତନ ଭଡ଼ାଟିଆ ତା'ର ସମସ୍ତ ଜିନିଷ ପତ୍ର ଗଚ୍ଛିତ ରଖିଥିଲା । ଅବଶ୍ୟ ସେହି ଭଡ଼ାଟିଆ ଠାରୁ ଆମେ ଘରଟି ଭଡ଼ା ନେଇଥିଲୁ । ସେଇ ଘର ଭିତରେ ନାନା ପ୍ରକାରର ଜିନିଷ ପରିପୂର୍ଣ୍ଣ ହୋଇ ରହିଥିଲା,—ବଡ଼ ଧରଣର କାଠ ସିନ୍ଦୁକଠାରୁ ଆରମ୍ଭ କରି ଟୋପି ଷ୍ଟାଣ୍ଡ୍ ପର୍ଯ୍ୟନ୍ତ । ଭଡ଼ାଟିଆଙ୍କର ବାପା ଜଣେ ନୌବାହିନୀର କ୍ୟାପ୍‌ଟେନ୍ ଥିଲେ । ବଡ଼ କାଠ ସିନ୍ଦୁକଟି ସେ ଆଣିଥିଲେ ଚୀନ୍ ଦେଶରୁ । ମୋର ଶୋଇବା ଘର ଓ କଥିତ ହଲ୍‌ଟି ମଝିରେ ଥିବା କାନ୍ଥଟି ଥିଲା ଅନୁଚ୍ଚ । ମୁଁ ଭାବୁଥିଲି, ବୁଢ଼ା କ୍ୟାପ୍‌ଟେନ୍‌ର ଭୂତ ମୋତେ ନିଶ୍ଚୟ ମୁଣ୍ଡଟେକି ଚାହୁଁଥିବ । ମୋର ଧାରଣାରେ କ୍ୟାପ୍‌ଟେନ୍‌ଟି ଥିଲା ଗୋଟିଏ ଜଳଦସ୍ୟୁର ଟୋପି ପିନ୍ଧିଥିବା ଦାଢ଼ିଆ ବୁଢ଼ା ।

କିନ୍ତୁ ଦିନ ବେଳେ ସେଇ ହଲ୍‌ଟି ଏତେ ବେଶୀ ଭୀତି-ପ୍ରଦ ନ ଥିଲା । ସେଇ ହଲ୍ ଭିତରକୁ ଯିବା ଓ ଅଲମିରା ଗୁଡ଼ିକୁ ଦେଖିବାକୁ ବାପା ଆମକୁ ବାରଣ କରିଦେଇଥିଲେ । କିନ୍ତୁ ସେ ଘରେ ନଥିବା ବେଳେ ମୁଁ ଘରେ ପଶି ଆଲ୍‌ମିରା ଖୋଲି ମଲା ବୁଢ଼ାଙ୍କି କିଏ କିଏ ସବୁ ରଖିଯାଇଛି ଦେଖୁଥିଲି ।

ଆମ ଘରର ପଛ ପଟକୁ ଗୋଟିଏ ଗୋଲେଇ ପାହାଚ ଥିଲା । ସେଇ ବାଟ ଦେଇ ଚାକର-ଚାକରାଣୀମାନେ ଉପରକୁ ଆସୁଥିଲେ । ବେଳେ ବେଳେ ଆମ ବ୍ୟାଡ଼୍‌ମିଣ୍ଟନ୍ କ୍ଲବ୍‌ର ବାଳକମାନେ ବି କ୍ଷିପ୍ର ଗତିରେ ସେଇ ପାହାଚ ଦେଇ ଆସୁଥିଲେ ନିଜ ନିଜର ଅନ୍ତଃସ୍ଥଳକୁ ମନ୍ଥନ କରିବା ଲକ୍ଷ୍ୟରେ । ମୁଁ ବି ଦିନେ ଚେଷ୍ଟା କଲି, କିନ୍ତୁ ଅଧା ବାଟରେ ମୋତେ ଅଚେତ ହୋଇଗଲା ଭଳି ଲାଗିଲା ଓ ମୁଁ ରହିଯାଇଥିଲି ସେଇଠି । ଆମର ଚାକରାଣୀ ଯଥା ସମୟରେ ପହଞ୍ଚି ଯାଇ ମୋତେ ରକ୍ଷା କରିଥିଲା ସେଇ ବିପଦରୁ ସେ ମୋତେ ପୂରା ଟେକି ନେଇଗଲା ଉପରକୁ, ମା'ଙ୍କ ପାଖକୁ । ମା ସେତେବେଳେ ପ୍ରାର୍ଥନା ଘରେ କୃଷ୍ଣଙ୍କ ସମ୍ମୁଖରେ ପିତ୍ତଳର ପ୍ରଦୀପ ଜାଳୁଥିଲେ ।

ସେତେବେଳକୁ ମୋ ଫ୍ରକ୍ ଉପରେ ବଡ଼ ବଡ଼ ଟୋପା ରକ୍ତର ଦାଗ ଲାଗି ସାରିଥିଲା । ମୋର ଜଙ୍ଘ କୋଣରୁ ଉଷ୍ମ ରକ୍ତର ଧାରା ଛୁଟି ଚାଲିଥିଲା ଓ ଚଟାଣରେ ପଡ଼ୁଥିଲା ଟୋପାସବୁ । ମୁଁ ମା'ଙ୍କୁ କାନ୍ଦି କାନ୍ଦି କହିଲି—"ମା' ମୋର କଣ ଏ ହେଲା, ମୁଁ ମରିଯିବି । ମୋ ଭିତରେ କିଛି ଗୋଟାଏ ଭାଙ୍ଗି-ଯାଇଛି ବୋଧେ ନ ହେଲେ ଏପରି ରକ୍ତ ବୋହୁଚି କୁଆଡ଼ୁ ?"

ମା' ମୋତେ ଅନାବୃତା କରିଦେଲେ ଓ ଟିକିଏ ହସି କହିଲେ— "ତୋର କିଛି ହୋଇନି । ବାର କିମ୍ବା ତେର ବର୍ଷ ବୟସରେ ସବୁ ଝିଅଙ୍କର ଏମିତି ହୁଏ ।" ତା'ପରେ ସେ ମୋତେ ପୋଷାକ ବଦଳେଇବାକୁ କହିଲେ ଓ ଅନ୍ତର୍ବାସ ପରିଧାନ କରିବାର ପଦ୍ଧତି ଶିଖାଇଦେଲେ । ସେ ମୋତେ ବୁଝାଇ-ଦେଲେ, ମୁଁ ଯେ ଏଣିକି ମାଆ ହେବାକୁ ଯୋଗ୍ୟା, ଏ ରକ୍ତ ତାହାର ସଙ୍କେତ ।

ମୋତେ ପୋଷାକ ପରିବର୍ତ୍ତନ କରିବା ଦେଖି ଆମ ଚାକରାଣୀଟି ଖାଲି ହସୁଥିଲା । 'ଏ ଝିଅଟା କେଡ଼େ ମରଳ ମୁଁ'—ସେ କହିଲା ।

ରକ୍ତଧାରାରେ ଛନଛନ ଧରି ଓଦା ରହିବା ପରେ ମୁଁ ପୁଣି ପୂର୍ବାବସ୍ଥା ଫେରି ପାଇଲି । ମାଆ ହେବାର ଯୋଗ୍ୟତା ଆସିଗଲା ବୋଲି ଜାଣିବାରୁ

ମୋତେ ଖୁବ ଆନନ୍ଦ ଲାଗିଲା । ଯେତେ ଶୀଘ୍ର ସମ୍ଭବ ମୁଁ ମୋ ପାଇଁ ଏକ ସନ୍ତାନ କାମନା କଲି । ବୁଢ଼ୀମାଙ୍କ ଠାରୁ କୁନ୍ତୀଙ୍କ ବିଷୟରେ ଗପ ଶୁଣିଥିଲି । କୁନ୍ତୀଙ୍କର ସୁ-ପୁତ୍ର ଲାଭ କରିବାର ଉପାୟ ମୋତେ ଖୁବ ଭଲ ଲାଗିଥିଲା ।

କୁନ୍ତୀ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରି ପୁତ୍ର ମାଗିଥିଲେ । ସୂର୍ଯ୍ୟ ତାଙ୍କୁ ପୁତ୍ର ଦେଲେ, କର୍ଣ୍ଣପରି ସୁନ୍ଦର ପୁତ୍ର, ଯେ କାନରେ ଦୀପ୍ତ କୁଣ୍ଡଳ ଧାରଣ କରି ଜନ୍ମ ହୋଇଥିଲେ ।

ସ୍ନାନ ସାରି, ମୋର ଅନାବୃତ ଦେହକୁ ଖରାକୁ ଦେଖାଇ ମୁଁ ସୂର୍ଯ୍ୟ-ଦେବତାଙ୍କୁ ପ୍ରାର୍ଥନା କରିଥିଲି—"ହେ ସୂର୍ଯ୍ୟଦେବତା ! ମୋତେ ବି ପୁଅଟିଏ ପ୍ରଦାନ କର । ମୋର ସବୁକିଛି ନେଇଯାଅ । ମୋର ଭୂଜଲତା ନିଅ, ମୋର କୁଞ୍ଚିତ କେଶରାଶି ନିଅ. ମୋର କଠିନ କ୍ଷୁଦ୍ର ଚୁଚୁକଲଗା ବର୍ତ୍ତୁଳ ସ୍ତନଗୁଡ଼ିକୁ ନିଅ; ନିଅ, ମୋର ସବୁ କିଛି ନେଇ ପୁତ୍ରଟିଏ ଦିଅ ।" ମୁଁ ଯେତେ ଚିତ୍କାର କଲେ ବି କୌଣସି ଦେବତା ମୋତେ ତାଙ୍କର ପତ୍ନୀ କରିବାକୁ ମୋ ନିକଟକୁ ଆସିଲେ ନାହିଁ ତ ।

କ୍ରମଶଃ ମୁଁ ବଢ଼ିବାକୁ ଲାଗିଲି । ମୋର ଅଙ୍ଗର କେତେକ ନିଭୃତ ସ୍ଥାନରେ ଜାତ ହେଲେ ରୋମାବଳୀ । ବଦଳିଗଲା ମୋର ନିଃଶ୍ୱାସର ବାସ୍ନା । ଏବଂ ମୋର ବାପା ନାଚ ଶିକ୍ଷକଙ୍କୁ ଆସିବାକୁ ବାରଣ କରିଦେଲେ । ତାଙ୍କ ମତରେ—ମୋର ନାଚ ଶିଖିବାର ବୟସ ଅତୀତ ହୋଇଯାଇଥିଲା ।

ସେତେବେଳେ ଚୌରଙ୍ଗୀରେ ଜଣେ ନିପୁଣ ଦନ୍ତ-ଚିକିତ୍ସକ ଥିଲେ । ସେ ଭିଏନାରୁ ଉଚ୍ଚଶିକ୍ଷା ଅର୍ଜନ କରି ଫେରିଥିଲେ । ବାପା ମୋତେ ତାଙ୍କର ନିକଟକୁ ନେଇଗଲେ । ମୋର ବଙ୍କା ଓ ବେଢ଼େଙ୍ଗା ଦାନ୍ତଗୁଡ଼ିକୁ ସେ ସଜାଡ଼ିଦେଲେ । ମୋର ଅସୁନ୍ଦର ଦାନ୍ତଗୁଡ଼ିକ ସମାନ ଓ ସୁନ୍ଦର କରିସାରି ଶେଷରେ ସେ ପ୍ରକାଶ କଲେ—"ବର୍ତ୍ତମାନ ତୁମେ ଖୁବ୍ ସୁନ୍ଦର ଦେଖାଯାଉଛ ।"

ଆମ ପରିବାରର କେହି ଏମିତି ପ୍ରଶଂସା କରୁ ନ ଥିଲେ । ଫଳରେ ତାଙ୍କର ପ୍ରଶଂସା ଶୁଣି ଆନନ୍ଦରେ ମୋର ମୁହଁ ରଙ୍ଗା ହୋଇଗଲା । ସେଇଦିନ-ଠାରୁ ମୁଁ ପ୍ରସାଧନ ପ୍ରତି ବିଶେଷ ଆକୃଷ୍ଟ ହେଲି । ଶୋଇବାକୁ ଯିବା ପୂର୍ବରୁ ନିୟମିତ ବ୍ରସ୍ କଲି କେଶରାଶି ଓ ଦିନରେ ତିନିବାର ମୁହଁ ଧୋଇଲି । ମୁହଁରେ ବ୍ରଣଟିଏ ଫୁଟିଉଠିବା ଦେଖିଲେ, ମୁଁ ତା'ଉପରେ ଲିପ୍-ଷ୍ଟିକ୍ ମାରି ବ୍ରଣଟିକୁ

ରଙ୍ଗୀନ୍ କରିଦେଉଥିଲି । ଝିଙ୍କିଏ ଉଦ୍‌ବୁଦ୍ଧ ହେବା ଓ ସାମାନ୍ୟ ସୁଯୋଗ ମିଳିବା ମାତ୍ରେ ମୁଁ ଆଖିକୁ ଚଷମା ମୁକ୍ତ କରୁଥିଲି । କାରଣ, ମୋ ଧାରଣାରେ ମୋ ଆଖିଯୋଡ଼ିକ ଥିଲା ବେଶ୍ ରମଣୀୟ ।

ବଙ୍ଗଳା ଉପନ୍ୟାସରେ ବର୍ଣ୍ଣିତ ନାୟିକାମାନଙ୍କ ଆଖିରେ ଲାଗି ରହୁଥିଲା ବିଷାଦ । ସେଇ ବିଷାଦ ଥିଲା ନାୟକମାନଙ୍କ ପକ୍ଷରେ ଆକର୍ଷଣୀୟ । ମୁଁ ମଧ୍ୟ ସେଇପରି ବିଷଣ୍ଣ ଦିଶିବାକୁ ଚେଷ୍ଟା କଲି । କିନ୍ତୁ ବିଷାଦଭାବକୁ ଅାୟତ୍ତ କରିବା ସହଜ କଥା ନ ଥିଲା, କାରଣ ହସି ପକାଇବାପାଇଁ ଅନେକ କଥା ଅନେକ ଉପାଦାନ ମୋ ଆଗରେ ଥୁଆହୋଇଥିଲା । ଜଗତ ମୋ ପକ୍ଷରେ ଥିଲା ତାରୁଣ୍ୟ-ଭରା, ସୁଖମୟ ଓ ନାନାଭାବରେ ପ୍ରତିଶ୍ରୁତିସମ୍ପନ୍ନ ।

ସେତେବେଳେ ବୟସ ମୋର ତେର । ଗ୍ରୀଷ୍ମ ଛୁଟିରେ ଗଲି ଘରକୁ, ମାଲବାରକୁ । ସେଠି ଜଣେ ବିପ୍ଳବୀ ଯୁବନେତା ସହିତ ମୋର ସାକ୍ଷାତ ହେଲା । ବିପ୍ଳବାତ୍ମକ କାର୍ଯ୍ୟକ୍ରମ ପାଇଁ ସେ ସେତେବେଳକୁ କାରାବରଣ କରିସାରିଥିଲା । ମୁଁ ତାର ପ୍ରେମରେ ପଡ଼ିଯାଇଥିଲି । ହଁ, ପ୍ରେମରେ··· । କିନ୍ତୁ ମୋ ଭଲ ପାଇବାର ପ୍ରତି-ବାର୍ତ୍ତା ପାଇଲି ନାହିଁ ତାଙ୍କଠାରୁ । ଭଲ ପାଇବାରେ ତାଙ୍କର ଆସକ୍ତି ନ ଥିଲା ବୋଧେ । ରାଜନୀତି ପ୍ରତି ଥିଲା ତାଙ୍କର ଅସୀମ ଆଗ୍ରହ । ସେତେବେଳକୁ ସେ ସମସ୍ତ ପ୍ରସିଦ୍ଧ ରାଜନୈତିକ—ଦାର୍ଶନିକମାନଙ୍କର ଗ୍ରନ୍ଥଗୁଡ଼ିକ ପଢ଼ିସାରିଥିଲେ ଓ ଅନାୟାସରେ ଉଦ୍ଧାର କରିପାରୁଥିଲେ ସେମାନଙ୍କର ରଚନାରୁ । ସେ ଉତ୍ତେଜିତ ହେଲେ ତାଙ୍କର ଆଖିଡୋଳା ଯୋଡ଼ିକ ଉପରକୁ ଉଠିଯାଉଥିଲା, ଫୁଟି ଦିଶୁଥିଲା ଡୋଳା ତଳର ଧଳା ଅଂଶତିକ । ମୋର ସାନ-ବୁଢ଼ୀମାଙ୍କ କହିବା ଅନୁସାରେ—ସେ ଥିଲେ ସାପ-ଆଖିଆ ଓ ସେପରି ଚକ୍ଷୁସମ୍ପନ୍ନ ଲୋକଙ୍କୁ କେହି ବିଶ୍ୱାସ କରିବା କଥା ନୁହେଁ । ମୁଁ ଯେ ଯୁବକଜଣକର ରୂପରେ ମୁଗ୍ଧ ସେକଥା ବୋଧହୁଏ ସାନ ବୁଢ଼ୀ-ମା ଅନୁମାନ କରିପାରିଥିଲେ ମୋର ଆଚରଣ ବ୍ୟବହାର ଓ ଢଙ୍ଗରଙ୍ଗରୁ । ଯେତେ ଅଧିକ ସମୟ ସମ୍ଭବ ମୁଁ ପ୍ରିୟ ଯୁବକଙ୍କ ସହିତ ଗପିବା ଓ ବୁଲାଚଲା କରିବାକୁ ଭଲ ପାଉଥିଲି । କିନ୍ତୁ ଥରେ ହେଲେ ବି ସେ ମୋତେ ସ୍ପର୍ଶ କରି ନ ଥିଲେ, ଏପରିକି ବି ସେ ମୋ ପ୍ରତି ଅଧିକା ଆଗ୍ରହ ଦେଖାଇ ନ ଥିଲେ ।

କୁମାରନ୍ ନାମକ ଜଣେ ସ୍ଥାନୀୟ ଦରଜି ଦ୍ୱାରା ବୁଢ଼ୀ-ମା ମୋ ପାଇଁ ଦୁଇଟି ସବୁଜ ରଙ୍ଗର ଲମ୍ବା ସ୍କାର୍ଟ୍ ଓ ଦୁଇଟି ଖଇରିଆ ବ୍ଲାଉଜ୍ ତିଆରି କରିଦେଇଥିଲେ ।

ମୋର କିଛି ହେଲେ ଗହଣା ନ ଥିଲା । ମୋର ପୋଷାକ-ପରିଚ୍ଛଦ ଥିଲା ସାଧିକା ମାନଙ୍କ ସଦୃଶ । ସମ୍ଭବତଃ ତାହା ହିଁ ମୋର ପ୍ରଥମ ପ୍ରେମ ଏମିତି ନଷ୍ଟ ହୋଇଯିବାର କାରଣ ଥିଲା । ସମ୍ଭବତଃ ସେଇ କାରଣରୁ ପ୍ରେମ ଦେଇ, ହୃଦୟ ଦେଇ ମଧ୍ୟ ମୁଁ ପ୍ରତିଦାନ ପାଇପାରି ନ ଥିଲି । ସେଥିପାଇଁ, ପରେ ମୁଁ ଆରମ୍ଭ କଲି ଫୁଲ ପିନ୍ଧିବାକୁ, ଗଭାରେ । କବରୀରେ ଫୁଲ, ଆଖିରେ ବହ୍ନିଲତା ଓ ହୃଦୟରେ ଅପରିସୀମ ଭଲପାଇବା ନେଇ ମୁଁ ପୁଣି ଠିଆ ହେଲି ମୋର ପ୍ରିୟତମଙ୍କ ନିକଟରେ । କିନ୍ତୁ ସେ ମୋର ରୂପ ଓ ପ୍ରେମ ପ୍ରତି ଦୃଷ୍ଟି ନ ଦେଇ କହିଲେ— —"ସମୟ ନଷ୍ଟ ନ କର, ଆଜିଠାରୁ ମାର୍କସ୍ ଓ ଏଙ୍ଗେଲ୍‌ସ୍‌ଙ୍କ ରଚନା ସବୁ ପଢ଼ିବାକୁ ଆରମ୍ଭ କରିଦିଅ ।"

## ସତର

## ଚାଲିଗଲେ ସନ୍ନ୍ୟାସୀ ରହିଗଲା ଅଫିମର ବାସ୍ନା

ଦିନେ ସକାଳ ବେଳା, ମଧ୍ୟାହ୍ନ ଭୋଜନର ଠିକ୍ ଏକ ଘଣ୍ଟା ପୂର୍ବରୁ ସହସା ଦୁଆର-ଘଣ୍ଟି ବାଜି ଉଠିଲା । ଗୃହକର୍ତ୍ରୀ ଦୁଆର ଖୋଲିବା ମାତ୍ରେ ଭିତରକୁ ପଶିଆସିଲା ଜଣେ ଜୀର୍ଣ୍ଣ-ଶୀର୍ଣ୍ଣ ସନ୍ନ୍ୟାସୀ । ରାସ୍ତାର ଧୂଳିରେ ଶରୀର ତାର ଧୂସର ଦିଶୁଥିଲା । ସାଙ୍ଗେ ସାଙ୍ଗେ ଆମ ପୂଝାରୀ ତା'ଉପରେ ପାଟିକରି ଉଠିଲା—"ବାହାରି ଯା, ବାହାରି ଯା ଏ ଘରୁ । ଆମ ଘରକୁ କୌଣସି ସନ୍ନ୍ୟାସୀ ଆସିବା ଦରକାର ନାହିଁ । ତୋର ଯଦି ଭିକ ଦରକାର ତ ବାହାରେ ଠିଆ ହୋଇ ମାଗିବୁ । ଏମିତି ଦ୍ୱାର-ଘଣ୍ଟି ବଜାଇ ସିଧା ସିଧା କାହାକୁ କିଛି ନ ପଚାରି କେଉଁ ସନ୍ନ୍ୟାସୀ ଘର ଭିତରକୁ ପଶିଆସିବା କେଉଁ କାଳେ ଶୁଣା ଅଛି ?"

ବୁଢ଼ାଟି ତା' ପାକୁଆ ପାଟିରେ ଖାଲି ଟିକେ ହସିଲା । ତଳେ ରଖିଲା ତାର ଗଣ୍ଠିଲିଟି । ତା'ପରେ ମାଲୟାଲମ୍ ଭାଷାରେ କହିଲା—"ମୁଁ ଭିକ୍ଷୁକ ନୁହେଁ । ମୁଁ ଉତ୍ତର ମାଲବାରର ଜଣେ ସମ୍ଭ୍ରାନ୍ତ ପରିବାରର ଲୋକ । ଗତ ଚାଲିଶି ବର୍ଷ ଧରି ମୁଁ ତୀର୍ଥ କରି ବୁଲୁଛି । ମୁଁ ଆମ ଦେଶର ସବୁ ପ୍ରସିଦ୍ଧ ଓ ପବିତ୍ର ତୀର୍ଥସ୍ଥାନ ଯଥା :—କାଶୀ, ରାମେଶ୍ୱରମ୍, ହରିଦ୍ୱାର, ପୁରୀ, କେଦାରନାଥ, ବଦ୍ରୀନାଥ ପ୍ରଭୃତି ଦେଖି ସାରିଲିଣି ।"

ଆମେ ତା'ପାଇଁ ଗଲାସେ ଚହ୍ଲା ଆଣିବାକୁ ଯାଇଁ ସାଙ୍ଗେ ସାଙ୍ଗ ଗୃହକର୍ତ୍ରୀଙ୍କୁ କହିଲୁ । ମା'ଙ୍କୁ ଭଲମନ୍ଦ ଲାଗିବାକୁ ଡକାଗଲା ସନ୍ନ୍ୟାସୀଙ୍କୁ ସାକ୍ଷାତ କରିବାକୁ । ବୁଢ଼ା ଅତିଥିଟି ପ୍ରକାଶ କଲା 'ମୋ ନାମ ପଥିଆର୍ ।' ପାଖରେ ଠିଆ ହୋଇ ପୂର୍ଷୋତ୍ତମ କେବଳ ବରବର ହେଉଥାଏ, କିନ୍ତୁ ତା' ଅଭିଯୋଗ କେହି ଶୁଣିଲେ ନାହିଁ ।

ସନ୍ନ୍ୟାସୀର ଧୀର କଥାବାର୍ତ୍ତା ଆମକୁ ଭଲଲାଗୁଥିଲା । ସନ୍ନ୍ୟାସୀଟି ମା'ଙ୍କୁ କହିଲା—"ପ୍ରୌଢ଼ ଅବସ୍ଥାରେ ସହସା ମୋର ଧନ-ଧାନ୍ୟ ଭୋଗ ବିଳାସ ପ୍ରତି ବିତୃଷ୍ଣା ଆସିଲା ଏବଂ ଗୌତମ ବୁଦ୍ଧଙ୍କ ପରି ଦିନେ ରାତିରେ ମୁଁ ଗୃହ ଛାଡ଼ି ଚାଲିଗଲି ଶାନ୍ତିର ସନ୍ଧାନରେ । ବର୍ତ୍ତମାନ ମୁଁ ଅଠାଅଶୀ ବର୍ଷ ବୟସ୍କ । ତୁମେ ଯଦି ମୋତେ ଗୋଟିଏ ଦିନ ଏଠି ବିଶ୍ରାମ ନେବାକୁ ସୁବିଧା ଦେବ, ତେବେ ମୁଁ ଶକ୍ତି ସଂଗ୍ରହ କରିପାରିବି ଓ ଏଠାରୁ ଯିବି ପୁଣି···।"

"ହଁ, କାହିଁକି ନୁହେଁ ?"—ମୁଁ ଆଗେ କହିପକାଇଲି, କାରଣ ମୁଁ ଭଲ କରି ଜାଣିଥିଲି ଯେ ମା' ଅତିଥି ସତ୍କାରରେ ଆଦୌ କୁଣ୍ଠା ପ୍ରକାଶ କରିବେ ନାହିଁ । କିନ୍ତୁ, ପୂର୍ଷୋତ୍ତମ ଗରଗର ହୋଇ କହିଲା—"ମୁଁ ତୁମକୁ ଆଗରୁ କହିଦେଉଛି । ହଁ, ପରେ ମୋତେ ଦୋଷ ଦେବନି । କାରଣ, ମୁଁ ଏଇସବୁ ସନ୍ନ୍ୟାସୀମାନଙ୍କୁ ଭଲକରି ଚିହ୍ନେ । ଏମାନେ ଭଣ୍ଡ ।"

ପୂର୍ଷୋତ୍ତମ କଥା ଶୁଣି ସନ୍ନ୍ୟାସୀ ବୁଢ଼ାଟି ପୁଣି ଟିକିଏ ହସିଲା । କହିଲା—"ଆରେ ପୁଅ, ମୋ କଥା ଚିନ୍ତା କରିବା ଦରକାର ନାହିଁ । ମୁଁ ତୁମ କାହାରି ଉପରେ ବୋଝ ହେବିନି ।"

ବାପାଙ୍କ ଅନୁମତି ପାଇବା ପରେ ପାହାଚ ପଛ ପଟେ ଥିବା ଜାଗାଟିରେ ସନ୍ନ୍ୟାସୀଟି ତାର ଜିନିଷ ପତ୍ର ଖୋଲି ଖୋଲି କରି ରଖିଲା । ତାର ଥିଲା ଗୋଟିଏ ଶଙ୍ଖ, ଦୁଇ ମୂର୍ତ୍ତି ଶାଳଗ୍ରାମ, ଗୋଟିଏ ଘଣ୍ଟି, ଗୋଟିଏ ଧୂପଦାନି, ଏବଂ ନଡ଼ିଆ ସଢ଼େଇରେ ତିଆରି ହୁକାଟିଏ । ହୁକାଟିକୁ ଲକ୍ଷ୍ୟ କରି ପୁଷ୍ପାସ୍ତ୍ର ପଚାରିଲା—"ଏଇଟି କି କାମ୍ ପୂଜାରେ ଲାଗେ ?" ଗୃହକର୍ତ୍ରୀଟି ମଧ୍ୟ ସ୍ୱାମୀର ବ୍ୟବହାରରେ ରାଗିଗଲା ମନେ ମନେ । କାରଣ, ବୁଢ଼ାର କାହାଣୀ ତାକୁ ଭାରି ମଜା ଲାଗୁଥିଲା । ନିଜ ଅଞ୍ଚଳର ଭାଷାରେ କଥାବାର୍ତ୍ତା କରିବାପାଇଁ ସନ୍ନ୍ୟାସୀ ପରି ଲୋକଟିଏ ତାକୁ ମିଳୁଥିଲା କ୍ୱଚିତ୍ । ତେଣୁ ବୁଢ଼ାର ଆଗମନକୁ ସେ ଏକ କଲ୍ୟାଣ ବୋଲି ମନେ କରିଥିଲା । ଦିନେ ଗୃହକର୍ତ୍ରୀଙ୍କି ତାର କଳା ମତ ମତ

ହାତ ବଢ଼ାଇ କହିଲି "ମୋ ହାତ ଟିକେ ଦେଖନ୍ତୁ । ସନ୍ନ୍ୟାସୀମାନେ ସବୁ ଆଗତ-ଭବିଷ୍ୟ କହିପାରନ୍ତି ।"

ବୁଢ଼ା ସନ୍ନ୍ୟାସୀ ତାର ମୋଟା ମୋଟା ଆଙ୍ଗୁଳିଗୁଡ଼ିକୁ ଚିପି, ସିଧାକରି କହିଲା—"ଦେଖ, ତୁମକୁ ତୁମର ସବୁଠାରୁ ପାଖ ଲୋକଟି ସହିତ ଜଗିରହି ଚାଲିବାକୁ ହେବ । ସେ ତମପାଇଁ ଗୋଟିଏ ଛଦ୍ମବେଶୀ ସାପ । ଦିନେ ସେ ତୁମକୁ ଠକାଇ ଚାଲିଯିବ । ସେ ଖାଲି ତୁମର ସୁନାହାର ଓ ତୁମର ଉପାର୍ଜନକୁ ଚାହିଁ ବସିଛି ।"

ଗୃହିଣୀ ପଚାରିଲା—"ସେଇ ଠକଟି କିଏ ଗୋସେଇଁ ?"

ସନ୍ନ୍ୟାସୀ ଟିକିଏ ହସି କ୍ଷମାଦେବା ଭଙ୍ଗୀରେ ପ୍ରକାଶ କଲେ—"ତୁମକୁ ଆଉରି କଣ୍ କହିଦେବା ଦରକାର ?"

ସନ୍ନ୍ୟାସୀଟିର ଅସୂୟାସମ୍ପନ୍ନ ଭବିଷ୍ୟବାଣୀ ଗୃହିଣୀଟିକୁ ପାଗଳାମି କରି ଦେଉଥିଲା । ରାତିରେ ଶୋଇବାଘରେ ସେ ଅତିଶକ୍ତ ଭାବରେ ତାର ନୂତନ ସ୍ୱାମୀ ସହିତ କଳିଆ କରିବା ଆରମ୍ଭ କଲା । ସ୍ୱାମୀର ଭଲପାଇବା ଯେଣୁ ତା' ମନରେ ସନ୍ଦେହ ଜାଗି ଉଠିଥିଲା । ପ୍ରତିଦିନ ସକାଳେ ପ୍ରାତଃଭୋଜନ ସମୟରେ ପୂଝାରୀ ପଚାରେ—"ଏ ସନ୍ନ୍ୟାସୀ କେବେ ଏ ଘର ଛାଡ଼ିବ, ଆଜ୍ଞା ?"

କିନ୍ତୁ ସପ୍ତାହେ ବିତିଗଲା । ସନ୍ନ୍ୟାସୀ ଆମଘରେ ଥା'ନ୍ତି । ତାଙ୍କର ଶରୀର କ୍ଷିପ୍ରଗତିରେ ସୁସ୍ଥହୋଇ ଉଠୁଥାଏ । ମନ ବି ଥାଏ ଆନନ୍ଦରେ ସବୁବେଳେ । ମୁଁ ସ୍କୁଲ୍‌ରୁ ଫେରି ସନ୍ଧ୍ୟାବେଳେ ତାଙ୍କରି ନିକଟରେ ବସେ । ସେ ଗୀତ ଗାଆନ୍ତି । ସେଗୁଡ଼ିକ ମଧ୍ୟରୁ ଅନେକଟା ଅଶ୍ଳୀଳ । ଗୀତଗୁଡ଼ିକର ଅର୍ଥ ମୋର ପସନ୍ଦ ନ ଥିଲା, କିନ୍ତୁ ସେସବୁର ଛନ୍ଦ ଓ ଲହରି ମୋତେ ବେଶ୍ ଭଲ ଲାଗୁଥିଲା ।

ଦିନେ ସକାଳେ, ପ୍ରାତଃଭୋଜନ ପାଇଁ ବାପା ପାହାଚରେ ଓହ୍ଲାଇ ଆସୁଥାନ୍ତି ତଳକୁ । ତାଙ୍କ ନାକରେ ସନ୍ନ୍ୟାସୀ ବୁଢ଼ାର ହୁକାଗନ୍ଧ ବାଜିଲା । ବାପା ପଚାରିଲେ—"ବୁଢ଼ାଟା କଣ୍ ଏବେ ବି ଅଛି କି ।" ମା'ଟିକେ ତରଳ ଗଳାରେ ଉତ୍ତର ଦେଲେ—"ହଁ, ଯାଇନି ।"

"ତେବେ ତାକୁ ଯିବାପାଇଁ କହିଦିଅ"—କଠୋର ସ୍ୱରରେ ବାପା କହିଲେ—"ଆମେ ତ ତାକୁ ସବୁଦିନ ପାଇଁ ରଖିପାରିବାନି ?"

ବାପା ଗଲାପରେ, ସନ୍ନ୍ୟାସୀ ବୁଢ଼ା ମୋତେ ଅଲଗା ଡାକି କହିଲା—"ତୁମ ବାପା ମୋତେ ଯିବାପାଇଁ କହିଲେ। କିନ୍ତୁ ମୁଁ ଏଇ ପରିବାରଟିକୁ ବଡ ସ୍ନେହ କରିବାକୁ ଆରମ୍ଭ କରିଛି।" ସେ ନିଜର ଭାବରେ କାନ୍ଦୁଥାଏ। ମୁଁ ବି କାନ୍ଦି ପକେଇଲି। ଗୃହକର୍ତ୍ତ୍ରୀଟି ବି ସେଠି ଆସି ପହଞ୍ଚି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲା। ଘଟଣା ବଡ଼ ସାଂଘାତିକ ହୋଇଉଠିଲା। ତା'ପରେ ମା' ଆସି ପହଞ୍ଚିଲେ। ସେ ବାପାଙ୍କୁ ସନ୍ନ୍ୟାସୀ ଆଉ କିଛିଦିନ ରହିବା କଥା ବୁଝେଇ ମନେଇବେ ବୋଲି କଥା ଦେଲେ; କାରଣ ବୁଢ଼ାଟାର ଭ୍ରମଣ କରିବାର ଶକ୍ତି ଫେରିଆସି ନଥାଏ ସେତେବେଳକୁ।

ବୁଢ଼ା ସନ୍ନ୍ୟାସୀ ଆମ ଘରେ ଅତିଥି ହେବା ଫଳରେ ମୁଁ ଯେ ହିନ୍ଦୁ, ଏ ଧାରଣା ମୋର ପ୍ରଥମ କରି ହୋଇଥିଲା। ଆମର ମୁସଲମାନ ମୋଟର-ଚାଳକ ପ୍ରତି ବୁଢ଼ାଟିର ଆଚରଣ ଥିଲା ପ୍ରତିକୂଳାତ୍ମକ। ହୁକା ଟାଣୁ ଟାଣୁ ସେ କୁହେ—"ମୁସଲମାନଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ।"

ମୁଁ ପଚାରି ଦିଏ—"କାହିଁକି ନୁହେଁ ?" କାରଣ, ମୋର ସେତେବେଳେ ଅନେକ ମୁସଲ୍‌ମାନ ବାନ୍ଧବୀ ଥିଲେ। ଆମର ସମ୍ପୃକ୍ତ ଚକ୍ଷୁ-ବିଶାରଦ ଡାକ୍ତରଜଣକ ଥିଲେ ଜଣେ ମୁସଲ୍‌ମାନ୍। ତାଙ୍କ ନାମ ଥିଲା ଅହମଦ୍। ସେ ବେଶ୍ ମିଷ୍ଟଭାଷୀ ଓ ସୁନ୍ଦର ଲୋକ ଥିଲେ। ମୋ ସହିତ ପରିହାସ କରି ମୋତେ ବହୁତ ବହୁତ ହସାଉଥିଲେ ସେ। ମୋଟରଚାଳକ ମରଫେଦ୍ ବି ଥିଲା ଭାରି ସ୍ନେହଶୀଳ। କିନ୍ତୁ ସନ୍ନ୍ୟାସୀ ବୁଢ଼ା ଅକାଟ୍ୟ ଢଙ୍ଗରେ କହିଲା—"ଦେଖ, ଖୁବ୍ ଶୀଘ୍ର ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଯୁଦ୍ଧ ଲାଗିବ। ମୁସଲମାନ୍‌ମାନେ ଆମ ହିନ୍ଦୁ ନାରୀମାନଙ୍କର ଇଜ୍ଜତ ଅପହରଣ କରିବେ, ଆମର ପୁରୁଷମାନଙ୍କୁ ହତ୍ୟା କରିବେ !" ମୁଁ ତ ଡରିଗଲି। ଗୃହକର୍ତ୍ତ୍ରୀଟି ପୂରା ଅଚେତ ହେବା ଅବସ୍ଥାକୁ ଆସିଗଲା। ପୃଷ୍ଟାଶ୍ମି କହିଲା—"ଏ ବୁଢ଼ାଟା ଆଦୌ ସନ୍ନ୍ୟାସୀ ନୁହଁ। ଭଣ୍ଡଟେ। ସିଏ ଅନ୍ୟ ସମ୍ପ୍ରଦାୟର ଲୋକଙ୍କୁ ଏମିତି ଭୟାନକ ଭାବରେ ଘୃଣା କରେ ସିଏ କି ସାଧୁ ହୋ। ତା'ଛଡା ଇଏତ ଅଫିମ ଧୂଆଁ ଟାଣୁଚି..."

ପରେ ଦିନେ ସକାଳେ ଉଠି ଦେଖିଲି ବେଳକୁ ସନ୍ନ୍ୟାସୀ ନାହିଁ, କୁଆଡ଼େ ଚାଲିଯାଇଚି; ସାଙ୍ଗରେ ନେଇ ଯାଇଚି ତାର ଶଙ୍ଖ, ଧୂପଦାନୀ, ଘଣ୍ଟି ଓ ହୁକା। କେବଳ ଅଫିମର ବାସ୍ନା ରହିଥିଲା ପାହାଚ ତଳରେ।

ପୃଷ୍ଟାଶ୍ମି କହିଲା ଯେ ବୁଢ଼ାଟା ଗୋଟାଏ ଚୋର ପରି ପଳେଇଲା। ଗୃହକର୍ତ୍ତ୍ରୀ କହିଲା—'ନା ଠାକୁର ଦେବତାଙ୍କ ପରି ଅନ୍ତର୍ଦ୍ଧାନ ହୋଇ-ଯାଇଛନ୍ତି ସେ।

ସ୍କୁଲ ସାରି ଘରକୁ ଆସିଲେ, ସେଇଦିନଠାରୁ ମୋତେ ଧର୍ମ ଓ ଧାର୍ମିକ ଆଗ୍ରହ-ବିଗ୍ରହ ସମ୍ପର୍କରେ କହିବା ପାଇଁ କେହି ଜଣେ ରହିଲେ ନାହିଁ ।

୧୯୪୭ ମସିହାର ପ୍ରଥମ ଭାଗରେ କଲିକତାରେ ସାଙ୍ଘାତିକ ହିନ୍ଦୁ-ମୁସଲମାନ ଦଙ୍ଗା-କଣ୍ଟା ଆରମ୍ଭ ହୋଇ ଯାଇଥିଲା । ଆମ ସ୍କୁଲ୍‌ରେ ସବୁ କୁହାକୁହି ହେଉଥିଲେ ପିଅନ୍ ଅବ୍‌ଦୁଲାଦ୍ ବିଷୟରେ । ହିନ୍ଦୁମାନେ ତାକୁ କାଟି ଦେବାକୁ ଖୋଜୁଥା'ନ୍ତି ବୋଲି ଆମର ଜଣେକ ଶିକ୍ଷୟିତ୍ରୀ କାଲେ ତାକୁ ନିଜ ଶେଯ ତଳେ ଲୁଚେଇକରି ରଖିଥିଲେ । ଶୁକ୍ରବାର ଦିନ ଆଖି ପରୀକ୍ଷାପାଇଁ ମୋର ଡାକ୍ତର ଅହମଦ୍‌ଙ୍କ ନିକଟକୁ ଯିବାର ଥିଲା, କିନ୍ତୁ ଗୁରୁବାର ଦିନ ହିନ୍ଦୁମାନେ ତାଙ୍କ ଶରୀରକୁ କାଟି ଅଳିଆ ଗଦାରେ ଫିଙ୍ଗି ଦେଇଥିଲେ । ଅଧିକାଂଶ ସମୟରେ ଆମେ ଦୂରରୁ ଭାସି ଆସୁଥିବା ଧର୍ମ-ଭିତ୍ତିକ ସ୍ଲୋଗାନ୍ ଶୁଣିପାରୁଥିଲୁ । ସନ୍ଧ୍ୟାବେଳେ ଘାତକମାନେ ହାତରେ ଠେଙ୍ଗା ଓ ଅସ୍ତ୍ରଶସ୍ତ୍ର ଧରି ଶୋଭାଯାତ୍ରାରେ ବାହାରୁଥିଲେ, ସ୍ଲୋଗାନ୍ ଦେଇ ଦେଇ ।

ସ୍କୁଲ୍ ଓ ଦୋକାନସବୁ ବନ୍ଦ୍ ହୋଇଯାଇଥିଲା । କି ଦିନ କି ରାତି ଦୁଇ ଓଳି ଆମେ କେବଳ ଡାଲି ଓ ଭାତ ଖାଇ ରହୁଥିଲୁ । ପରିବା କିମ୍ବା ମାଂସ କେଉଁଠି ହେଲେ ମିଳୁ ନ ଥିଲା । ମାଲିବାରକୁ ବୁଲିଯିବା, ଏପରିକି ବୁଢ଼ୀ-ମାଙ୍କ ସହିତ ଯୋଗାଯୋଗ ରଖିବା ମଧ୍ୟ ଥିଲା ଆମ ପକ୍ଷରେ ଅସମ୍ଭବ । ତାକ ସମ୍ପୂର୍ଣ୍ଣ ଅଚଳ । ଥରେ, ଗୋଟିଏ ଟ୍ରକ୍ ଉପରେ ଦଳେ ଶିଖ ହସି ହସି ଯାଉଥିବା ଦେଖିଲୁ । ଗୋଟିଏ ହଳଦିଆ ବୃଦ୍ଧୀର ଶବକୁ ବର୍ଚ୍ଛା ମୁନରେ ଫୁଟାଇ ଟେକି ଧରିଥା'ନ୍ତି ସେମାନେ ।

ମର୍‌ଫେଦ୍ ବଦଳରେ ନରେଶ ନାମକ ମୋଟରଚାଳକ ବାପାଙ୍କୁ ଅଫିସ୍ ନେବା ଆଣିବା କଲା । ନରେଶ ଥିଲା ବଡ଼ ଚତୁର ଓ ଜାଣିବା ଶୁଣିବା ଲୋକ । ମୋଟର୍‌ର ଭିତର ଖୋପରେ ସେ ଗୋଟିଏ ମୁସଲମାନ ଟୋପି ଓ ଗୋଟିଏ ହିନ୍ଦୁ ପଗଡ଼ି ଲୁଚାଇ ରଖିଥିଲା । ମୁସଲମାନ୍ ଅଧ୍ୟୁଷିତ ଅଞ୍ଚଳ ପାର୍କ୍ ସର୍କସ୍ ବାଟେ ଗଲାବେଳେ ସେ ମୁସଲମାନ ଟୋପି ପିନ୍ଧି ଲୋକଙ୍କୁ ବୋକା ବନେଇ ଦେଉଥିଲା । ପକ୍ଷାନ୍ତରେ, ଯେଉଁ ଜାଗାରେ ହିନ୍ଦୁଲୋକ ଅପେକ୍ଷାକୃତ ବେଶୀ, ସେଠି ସେ ପଗଡ଼ି ଲଗାଇ ବୁଲୁଥିଲା । ପାର୍କ୍ ସର୍କସ୍ ବଜାର ପଛପଟରୁ ସେ କେବଳ ଆମ ପାଇଁ ମଝିରେ ମଝିରେ ଆଣି ଦେଉଥିଲା ଗୋପନ ଉପହାର—ଗୋଟିଏ ଛୋଟ ବୋଇତାଳୁ କିମ୍ବା ଗୋଟିଏ କଦଳୀ ।

ତା'ପରେ ଆମେ ଲେକ୍ ଏଭେନ୍ୟୁରେ ଥିବା ଗୋଟିଏ ଶ୍ରେଷ୍ଠ ଘରକୁ ବସା ପରିବର୍ତ୍ତନ କଲୁ । ସେଠି ରହିବାର ପ୍ରାୟ ସପ୍ତାହେ ଖଣ୍ଡେ ବିତିଚି କି ନାହିଁ, ଆମ ଘର ଆଡ଼କୁ ପାଟି-ଗୋଳର ଶବ୍ଦ ମାଡ଼ି ଆସିଲା । ସେତେବେଳେ ସମୟ ମାତ୍ର ସନ୍ଧ୍ୟା ଆଠଟା । ଦୋଭାଯାତ୍ରୀଙ୍କ ଆଲ୍ଲା-ହୋ-ଆକବର୍ ର କର୍କଶ ଧ୍ୱନିରେ ଗଗନ ପବନ ନିନାଦିତ ହେଉଥାଏ । ଗୃହପତି ଥିଲେ ଜଣେ ଡାକ୍ତର । ବୟସ ତାଙ୍କର ସେତେବେଳେ ଷାଠିଏରୁ ଅଧିକ । ସେ ବନ୍ଧୁକ ବାହାର କଲେ ଓ ଯୁବକ ପୁଅକୁ ଫାଟକ ପାଖରେ ରହି ଆତତାୟୀମାନଙ୍କ ଗତିବିଧି ଲକ୍ଷ୍ୟ କରିବାକୁ ନିର୍ଦ୍ଦେଶ ଦେଲେ । ମୋ ବାପାଙ୍କ ନିକଟରେ ହାତ ବାଡ଼ିଟିଏ ଛଡ଼ା ଅନ୍ୟକିଛି ଅସ୍ତ୍ର ନ ଥିଲା । କିନ୍ତୁ ସେ ମଧ୍ୟ ଫାଟକ ପର୍ଯ୍ୟନ୍ତ ଗୃହପତିର ପୁଅ ସହିତ ଗଲେ । ସ୍ତ୍ରୀ-ଲୋକମାନେ ସମସ୍ତେ ଉପର ମହଲାର ଗୋଟିଏ କୋଠରୀରେ ଜମା ହୋଇ କାନ୍ଦିବାକୁ ଲାଗିଲେ ଘୁଁ-ଘୁଁ କରି । ମୁଁ ମଧ୍ୟ ସେତେବେଳେ ଉତ୍କଣ୍ଠିତ ହୋଇ ପଡ଼ିଥିଲି । ପାହାଚ ଉପରେ ଗୃହପତିର ଦ୍ୱିତୀୟ ପୁଅ ସହିତ ବସି ଚୀନାମାନଙ୍କ ଯନ୍ତ୍ରଣା ଦେବାର ପଦ୍ଧତି ବିଷୟରେ ଚର୍ଚ୍ଚା କରୁଥିଲି ।

କିନ୍ତୁ ଆତତାୟୀମାନେ ଏ ରାସ୍ତାରେ ପହଞ୍ଚିବା ପୂର୍ବରୁ ଅପ୍ରତ୍ୟାଶିତ ଦୁରବସ୍ଥାର ସମ୍ମୁଖୀନ ହେଲେ । ସେମାନେ ଛିନ୍ନ-ଛତ୍ର ହୋଇ ଏଣେ ତେଣେ ପଳାଇଗଲେ । ଆମେ ନିଜ ନିଜ ଘରେ ନିଶ୍ଚିନ୍ତରେ ଧର୍ମ ଓ ରକ୍ତପାତ ବିଷୟ ଭାବି ଭାବି ଶୋଇପଡ଼ିଲୁ ସେ ଦିନ ।

# ଅଠର

## ଯୌନ ସମ୍ପର୍କ…

କଲିକତାର ଲେକ୍ ଆଭେନ୍ୟୁ ଫ୍ଲାଟ୍‌ଟି ମ୍ୟାନସନ ଧରଣର ଥିଲା । ଶୋଇବା କୋଠରୀ ଦୁଇଟି, ଗୋଟିଏ ସାନ ଧରଣର ବୈଠକଖାନା, ପଛ ପଟରେ ଗୋଟିଏ ଖୋଲା ବାରଣ୍ଡା ଓ ରୋଷେଇ ଧାଇଖାନା ଇତ୍ୟାଦି ।

ଉପର ମହଲାରେ ଗୃହପତି, ତାଙ୍କର ଚର୍ବିଲ ପତ୍ନୀ ଓ ଦୁଇପୁଅ ରହୁଥିଲେ । ଆମର ବୈଠକଖାନାରେ ନକଲି ମର୍ମରରେ ପ୍ରସ୍ତୁତ ଗୃହୋଟି ପାହାଚ

ଥିଲା । ବାହାରୁ ସାଧାରଣ ଭାବେ କେହି ଆସିଲେ ଆମେ ସେଇଠି ବସି ଗପୁଥିଲୁ । ଆମ ଆଖିରେ ପଡ଼ୁଥିଲା ବଗିଚା । ବଗିଚାର ହେଜ୍ ବୁଦାଗୁଡ଼ିକ ସୁ-କର୍ତ୍ତିତ ଥିଲା ଓ ରଙ୍ଗୀନ ଫୁଲ ସବୁ ଭଲକରି ଲଗା ହୋଇଥିଲା ।

ବଗିଚାରେ ଥିବା ଗୋଟିଏ ମାତ୍ର ବେତ ଚଉକିରେ ସବୁବେଳେ ଗୃହପତି ବସି ରହୁଥିଲେ । ସେ ବେଶ୍ ସୁନ୍ଦର ଓ ଖୁସିମିଜାଜ୍‌ର ଥିଲେ । ପ୍ରତିଦିନ ସକାଳେ ପ୍ରାତଃଭୋଜନ ପରେ ସେ ପାଇପ୍ ଟାଣୁଥିଲେ । ପ୍ରାତଃଭୋଜନ ସେ ଏକୁଟିଆ ତାଙ୍କର ବ୍ୟକ୍ତିଗତ କୋଠରୀରେ ବସି ଖାଉଥିଲେ, ଯେଉଁ କୋଠରୀଟି ଆମ ବାରଣ୍ଡାକୁ ଲାଗିଥିଲା ।

ତାଙ୍କୁ ଜଣେ ନିଃସଙ୍ଗ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ । କାରଣ ତାଙ୍କର ପତ୍ନୀ ହିଷ୍ଟିରିଆ ରୋଗରେ ପୀଡ଼ିତା ଥିଲେ; ପ୍ରତି ମାସରେ ଅତି କମ୍‌ରେ ଦୁଇଥର ରୋଗଟି ପ୍ରକାଶ ପାଉଥିଲା । ହିଷ୍ଟିରିଆ ଲାଗିଲେ ସେ ସ୍ୱାମୀଙ୍କୁ ବଙ୍ଗଳାରେ ଗାଳି ଦେଉଥିଲେ । ପଚାରୁଥିଲେ ବାରମ୍ବାର—"କେଉଁଠି ତୁମେ ସେଇ ଗୋରା ମାଇକିନାକୁ ଲୁଚାଇ ରଖିଚ କୁହ ।" ମା'ଙ୍କର ଗାଳି ଆରମ୍ଭ ହେଲେ ପୁଅମାନେ ଚାଲିଯାଉଥିଲେ ପଦାକୁ ଓ ଅବସ୍ଥା ଶାନ୍ତ ହେଲେ ଘଣ୍ଟାଏ ଦିଘଣ୍ଟା ପରେ ଫେରୁଥିଲେ । ଡାକ୍ତର ବା ତାଙ୍କର କାନ୍ଦଣା ଓ ଚିତ୍କାର ପ୍ରତି ଆଦୌ କାନ ଦେଉ ନଥିଲେ । ଗୃହପତି ଧଳା ବେତ ଚଉକିରେ ବସି ପାଇପ୍ ଟାଣି ଚାଲୁଥିଲେ । ଦିନେ ଦିନେ ଯେବେ ଗୃହପତି ତାଙ୍କ ଚିକିତ୍ସା-ସଦନକୁ ଯାଇଥା'ନ୍ତି, ସ୍ତ୍ରୀ ମୋଟର ଚାଳକକୁ ବହଲାଇ ଫୁସୁଲାଇ ପଚାରି ଦିଅନ୍ତି—"ଆରେ, ମୋତେ ଟିକେ ଏଙ୍କର ପ୍ରେମିକା କଥା କହ । ତୁ ପ୍ରତି ସପ୍ତାହରେ ଅନେକ ଥର ତା' ଘରକୁ ସ୍ୱାମୀଙ୍କୁ ନେଇ ଯାଉଛୁ, ତୁ ନିଶ୍ଚୟ ସେଇ ଗୋରା ମାଇକିନାର ପ୍ରକୃତ ଠିକଣା ଜାଣୁ ।"

ଆମ ଘରକୁ ବେଶୀ ଲୋକ ବୁଲିବାକୁ ଆସୁ ନଥିଲେ । ମାତ୍ର ଦୁଇଟି ଦମ୍ପତି ନିୟମିତ ଆସୁଥିଲେ ଆମ ବସାକୁ, ବାପାଙ୍କର ବହୁଦିନର ବନ୍ଧୁ ଶ୍ରୀ ଓ ଶ୍ରୀମତୀ ପାନକର୍ ଓ ତରୁଣ ଦମ୍ପତି ଶ୍ରୀ ଓ ଶ୍ରୀମତୀ କୁନ୍‌ଡ୍ରପ୍‌ପା । ଶ୍ରୀମତୀ କୁନ୍‌ଡ୍ରପ୍‌ପା ଥିଲେ ଅପୂର୍ବ ସୁନ୍ଦରୀ ଓ ଖୁବ୍ ବେଶୀ ଫେସନ୍ ସଚେତନ । ମୁଁ ଦିନେ ଦିନେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଯାଉଥିଲି ।

ସେ ମୋତେ ସୌନ୍ଦର୍ଯ୍ୟ ରକ୍ଷାର ଗୋପନ ଉପାୟ ବତାଇଦେଉଥିଲେ । ମୋ ନିକଟରେ ସେ ଥିଲେ ଖୋଲା ପ୍ରକୃତିର ଓ ସବୁ ପ୍ରଶ୍ନ ଗୁଡ଼ିକର ଖୋଲା

ଖୋଲି ଉତ୍ତର ଦେଉଥିଲେ । ଅବଶ୍ୟ ସେତେବେଳେ ସେ ଗୁଡ଼ିକୁ ମୁଁ ବିଶ୍ୱାସ କରିପାରି ନ ଥିଲି ।

ମୋ ବାପା-ମାଙ୍କ ନିକଟକୁ ରାଜନୀତି ଓ ସାହିତ୍ୟ ବିଷୟ ଚର୍ଚ୍ଚା କରିବାକୁ ଆସୁଥିବା ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଶୃଙ୍ଗାରକାଳୀନ ଉତ୍ତେଜନା ପାଇବା ଉଦ୍ଦେଶ୍ୟରେ ଯେ ଅନ୍ଧକାରର ଅନ୍ତରାଳରେ ଯୌନ-ଉଦ୍ଘାଟନ ବିଦ୍ୟା ଅଭ୍ୟାସ କରୁଥିଲେ, ତାହା ଜାଣି ମୁଁ ପ୍ରଥମେ ବିଶ୍ୱାସ କରିପାରି ନ ଥିଲି । ଅବିଶ୍ୱାସରେ ମୁଁ ହସି ପକାଇଲି । ବିବାହିତ ନର-ନାରୀଙ୍କ ମଧ୍ୟରୁ ପ୍ରତ୍ୟେକେ କଣ ବିଛଣାରେ ଅଶାଳୀନ ଥିଲେ, ପ୍ରତ୍ୟେକ କଣ ଥିଲେ ଜଣେ ଜଣେ ସର୍କସ୍ ଖେଳାଳୀ ? ମୁଁ ଘୃଣାକରେ ବିବାହ'—ତାଙ୍କୁ କହିଥିଲି—"ଅନ୍ୟ କେହି ମୋର ନଗ୍ନ ଦେହ ଦେଖୁ, ଏହା ମୁଁ ଘୃଣା କରେ ।"

ସେଇ ସମୟରେ, ମୋର ଯେତେବେଳେ ଚଉଦବର୍ଷ, ବାପା ମୋ ପାଇଁ ଜଣେ ଘରୋଇ ଚିତ୍ରକଳା ଶିକ୍ଷକ ଠିକ୍ କଲେ । ସେ ଜଣକ ଥିଲେ ଡେଙ୍ଗା ଓ ଶ୍ୟାମଳ, ବୟସ ପ୍ରାୟ ଅଣତିରିଶ ହେବ । ସମ୍ଭ୍ରାନ୍ତ ବଙ୍ଗୀୟଙ୍କ ଭଳି ସେ ବେଶ୍ ଚିକ୍କଣ ତଳ ପର୍ଯ୍ୟନ୍ତ ଲୋଟୁଥିବା ପୋଷାକ ପିନ୍ଧୁଥିଲେ । ପ୍ରଥମ ଦିନରେ ସେ କଳା-ଲକ୍ଷ୍ମୀଙ୍କ ଚିତ୍ର ଆଙ୍କିବା ଶିଖାଇଥିଲେ,— ଅବଶ୍ୟ ଦେବୀଙ୍କ ନାମଟିକୁ ସେ 'କୋଲ୍-ଲକ୍ଷ୍ମୀ' ବୋଲି ଉଚ୍ଚାରଣ କରୁଥିଲେ । ମୋର ଅଙ୍କନର ପ୍ରଶଂସା କରି ସେ କହୁଥିଲେ—"ତୁମର ହାତ ବେଶ୍ ଭଲ ।"

ସେ ପ୍ରତି ବୁଧବାର ସନ୍ଧ୍ୟାକୁ ଆସୁଥିଲେ । ପୂର୍ବାହ୍ଣରୁ ନ କହି ମୁଁ ନିଜେ ଗୋଟିଏ ଟ୍ରେ-ରେ ତାଙ୍କ ପାଇଁ ସିଝା-କଦଳୀ, ବରା, ଇଡ଼ଲି ଓ ଚା' ନେଇ ଆସୁଥିଲି । ସେ ସମ୍ମାନର ସହିତ କଥାବାର୍ତ୍ତା କରୁଥିଲେ ମୋ ସହିତ । ତାଙ୍କ ଦୃଷ୍ଟିରେ ମୁଁ ବେଶ୍ ବଡ଼ ହୋଇ ଯାଇଥିଲି । ସେ ମୋର ଅଙ୍କିତ ଛବି ଦେଖୁଥିଲା ବେଳେ ମୁଁ ତାଙ୍କର ଖଇରିଆ କାନ ଓ ସୁନ୍ଦର ପାଟିକୁ ମୁଗ୍ଧ ହୋଇ ଚାହିଁ ରହୁଥିଲି ।

ନାଲି ଧଡ଼ି ଥିବା ଗୋଟିଏ ଧଳାରଙ୍ଗର ଶାଢ଼ୀ ମୁଁ କିଣି ଆଣିଲି; ଯେଉଁ ଧରଣର ଶାଢ଼ୀ ସାଧାରଣତଃ ବଙ୍ଗୀୟ ଗାଉଁଲି ସ୍ତ୍ରୀ ଲୋକମାନେ ପିନ୍ଧନ୍ତି, ଠିକ୍ ସେଇରକମର । ମୋର ବାଳକ-ସୁଲଭ ଦେହକୁ ମୁଁ ସେଇ ଶାଢ଼ୀରେ ଆବୃତ କଲି । ବୟସ୍କ ହେବା ମୁଁ ପାଇଁ ଏତେ ବ୍ୟାକୁଳ ଓ ଏତେ ଚଞ୍ଚଳ ହୋଇ ଉଠିଥିଲି ଯେ ମୋର ପ୍ରସାଧନରେ ବି ତାହା ଫୁଟି ଉଠୁଥିଲା । ମୁଁ ମୋ ବାଳସବୁକୁ ବ୍ରସ୍ କରିବାରି ଯିବା ଠିକ୍ ଗୋଟିଏ ସାପକୁ ମାରିବା ଉଦ୍ଦେଶ୍ୟରେ

ପ୍ରହାର କରିବା ସଦୃଶ ଥିଲା । ମୁଁ ଯେତେବେଳେ ଦର୍ପଣ ସାମ୍ନାରେ ଠିଆ ହେଉଥିଲି, ନିଜର ଛବି ଦେଖି ଦୀର୍ଘ ସମୟ ଧରି ସମ୍ପୂର୍ଣ୍ଣ ହଜି ଯାଉଥିଲି । ମୋର ହାବରେ ଭାବରେ ପ୍ରକାଶିତ ପରିବର୍ତ୍ତନ ବାପା-ମାଙ୍କ ଆଖିରୁ ବାଦ୍‌ଗଲା ନାହିଁ । ମୁଁ ଯେ ଟ୍ୟୁସନ୍ ପାଇଁ ନିଜକୁ ସଜାଉଛି, ମୁଁ ଯେ ଶିକ୍ଷକଙ୍କ ପାଇଁ ଶାଢ଼ୀ ପିନ୍ଧୁଛି, ମୁଁ ଯେ ତାଙ୍କର ପାଖକୁ ଓଜନିଆ ଗ୍ରନ୍ଥ ନେଇ ପାହାଚରେ ଚଞ୍ଚଳ ଆସୁ ଆସୁ ଝୁଣ୍ଟି ପଡ଼ୁଛି । ହଁ, ତାଙ୍କର ପାଇଁ ତ । ତେଣୁ, ହଠାତ୍ ଦିନେ ଚିତ୍ର-ଶିକ୍ଷା ସ୍ଥଗିତ ରଖାଗଲା । ବାପା ଶିକ୍ଷକଙ୍କୁ କହିଦେଲେ ଯେ ବର୍ତ୍ତମାନ ମୋର ସ୍କୁଲ ପରୀକ୍ଷାରେ ଭଲ କରିବା ପାଇଁ ସବୁତକ ସମୟ ଉପଯୋଗ ହେବା ଦରକାର, ଚିତ୍ର ଆଙ୍କିବାକୁ ବେଳ କାହିଁ ? ବାପାଙ୍କ କଥାକୁ ସମ୍ମତିରେ ମୁଣ୍ଡ ହଲାଇ ଶିକ୍ଷକ ଫେରିଗଲେ ।

ସେ ଶୁଭକାମନା କରି ଚାଲିଗଲା ପରେ ମୁଁ ଉପଲବ୍ଧି କଲି ଯେ ମୁଁ ତାଙ୍କୁ ଭଲପାଏଁ । ମୋର ସଙ୍କୀର୍ଣ୍ଣ ଶଯ୍ୟା ଉପରେ ଶୋଇ ରହି ରାତିରେ କେବଳ ତାଙ୍କର ମୂର୍ତ୍ତି ଓ ତାଙ୍କର ସୁନ୍ଦର କାନ-ଫୁଲା କଥା ଭାବି ଚାଲିଲି । ତାଙ୍କର ମୁଖ ଚୁମ୍ବନ କରିବାର ପିପାସା ମୋ ଭିତରେ ଜାଗିଉଠିଥିଲା । କିନ୍ତୁ ଜାଣିଶୁଣି ମୁଁ ସେପରି କାର୍ଯ୍ୟରୁ ନିବୃତ୍ତ ହୋଇଥିଲି । ମୁଁ କେତେ ନିର୍ବୋଧ ସତେ । ମୋର ଇଚ୍ଛା ହେଉଥିଲା ଶ୍ରୀମତୀ କୁନ୍ହପାଙ୍କ ନିକଟରୁ ଏ ବିଷୟରେ ପରାମର୍ଶ ଆଣିବାକୁ । କିନ୍ତୁ ମୋର ଭୟ ଥିଲା, ଯେ ସମ୍ଭବତଃ ସେ କେବଳ ମୋର ମୁଗ୍ଧ-ଅବସ୍ଥା ଦେଖି ହସିବେ ମାତ୍ର । ତାଙ୍କୁ କହିଲି ନାହିଁ । ମନର କଥା ପ୍ରକାଶ କଲି ମୋର ଜଣେ ତରୁଣୀ ସ୍କୁଲ୍-ସାଥୀ ଆଗରେ । ଟିକିଏ ମାତ୍ର ହେଲା ପ୍ରଦର୍ଶନ ନ କରି ସେ ମୋତେ ଗୋଟିଏ ବସ୍‌ରେ ଉଠାଇ ଦେଲା, ପ୍ରିୟ ପୁରୁଷଟିର କର୍ମସ୍ଥଳର ଯେତେ ନିକଟକୁ ସମ୍ଭବ ତହିଁରେ ଯାଇହେବ ବୋଲି । ବସ୍‌କୁ ଉଠିବାରେ ସହାୟତା କଲାବେଳେ ବାନ୍ଧବୀଟି କହିରଖିଥିଲା—"ତାଙ୍କୁ ତୋ' ମନର କଥା ମୁହଁ ଖୋଲି ନିଶ୍ଚୟ କହିବୁ ।"

ମୁଁ କିନ୍ତୁ ନର୍ଭସ୍ ହୋଇ ଯାଇଥିଲି । ମୋ ନୀଳ ସ୍କୁଲ୍-ପୋଷାକର ପିଠିପାଖ ଝାଳରେ ଓଦା ହୋଇ ଯାଇଥିଲା । ଘରକୁ ଲେଉଟିବା ପାଇଁ ଯେ ମୋ ନିକଟରେ ଯଥେଷ୍ଟ ପଇସା ନାହିଁ ବସ୍‌ରେ ବସିବା ପରେ ମୁଁ ତାହା ଆବିଷ୍କାର କଲି । କାନ୍ଦ ମାଡ଼ିଲା, କିନ୍ତୁ କାନ୍ଦିଲି ନାହିଁ, କୌଣସିମତେ ଚେଷ୍ଟାକରି ଲୁହକୁ ସବୁ ଫେରାଇ ଦେଲି ପଛକୁ । ବସ୍ ବନ୍ଦ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲି । ଯେମିତି ବସ୍ ରହିଲା ସାଙ୍ଗେ ସାଙ୍ଗେ ଡେଇଁ ପଡ଼ିଲି ତଳକୁ । ତାଙ୍କ କୋଠରୀରେ ପହଞ୍ଚିବା ପାଇଁ ଗୋଟିଏ ଅଗଣା ଅତିକ୍ରମ କରିବାକୁ ପଡ଼ିଲା ।

ଗୋଟିଏ ବଡ଼ ବର୍ଗାକାର କ୍ଷେତ୍ରର କେନ୍ଦ୍ରରେ ସ୍ଥାପିତ ଥିଲି କୌଣସି ଦେବତାର ପ୍ରତିମୂର୍ତ୍ତି । ମୁଁ ସେଇ ମୂର୍ତ୍ତି ନିକଟରେ ପହଞ୍ଚିଲା ବେଳକୁ ଆରମ୍ଭ ହୋଇ ଯାଇଥିଲା ବର୍ଷା । ହଁ, ବର୍ଷା ।

ବଙ୍ଗ ପ୍ରଦେଶରେ ପୂର୍ବରୁ କୌଣସି ସଙ୍କେତ ନ ଦେଇ ସହସା ଖସିପଡ଼େ ବର୍ଷା, ଠିକ୍ ଜଣେ ଆତ୍ମ-ବିସ୍ମୃତ ହିଷ୍ଟିରିଆ ରୋଗାକ୍ରାନ୍ତ ରମଣୀର ଲୁହ ଭଳି ଯେ ନିଜେ ବି ବୁଝିପାରେନା ସହସା କାନ୍ଦିବାର କାରଣ । ମୁଁ ଦେବ-ମୂର୍ତ୍ତିର ମୁହଁ ତଳେ ମସ୍ତକ ଅବନତ କରି ବର୍ଷାର ଉପଦ୍ରବରୁ ବଞ୍ଚାଇବାକୁ ଚେଷ୍ଟା କଲି ମୋର ମୁହଁଟିକୁ । କିନ୍ତୁ ବିଫଳ ହେଲି ସେଥିରେ । ମୁଁ ସେଇ ଦେବତାଙ୍କ ନାମ ଜାଣି ନ ଥିଲି । ଯୁଗ ଯୁଗର ବର୍ଷାମାଡ଼ ଖାଇ ମୂର୍ତ୍ତିଟିର ମୁହଁ ଦାଗ-ସଙ୍କୁଳ ହୋଇଯାଇଥିଲା, କିନ୍ତୁ ତାଙ୍କର ଓଷ୍ଠଟି ଥିଲି ଆଶ୍ଚର୍ଯ୍ୟଜନକ ଭାବେ ରମଣୀସୁଲ୍ଭ; ସୂକ୍ଷ୍ମ ଦରହାସରେ କୋମଳ ହୋଇ ଉଠିଥିଲା ତାଙ୍କର ଓଷ୍ଠଧାର । ମୂର୍ତ୍ତିଟିକୁ ଆଲିଙ୍ଗନ କରି ମୁଁ ସେଠି ଠିଆ ହୋଇଗଲି କେଇଟି ମୁହୂର୍ତ୍ତ । ତା'ପରେ ମୋର ମନରେ ଜାଗି ଉଠିଲା ଅନ୍ୟ ଓଠଟିର ଛବି । ତାଙ୍କର ଓଠ, ତାଙ୍କର ଈଷତ୍ ନାଲି କାନଫଳା ଓ ତାଙ୍କ ସାନ୍ନିଧ୍ୟରେ ବିତିଥିବା ମୋର ଆକାଂକ୍ଷା-ଭରା ଘଣ୍ଟାଗୁଡ଼ିକର ସ୍ମୃତି ମୋତେ ଚହଲାଇ ଦେଲା, ଏବଂ ମୁଁ ଦଉଡ଼ିଗଲି ତାଙ୍କର କୋଠରୀକୁ; ବ୍ୟସ୍ତ ଓ କର୍କଶ ଭାବରେ ସଶବ୍ଦରେ ମୁଁ ଦୁଆର ଖୋଲି ଦେଲି ନିଜେ ।

ଟେବୁଲ୍ ନିକଟରେ ସେ ବସିଥିଲେ । ସମ୍ମୁଖରେ କେତୋଟି ହଳଦିଆ ଫାଇଲ୍ ଥୁଆ ହୋଇଥିଲା । ସେ ଆଖି ଟେକ ମୋତେ ଗୃହିଲେ । ଆଶ୍ଚର୍ଯ୍ୟର ସହିତ ସେ ପ୍ରଶ୍ନ କଲେ—"ତୁମି ?" (ତୁମେ ? ) ସେ ବଙ୍ଗଳା ଭାଷାରେ ପଗୃରି-ଥିଲେ ।

ଏଇ ସମୟରେ ବର୍ଷା-ମିଶା ଝଡ଼ଟିଏ ପଶି ଆସିଲା ଭିତରକୁ ଅଗଣାର ଧୂଳି ନେଇ । ସେ ଚଉକିରୁ ଉଠି କବାଟ ବନ୍ଦ କରିଦେଲେ ।

ତା'ପରେ ମୁଁ ଆଉ ନିଜକୁ ଧରି ରଖିପାରିଲି ନାହିଁ । ତାଙ୍କ ଜାମାର ଆଗ ପଟରେ କଡ଼େଇ ଦେଲି ନିଜକୁ । କାନ୍ଦି ଉଠିଲି ସେଇ ଅବସ୍ଥାରେ । ସେ ଥରିଲା ଗଳାରେ କହିଲେ—"ତୁମେ ଓଦା ହୋଇଯାଇଚ । ତୁମେ ପୋଷାକ ବଦଳେଇ ଦେବା ଉଚିତ ।" ତା'ପରେ ମୋ ମୁଣ୍ଡବାଟ ଦେଇ ସେ ଖୋଲିଦେଲେ ମୋର ଜାମା ଓ ଚିପୁଡ଼ି ପାଣି ପକାଇ ଦେଲେ ଝରକା ବାଟରେ । ମୋର ଚର୍ମ ଉପରେ ତାଙ୍କ ଆଙ୍ଗୁଳିର ସ୍ପର୍ଶ ଦେଶ ଉଷ୍ମ ଥିଲା । ତା'ପରେ ହାତ ପୋଛୁ ତଉଲିଆଟିଏ

ଆଣି ସେ ମୋର ଓଦା ବାଳକୁ ଘଷି ପୋଛି ଦେଲେ । ମୋର ବାଳ ଶୁଖିଗଲା ପରେ ପୁଣି ସେ ଜାମାଟି ପିନ୍ଧାଇ ଦେଲେ ମୋ ଦେହରେ । ତା'ପରେ ସେ ଆଉ କିଛି ହେଲେ କହିଲେ ନାହିଁ । ଟାକ୍ସି କରି ମୋତେ ନେଇ ପହଞ୍ଚାଇ ଦେଲେ ଆମ ଘରେ । ଫାଟକ ନିକଟରେ କେବଳ ସେ ମୋର କରମର୍ଦ୍ଦନ କରିଥିଲେ ।

ଟାକ୍ସିରୁ ଓହ୍ଲାଇ ମୁଁ ତାଙ୍କୁ ପଚାରିଲି "କାଲିକି ଆସିବେନି ନା କଣ ?" ସେ କହିଲେ "ନା, ଆଉ ନୁହେଁ ।" ସେଇ ଥିଲା ତାଙ୍କ ସହିତ ମୋର ଶେଷ ଦେଖା । ତା'ପରେ ତାଙ୍କ କଥା ଅନେକଥର ମୁଁ ଭାବିଛି । ଯେଉଁ କୋମଳତାର ସହିତ ସେଦିନ ସେ ମୋର ଜାମା ଖୋଲି ଦେଇଥିଲେ ଓ ଶୁଖାଇ ଦେଇଥିଲେ ମୋର ଅଙ୍ଗ, ତାହା ମୋର ବାରମ୍ବାର ମନେ ପଡ଼ିଛି ।

ସ୍କୁଲ୍‌ରେ ମୋର ବାନ୍ଧବୀକୁ ମୁଁ ତା'ପରେ ପଚାରିଥିଲି—"ସେ କାହିଁକି ମୋତେ ଚୁମ୍ବନ କଲେନି ? କାହିଁକି ସେ ମୋ ସହିତ ପ୍ରେମ କଲେନି ? କାହିଁକି ତାଙ୍କ ସହିତ ମୋର ଯୌବନର ପ୍ରଥମ ମିଳନ ଏପରି ବିଫଳ ହୋଇଗଲା କହିଲୁ ?"

ସେ ଉତ୍ତର ଦେଇଥିଲା—"ତୁ ତାଙ୍କୁ ଭଲପାଉଚୁବୋଲି କେବେ କହିନୁ ତ । ଜାଣିରଖ, ଝିଅଟି ଭଲପାଏ ବୋଲି ହୃଦ୍‌ବୋଧ ଆସିବା ପରେ କେବଳ ପୁରୁଷ ତାକୁ ଚୁମ୍ବନ କରେ । ତୁ ସୁବର୍ଣ୍ଣ ସୁଯୋଗ ପାଇଥିଲୁ ପ୍ରେମ କରିବା ପାଇଁ । କିନ୍ତୁ ନିର୍ବୋଧଙ୍କ ଭଳି କାନ୍ଦିବା ଛଡ଼ା ତୁ ଆଉ କିଛି କରିପାରିଲୁନି ।"

# ଉଣେଇଶି

## ସେଇ ଝିଅଟିର ପ୍ରେମରେ ପଡ଼ିବା ମୋ ପକ୍ଷରେ ଥିଲା ସହଜ......

ମୋର ଜନୈକା ଶିକ୍ଷୟିତ୍ରୀ ଥରେ ଦିନବେଳେ ମୋତେ ତାଙ୍କ ବସାକୁ ଖାଇବାକୁ ଡାକିଥିଲେ । ସେ ହରିଶ ମୁଖାର୍ଜି ରୋଡ଼ରେ ଗୋଟିଏ ଶ୍ରେଷ୍ଠ ଫ୍ଲାଟ୍‌ରେ ରହୁଥାନ୍ତି । ସେଇ ଶିକ୍ଷୟିତ୍ରୀଙ୍କୁ ମୁଁ ଭାରି ଭଲ ପାଉଥିଲି, ତେଣୁ ମନାକରି ହେଲାନି, ଯଦିଓ ବାପା କାହାରି ଘରକୁ ମୋତେ ଏକା ଛାଡ଼ିବାକୁ ରାଜି ନ ଥିଲେ ।

ମୁଁ ତାଙ୍କ ଘରେ ଯଥା ସମୟରେ ପହଞ୍ଚିଲକ୍ଷଣି ଶିକ୍ଷୟିତ୍ରୀ ମୋର ହାତ ଧରି ପକାଇ ଦୁଃଖ ପ୍ରକାଶ କଲେ । ତାଙ୍କର ସ୍ୱାମୀ ସହସା ଅସୁସ୍ଥ ହୋଇପଡ଼ିବାରୁ କାର୍ଯ୍ୟକ୍ରମ ସ୍ଥଗିତ । କିନ୍ତୁ ସେ ଖବର ପଠାଇ ପାରି ନାହାନ୍ତି ପରିବର୍ତ୍ତିତ ସମ୍ପର୍କରେ । ଏଣୁ ମୋ ପାଇଁ ସେ ଭିନ୍ନ ବ୍ୟବସ୍ଥା କରିଥିଲେ । ତାଙ୍କ ପୁଅ ମୋତେ ନେଇ ବାହାରେ ଖୋଇ ଆଣିବା ବିଷୟ ସେ ସ୍ଥିର କରି ସାରିଥିଲେ ।

ତାଙ୍କର ପୁଅକୁ ଅଠରବର୍ଷ । ଯେତେଥର ମୁଁ ତାଙ୍କ ଘରକୁ ଯାଇଥିଲି ସେ ମୋତେ ପିଆନୋ ବଜାଇ ଆମୋଦିତ କରିଥିଲେ । ତାଙ୍କର ଉଚ୍ଚତା ଥିଲି ମଧ୍ୟମ ଧରଣର । କିନ୍ତୁ ତାଙ୍କ ମୁହଁଟି ବଡ଼ ବୟସ୍କ ଦିଶୁଥିଲି, କପାଳରେ ରେଖାସବୁ ସ୍ପଷ୍ଟ ହୋଇଯାଇଥିଲି । ତା'ଛଡ଼ା ତାଙ୍କ ପାଟିଟି ଥିଲି ଅପେକ୍ଷାକୃତ ପ୍ରଶସ୍ତ ।

ମୁଁ ତାଙ୍କରି ସହିତ ପାଲେଟି'କୁ ଗଲି । ଆମକୁ ବାଲ୍‌କୋନିରେ ଗୋଟିଏ କଲଙ୍କିଲଗା ଟେବୁଲ୍ ନିକଟରେ ବସିବାକୁ ହେଲା । ସେଇ ହୋଟେଲ୍‌ର ପରିଚାରକମାନେ ମୋତେ ସେଠି ଆଗରୁ ବହୁତ ଥର ବାପାଙ୍କ ସାଙ୍ଗରେ ଖାଇବା ଦେଖିଥିଲେ । ତେଣୁ ସେମାନେ ଆମକୁ ପରିବେଷଣ କରିବା ପାଇଁ ଚଞ୍ଚଳ ହୋଇଉଠିଲେ । ଖାଇବା ସମୟ ତଥାପି ଆରମ୍ଭ ହୋଇ ନ ଥିବାରୁ ସ୍ଥାନଟି ପ୍ରାୟ ଫାଙ୍କା ଥିଲା । ପାର୍ଶ୍ୱରେ ଢିଲିକୁ କଳାପୋଷାକ ପିନ୍ଧି ଜଣେ ଗିଟାର୍ ବାଦକ ବସିଥିଲେ । ବଜାଉଥିଲେ ଗିଟାର୍ । ମଝିରେ ମଝିରେ ସେ ଲକ୍ଷ୍ୟ କରୁଥିଲେ ଆମକୁ । ମୋର ସାଥୀ ମୋ ହାତ ଉପରେ ତାଙ୍କର ହାତ ରଖି ପଚାରିଲେ—''ଏ ଧ୍ୱନିଟି କାହାର ଜାଣିପାରୁଛ ?'' ମୁଁ ସହସା ନିଜକୁ ଦରିଦ୍ର ମନେ କଲି । ଆମ ଘରର ସାଂସ୍କୃତିକ ଦୈନ୍ୟ ମୋତେ ବ୍ୟଥିତ କଲି । ମୋ ମା' ଜଣେ ସୁପରିଚିତା ନାୟିକା ହେଲେ କଣ ହେବ, ଆମ ଘରକୁ ବୁଲି ଆସୁଥିବା ଲୋକଙ୍କ ମଧ୍ୟରୁ ଅଳ୍ପ କେଇଜଣ ମାତ୍ର ସାହିତ୍ୟ ଓ କଳା ସମ୍ପର୍କରେ ଗଭୀର ଅଭିନିବେଶର ସହିତ ଚର୍ଚ୍ଚା କରୁଥିଲେ । ମୋ ବାପା-ମା ବି ସଙ୍ଗୀତ ବିଷୟରେ ଆଗ୍ରହୀ ନ ଥିଲେ ।

ମୁଁ ଥିଲି ଜଣେ ହୀନମନ୍ୟ ବର୍ବର ।

'ଏହା ବାଚ'—ସେ କହିଲେ । ତା'ପରେ ପାପୁଲିରେ ମୁହଁ ଲୁଚାଇ ମୁଁ କାନ୍ଦି ଉଠିଲି ।

ସେ ପଚାରିଲେ—"ଆରେ, କଣ୍ ହେଲା ତୁମର ?'' ଗିଟାର୍‌ବାଦକ ମଧ୍ୟ ତାଙ୍କର ଆଳାପମୀ ବନ୍ଦ କରିଦେଲେ ।

ବନ୍ଧୁ ଜଣକ ପଗ୍ଚାରିଲେ—"କମଳା, ମୁଁ ତୁମକୁ ଏମିତି କଣ୍ କହିଲି ଯେ ତୁମେ କାନ୍ଦି ଉଠିଲ ।"

ମୁଁ ମୁଣ୍ଡହଲାଇ ମନାକଲି ।

"ସୁପ୍ ଖାଇନିଅ"—ସେ କହିଲେ—"ଥଣ୍ଡା ହୋଇଯାଉଚି ।"

ଘରକୁ ଫେରି ଏସବୁ ଘଟଣା ବିଷୟରେ ମା'ଙ୍କୁ କିଛିହେଲେ ନ କହି ରହିଲି । ସେ ବି ପଗ୍ଚାରି ନ ଥିଲେ । ବାପାଙ୍କର ମଧ୍ୟ କୌଣସି କୌତୂହଳ ନ ଥିଲା । ତାଙ୍କ ଧାରଣାରେ —ଆମେ ସବୁ ଠିକ୍ ଓ ଅଭ୍ରାନ୍ତ ଥିଲୁ । ଆମକୁ ସେମାନେ କାଠକଣ୍ଢେଇ ବୋଲି ଧରି ନେଇଥିଲେ । ତାଙ୍କର ସୂତାଟଣାର ଅନୁସାରେ ଆମର ଯାହା ହାତ-ପାଦ ହଲୁଥିଲା । ଆମ ଭିତରେ ବ୍ୟକ୍ତିତ୍ୱ ଯେ କ୍ରମଶଃ ସ୍ୱାଧୀନ ଭାବରେ ବଢ଼ିଚାଲିଚି,—ସେକଥା ଭାବିବାକୁ ମୁହୂର୍ତ୍ତେ ସମୟ ବି ସେମାନେ ବ୍ୟୟ କରିପାରୁ ନ ଥିଲେ । ଜୀର୍ଣ୍ଣ କୋଠାର ଅବହେଳିତ ସ୍ଥାନରେ ଆପେ ଆପେ ବଟବୃକ୍ଷ ଗଜେଇ ଉଠି ପଲ୍ଲବିତ ହୋଇଉଠିଲା ଭଳି ଆମେ କାନ୍ଦୁ ବଢ଼ି ଚାଲିଥିଲୁ ସେମାନଙ୍କ ଅଜାଣତରେ, ସେମାନଙ୍କର ଅବହେଳା ପ୍ରତି ଧ୍ୟାନ ନ ଦେଇ ।

ଆମର ଅଙ୍ଗ୍ଲୋ-ଇଣ୍ଡିଆନ୍ ଶିକ୍ଷୟିତ୍ରୀ ଜଣକ ତାଙ୍କ ନିଜ ଦେଶକୁ ସପରିବାରେ ଫେରି ଯିବାପରେ ଆମକୁ ଇଂରେଜୀ ପଢ଼ାଇବା ପାଇଁ ଆସିଲେ ଜଣେ ବଙ୍ଗୀୟ ମହିଳା । ତାଙ୍କର ମୁଖଟି ଲମ୍ବାକୃତିର ଥିଲା । ଆମକୁ ଡିକ୍‌ଟେସନ୍ ପଢ଼ାଇଲାବେଳେ ସେ ନର୍ଭସ୍ ହାତରେ କାନ୍ଧଉପର ଶାଢ଼ୀର ଭାଙ୍ଗ ସଜାଡ଼ୁ-ଥିଲେ । ତାଙ୍କର ସ୍ୱରଟି ଥିଲା ଅସାଧାରଣ ଓ ଅଦ୍ଭୁତ । ଆବୃତ୍ତିବେଳେ ମଝିରେ କମ୍ପି ଉଠୁଥିଲା । ମୋତେ ବେଶ୍ ଭଲ ଲାଗୁଥିଲା । ମୋ ପକ୍ଷରେ ତାଙ୍କ ପ୍ରେମରେ ପଡ଼ିଯିବା ଥିଲା ସହଜ ଓ ସ୍ୱାଭାବିକ, କାରଣ ସେତେବେଳେ ମୁଁ ବହୁତ ବହୁତ ବାଣ୍ଟିବାକୁ ଚାହୁଁଥିଲି, ଅଥଚ ନେବାକୁ କେହି ନ ଥିଲେ । ଶିକ୍ଷୟିତ୍ରୀଙ୍କ ଉଦ୍ଦେଶ୍ୟରେ ମୁଁ ଗୋଟିଏ କବିତା ଲେଖିଲି, ସେଥିରେ ତାଙ୍କୁ ଗୋଲାପ ସହିତ ତୁଳନା କରାହୋଇଥିଲା । ମୁଁ ବି ଥିଲି ଗୋଟିଏ ଫୁଲ । ବାସ୍ତବିକ, ଗୋଟିଏ ଫୁଲ ସହିତ ଆଉ ଗୋଟିଏ ଫୁଲର ଅସ୍ୱାଭାବିକ ସମ୍ପର୍କ ବଡ଼ କରୁଣ ହୋଇ ଉଠିଥିଲା । ଏକଦା ଅପରାହ୍ଣରେ ମୁଁ ତାଙ୍କ କୋଠରୀକୁ ଚା-ଖାଇବାକୁ ଯାଇ ଥିଲି । ସେତେବେଳେ ସେ ମୋତେ କହିଲେ—"ମୋତେ ତୁମ କବିତାଟି ବେଶ୍ ଭଲ ଲାଗିଚି ।" ମୋତେ ଲାଜ ଲାଗିଲା । ମୁଁ କହିଲି—"ମୁଁ ମାସକପାଇଁ ମାଲବାର ଯାଉଚି, ଆମ ଘର ସେଠି । ଆପଣଙ୍କୁ ମୁଁ ଚିଠି ଲେଖିପାରେ କି ?"

ତା'ପରେ ମୋ ମା' ବେମାର ପଡ଼ିଲେ, ଟାଇଫଏଡ୍‌ରେ । ପ୍ରଥମେ ହୋମିଓପାଥି କରିଗଲା, କିଛି ଫଳ ହେଲାନି । ପରେ ତାଙ୍କର ଜୀବନ ରକ୍ଷା କରିବାକୁ ଆସିଲେ ଡାକ୍ତର ଡେଲ୍ମାମ୍‌ହୋଇଟ୍ । ମାସେ ପର୍ଯ୍ୟନ୍ତ ସେ ପୀଡ଼ିତ ଅବସ୍ଥାରେ ରହିଲେ । ଯେଉଁ କୋଠରୀରେ ସେ ନିଜ ବିଛଣାରେ ଶୋଇ ରହୁଥା'ନ୍ତି ସ୍କୁଲ୍‌ରୁ ଫେରି ମୁଁ ସେଠିକି ଯାଏଁ । ବାପା ବି କ୍ରମାଗତ ଗମ୍ଭୀର ମାନସିକ ଅଶାନ୍ତି ଓ କ୍ଳାନ୍ତି ବଶତଃ ଅସୁସ୍ଥ ହୋଇପଡ଼ିଲେ । ଡ୍ରଇଂ ରୁମ୍‌ରେ ସେ ଶୋଇଲେ । କାରଣ ଗୋଟିଏ କୋଠରୀ ମୋର ଶ୍ରେଷ୍ଠ ଭଉଣୀଟି ପାଇଁ ଅଲଗା ରଖାଯାଇଥିଲା । ସେତେବେଳେ ଟାଇଫଏଡ୍ ବା ବିଷମ ଜ୍ୱରର ନିବାରଣ ପାଇଁ କ୍ଲୋରୋମାଇସେଟିନ୍ ଉଦ୍ଭାବିତ ହୋଇ ନଥିଲା । ତେଣୁ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ବ୍ୟତୀତ ଆମର ଅନ୍ୟ ଉପାୟ ନ ଥିଲା ।

ଜାନକୀ ଆମ୍ମା ଥିଲେ ବାପା-ମାଙ୍କର ଜଣେ ବାନ୍ଧବୀ । ସେ ଆମ ଘରକୁ ସୁଟ୍‌କେସ୍‌ଟିଏ ଧରି ଆସିଲେ ଓ ବାପା-ମା'ଙ୍କ ଶରୀର ସୁସ୍ଥ ହେବା ପର୍ଯ୍ୟନ୍ତ ଆମର ଯତ୍ନ ନେବେ ବୋଲି ପ୍ରକାଶ କଲେ । ସେ ଥିଲେ ବ୍ରାବୁର୍ନ୍ କଲେଜର ଜଣେ ଅଧ୍ୟାପିକା । ତାଙ୍କଭଳି ସ୍ଫୂର୍ତ୍ତିମତୀ ମହିଳା ମୁଁ କ୍ୱଚିତ୍ ଭେଟିଛି । ତାଙ୍କର ଦୁଃସାହସ ଅନେକଙ୍କୁ ଆକୃଷ୍ଟ କରୁଥିଲା । ସେ ପ୍ରକୃତରେ ଥିଲେ ଆକର୍ଷଣୀୟା । ସେତେବେଳେ ମୋର ମା'ଙ୍କର ସ୍ଫୂର୍ତ୍ତିହୀନ ଶରୀର ଓ ବାପାଙ୍କ ପିଲାଙ୍କ ଭଳି ଅସହାୟ କାନ୍ଦଣାର ସ୍ମୃତିଠାରୁ ମୋର ବେଶୀ ମନେ ପଡ଼ୁଛି ଜାନକୀ ଆମ୍ମାଙ୍କ କଥା । ଶୋଇବା ପୂର୍ବରୁ ସେ ବାଳରେ କୁଟିକୁରା ମଲମ ଲଗାଉଥିଲେ ଓ ତାହାର ଗନ୍ଧ ଚାରିଆଡ଼େ ଖେଳିଯାଉଥିଲା । ତା'ପରେ ଜାନକୀଆମ୍ମା ଗୋଟିଏ ଅଶାନ୍ତ ବାଘୁଣୀ ପରି ପଦଚାରଣ କରୁଥିଲେ ଏ ଦିଗ ସେ ଦିଗ । ସେ ଶୋଇକି ପଡ଼ୁଥିଲାବେଳେ ମୁଁ ତାଙ୍କ ଛାତିରେ ମୁଣ୍ଡ ରଖି ଶୋଉଥିଲି । ସେତେବେଳେ ସେ ମୋତେ ଆମ ଇଂରେଜୀ ଶିକ୍ଷୟିତ୍ରୀଜୀଙ୍କ କଥା କହି ପରିହାସ କରୁଥିଲେ । ଦିନେ ଜାନକୀ ଆମ୍ମା କହିଲେ—"ସେଇ ସୁନ୍ଦରୀ ମହିଳା, ତୁମ ଉପରେ ଯିଏ ଏତେ ପ୍ରଭାବ ବିସ୍ତାର କରିଛନ୍ତି, ମୁଁ ତାଙ୍କୁ ଭେଟିବାକୁ ଇଚ୍ଛା କରୁଛି ।"

"ତାଙ୍କୁ ଦେଖି ଆପଣ ଯଦି ହସିବେ ନାହିଁ ବୋଲି ପ୍ରତିଜ୍ଞା କରିବେ ତେବେ ମୁଁ ଦିନେ ଆପଣଙ୍କୁ ଭେଟାଇଦେବି । ଦେଖନ୍ତୁ, ଆପଣ ହସିଲେ ମୁଁ ଆଦୌ ସହିପାରିବି ନି"—ମୁଁ କହିଲି ।

ମା' ଓ ପରେ ପରେ ବାପା ସୁସ୍ଥ ହେବା ମାତ୍ରେ ଆମର ବସା ଖାଲି ହୋଇଗଲା କୁହନ୍ତୁ । ମା' ଚାଲିଗଲେ ମାଲବାରର ଘରକୁ । ସାନଭାଇ-ଭଉଣୀମାନେ ଗଲେ ତାଙ୍କ ସହିତ । ବଡ଼ ଭାଇ ଚକଧାରୀ ବିଜ୍ଞାନ ପଢ଼ିବାକୁ ଗଲେ

ମାନ୍ଦ୍ରାଜ । ବାପାଙ୍କ ସହିତ ମୁଁ ଏକୁଟିଆ ହୋଇ ରହିଲି କଲିକତାରେ । ଆମ ସହିତ ଥିଲେ ଚାକର-ଚାକରାଣୀ ଓ ବାପାଙ୍କର ସାନଭାଇ । ମୋତେ ପରାମର୍ଶ ଦେବାକୁ କେହି ନ ଥିଲେ । ମୋ ବିଷୟ ଭାବିବାକୁ କେହି ନ ଥିଲେ । ଇଚ୍ଛାନୁସାରେ କାମ କରିବାର ସ୍ୱାଧୀନତା ମୋର ଥିଲା । ବାପା ଅଫିସ୍‌ରୁ ଫେରିବା ପୂର୍ବରୁ ଅର୍ଥାତ୍ ସନ୍ଧ୍ୟା ଛ'ଟା ଆଗରୁ ଘରକୁ ଫେରିଆସିବା ଥିଲା ମୋର ଏକମାତ୍ର କର୍ତ୍ତବ୍ୟ । ସନ୍ଧ୍ୟାରେ ଚା' ସାରି ବାପା ପୁଣି ବାହାରକୁ ଯାଉଥିଲେ—ହୁଏତ ହ୍ରଦ କୂଳକୁ ନ ହେଲେ କୌଣସି ବନ୍ଧୁ ଘରକୁ । ପୂଝାରୀ ତାର ନିଜ ରାଜ୍ୟରେ ଆପଣା ବନ୍ଧୁଙ୍କ ସହିତ ଗପସପରେ ବା କାମରେ ଅଥବା ଚାକରାଣୀକୁ ପ୍ରେମ କରିବାରେ ବ୍ୟସ୍ତ ରହୁଥିଲା । ମୋ ନିଜ କୋଠରିଟି ବ୍ୟତୀତ ଅନ୍ୟ କାହାରି କୋଠରିକୁ ପ୍ରବେଶ କରିବାକୁ ଗଲାବେଳେ ମୁଁ ନିଜକୁ ଅନୁପ୍ରବେଶକାରୀ ବୋଲି ମନେ କରୁଥିଲି । ମୁଁ ମୋ କୋଠରିର ଏକ ସଂକୀର୍ଣ୍ଣ ଶେଯରେ ଲାଇବ୍ରେରୀ ବହିଗୁଡ଼ିକର ଗହଣରେ ବଡ଼ ଅଶାନ୍ତିରେ ଶୋଉଥିଲି । ସକାଳ ହେବାମାତ୍ରେ ପୂଝାରୀ ବାପାଙ୍କ ପାଇଁ ଚା' ନେଇଯାଉଥିବା ଟ୍ରେ-ଉପରେ ଥିବା ଚାମୁଚର ଝଣଝାଣ୍ ଶବ୍ଦ ଶୁଣି ମୋ ନିଦ ଭାଙ୍ଗି ଯାଉଥିଲା ।

ମୋର ଆଉ ପାଠରେ ମନ ଲାଗିଲା ନାହିଁ । ପ୍ରତି ସକାଳେ ମୁଁ ନିଜେ ନିଜକୁ କହି ଚାଲିଲି—ଏଇ ଧ୍ୱଂସ ମଧ୍ୟରୁ ମୋତେ ଊର୍ଦ୍ଧ୍ୱକୁ ନେଇଯିବାକୁ ହେବ ମୋ ଜୀବନକୁ ଏବଂ ପଳାୟନ କରିବାକୁ ହେବ ଅନ୍ୟ ଏକ ଜୀବନକୁ ଅନ୍ୟ ଏକ ଦେଶକୁ । ଘରୁ ଏକା ଏକା ଗୋଡ଼ କାଢ଼ି କୁଆଡ଼େ ଯିବାକୁ ମୁଁ ଥିଲି ନିତାନ୍ତ ଅପାରଗ । ଗେଟ୍ ପାଖରେ ଠିଆହୋଇ ମୁଁ ଚାହିଁ ରହୁଥିଲି ବାହାରକୁ । କିନ୍ତୁ ଲେକ୍ ଆଭେନ୍ୟୁ ରାସ୍ତାଟି ଥିଲା ବଡ଼ ନିଛାଟିଆ, ରାସ୍ତାରେ ଖୁବ୍ କମ୍ ଲୋକ ଯା-ଆସ କରୁଥିଲେ । ଥରେ ଦୁ-ଥର ସାଇକେଲ୍ ପଛରେ ବୁଜୁଳା ବାନ୍ଧି ଯାଉଥିବା କୌଣସି ଚୀନା ବ୍ୟକ୍ତିଙ୍କୁ ଦେଖି କଣ ବିକୁଚୁ ବୋଲି ପଚାରୁଥିଲି । କିନ୍ତୁ ସେ ଯେଉଁ ସବୁ ପୋଷାକ ମତେ ଦେଖାଏ ସେସବୁ କିଣିବାକୁ ମୋ ପାଖରେ ପଇସା ନ ଥାଏ ଜମା ।

ଥରେ ଜଣେ ବୁଲାବିକାଳୀ ଜର୍ଜେଟ୍ ଶାଢ଼ୀ ନେଇ ଆସିଲା ଓ ମୋ ସହିତ ସିନ୍ଧୁ ପ୍ରଦେଶ ବିଷୟରେ ଘଣ୍ଟେକାଳ ଗପିଲା । ସେ ତା'ର ନାମ ଲୋକୁମଲ୍ ବୋଲି କହିଲା । ସୋନପାମ୍ପୁଡ଼ିବାଲା ବି ଗେଟ୍ ପାଖରେ ଠିଆ-ହୋଇ ମୋ'ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଥାଏ । ମିଠେଇ ଖାଇବାକୁ ଚାହିଁନା କି ବୋଲି ମୋତେ ସେ ପଚାରିଲା ବଙ୍ଗଳାରେ । ମୁଁ କେବଳ ଟିକିଏ ହସିଦେଇ ଭିତରକୁ ଚାଲିଗଲି । ପଡ଼ୋଶୀ ଘରର ସାନଝିଅଟି ଆମ ଘର ଓ

ତାଙ୍କ ଘର ମନ୍ଦିରରେ ଥିବା ପାଟେଣ୍ଟ ଉପରେ ବସି ମିଠେଇସବୁ ଖାଉଥିଲା ଦେଖିଲି ।

ସେ କହିଲା—ମୁଁ ବଡ଼ ହେଲେ ଗ୍ରାଣ୍ଡମାଛବରେ ଅଭିନେତ୍ରୀ ହେବ । ଅନେକ ସକାଳରେ ଆମ ଘରକୁ ଆସୁଥିଲା ତାର ମା, ଆମେ ସବୁ ବାହାରକୁ ଚାଲିଗଲା ପରେ । ଆମ ଘର ଫୋନ୍‌ରେ ସେ ତାର ପ୍ରେମିକଙ୍କ ସହିତ ଆଳାପ କରୁଥିଲା । ପୂଝାରୀ ଇଂରାଜୀ ନ ଜାଣିବାର ଛଳନା କରି ତାଙ୍କର ସବୁକଥା ଶୁଣୁଥିଲା । ଦିନେ ମୋତେ ପୂଝାରୀ କହିଲା—"ସେଇ ସ୍ତ୍ରୀଲୋକଟା ଚରିତ୍ରହୀନା । ତାଙ୍କ ସହିତ ଆଦୌ ତୁମେ କଥାବାର୍ତ୍ତା କରିବ ନାହିଁ । ତୁମର ଯତ୍ନ ନେବା ଓ ତୁମକୁ ବିପଦରୁ ରକ୍ଷା କରିବାର ଦାୟିତ୍ୱ ମୋତେ ଦିଆଯାଇଛି । ମୁଁ ନିଶ୍ଚୟ ମୋ କର୍ତ୍ତବ୍ୟରେ ତ୍ରୁଟି ନ କରିବାକୁ ଚେଷ୍ଟା କରିବି—"

## ଚୌଦ୍ଦ

## ବାଘୁଣୀର ଆଲିଙ୍ଗନ ଭିତରେ...

ଅଠର ବର୍ଷ ବୟସର କଲେଜ ହଷ୍ଟେଲ୍‌ରେ ରହୁଥିବା ଏକ ବିଶେଷ ଝିଅ ସହିତ ମିଳାମିଶା ନ କରିବାକୁ ଆମ ପରିବାରର ଜଣେକ ବନ୍ଧୁ ମୋତେ ସତର୍କ କରିଦେଇଥିଲେ । କିନ୍ତୁ, ମା' ଯେତେବେଳେ ବାନ୍ଧବୀମାନଙ୍କୁ ଭେଟିବାକୁ ହଷ୍ଟେଲ୍ ଆଡ଼କୁ ଗଲେ, ମୁଁ ତାଙ୍କ ସହିତ ଗଲି ଓ ସେଠାରେ ଦେଖାହେବା ମାତ୍ରେ ସେଇ ଝିଅଟି ପ୍ରତି ମୁଁ ଆଗ୍ରହାନ୍ୱିତ ହୋଇ ଉଠିଲି ।

ହସ ହସ ହୋଇ ସେ ଠିଆ ହୋଇଥିଲା ଦୁଆର ମୁହଁରେ । ସ୍ପଷ୍ଟ ଦିଶୁଥିଲା ତାର ଆଗଦାନ୍ତ ଓ ଡାହାଣ ଗାଲର ବ୍ରଣଟି । ସେ ଥିଲା ବେଶ୍ ଡେଙ୍ଗା ଓ ସୁସ୍ଥ ସବଳ । ତାର ଚେହେରାଟି ଅନେକାଂଶରେ ଥିଲା ପୁରୁଷସୁଲଭ । ଆମକୁ ଦେଖିଲା ମାତ୍ରେ ସେ—"ହାଲୋ···" କହି ଅଭିବାଦନ ଜ୍ଞାପନ କଲା । ମୁଁ ମୋ ମା ଓ ତାଙ୍କ ବାନ୍ଧବୀଙ୍କ କୋଠରୀ ଛାଡ଼ି ଝିଅଟିର କୋଠରୀକୁ ଯିବାକୁ ଚାହୁଁଥିଲି, ତା' ସହିତ ବନ୍ଧୁତା କରିବାକୁ । କିନ୍ତୁ ପ୍ରକୃତରେ ନ ଯାଇ ବସି ରହିଲି ।

କାରଣ, ମା'ଙ୍କର ଅଧ୍ୟାପିକା ବାନ୍ଧବୀମାନଙ୍କ ମନରେ ମୁଁ କୌଣସି ଆଘାତ ଦେବାକୁ ଚାହୁଁ ନଥିଲି, ସେମାନେ ମୋତେ ଯେହେତୁ ଝିଅଟି ସହିତ

ମିଶିବାକୁ ନିଷେଧ କରିଥିଲେ । ଅନ୍ୟମାନଙ୍କ ଠାରୁ ସେଇ ଝିଅଟି ଥିଲା ନିଶ୍ଚିତ ଭାବରେ ଅଲଗା । ତା' ଆଖିରେ ମୋ ଆଖି ମିଶିଯିବା ମାତ୍ରେ, ଜାଣେନା କାହିଁକି ମୁଁ ଉତ୍ତେଜନା ଅନୁଭବ କଲି । ତାର ଦେହ ଖରାରେ ଉଜ୍ଜ୍ୱଳ ଦିଶୁଥିଲା । ଖରା, ବର୍ଷା କାକର ଓ ମରୁଭୂମିର ଉତ୍ତପ୍ତ ଭୟାନକ ଝଡ଼ ପ୍ରଭୃତିର କଠୋରତାକୁ ଆପଣାର ନଗ୍ନ ଦେହରେ ସମ୍ଭାଳି ନେଇଥିବା ଗୋଟିଏ ପଶୁପରି ସେ ମୋତେ ଲାଗିଲା ।

ମୋ ମା' ମାଲବାରକୁ ଯିବାର ବର୍ଷକ ପରେ ପୁଣି ଯେତେବେଳେ ଆସିଲା ଗ୍ରୀଷ୍ମ ଋତୁ, ମୋତେ ପ୍ରଫେସର ଓ ଗ୍ରାନ୍ନୀଙ୍କର ଏକ ଦଳ ସଙ୍ଗରେ ବାପା ଘରକୁ ପଠାଇଦେବାକୁ ସ୍ଥିର କଲେ । ଦଶଟି ବର୍ଥ ଥିବା ଗୋଟିଏ ବଗିରେ ଆମକୁ ଯିବାକୁ ହେଲା । ସବୁଠାରୁ ଦୀର୍ଘତମ ବର୍ଥଟି ପଡ଼ିଲା ମୋ ଭାଗରେ, ଯଦିଓ ଅନ୍ୟମାନଙ୍କ ତୁଳନା ମୁଁ ସବୁଠାରୁ ଥିଲି କମ୍ ବୟସ୍କ ଓ କ୍ଷୁଦ୍ରାକୃତିର ।

ମୋ ଭାଗ୍ୟକୁ ସେଇ ଝିଅଟି ଥିଲା ଆମ ସାଙ୍ଗରେ । ରାତିରେ ଆଲୁଅ ସବୁ ନିଭେଇ ଦିଆଗଲା । କେବଳ ଝରକା ବାଟ ଦେଇ ଛିଟିକି ପଡ଼ୁଥିଲା ଝାପ୍‌ସା ଜହ୍ନ ଆଲୁଅ । ସେଥିଭିତରେ ଶୋଇବା ଲୋକଙ୍କ ନିଶ୍ଚଳ ହାତଗୋଡ଼ ବାରି ହେଉଥିଲା । ସେତିକିବେଳେ ଅତି ସନ୍ତର୍ପଣରେ ସେଇ ଝିଅଟି ତା' ନିଜ ଜାଗାରୁ ଉଠିଆସିଲା ନିକଟକୁ ଓ ପଚାରିଲା—"ମୁଁ ତୁମ ବର୍ଥରେ ତୁମ ନିକଟରେ ଟିକିଏ ଶୋଇ ପାରିବି କି ? ମୋ ବର୍ଥଟି ଉପରେ ହୋଇଥିବାରୁ ମୋତେ ଭଲଲାଗୁନି ।" ତା' ପରେ ସେ ଆଖି ସଞ୍ଚାଳନକରି ଦେଖିନେଲା—ଆଉ କିଏ ଶୁଣିଛନ୍ତି କି ବୁଝିବାକୁ । ତା'ପରେ ସେ ସମସ୍ତେ ଶୋଇ ପଡ଼ିଥିବା ବିଷୟରେ ନିଶ୍ଚିତ ହୋଇଗଲା । ତା'ପରେ ସେ ଶୋଇଲା ମୋ ବର୍ଥରେ ଓ ମୋତେ ନିବିଡ଼ ଭାବରେ ଆଲିଙ୍ଗନ କଲା । ମୋ ଓଷ୍ଠର ଧୀରେ ଧୀରେ ସଂଚାଳିତ ହେଲା ତାର ଆଙ୍ଗୁଳି, କୋମଳତାର ସହିତ । ସ୍ୱର୍ଗର ସେପରି କୋମଳତା ମୁଁ ସ୍ୱପ୍ନରେ ବି ପାଇନଥିଲି । ତା'ପରେ ସେ ମୋ ଓଠ ଚୁମ୍ବନ କଲା ଓ କହିଲା ଅତି ଅସ୍ପଷ୍ଟ ସ୍ୱରରେ—"ତୁମେ ବହୁତ ସୁନ୍ଦର, ବହୁତ ମଧୁର । ତୁମପରି ଲଳିତ, ତୁମପରି କୋମଳ ଓ ତୁମପରି ମଧୁର ମୁଁ ଆଉ କାହାକୁ ଦେଖିନି । ପ୍ରିୟତମା...ଆହା ମୋର କୁନି ପ୍ରିୟତମାଟି...!"

ଏପରି ଚୁମ୍ବନ ମୋ ଜୀବନରେ ଥିଲା ପ୍ରଥମ । ହୁଏତ ଶୈଶବରେ ମା'ଙ୍କ ଠାରୁ ଚୁମ୍ବନ ପାଇଥିଲି । କିନ୍ତୁ, ତା'ପରେ ଆଉ ନୁହଁ । ଏପରି କି ମୋର ବୁଢ଼ୀମା ମଧ୍ୟ କେବେ ବି ଦିନେ ମୋତେ ସ୍ନେହରେ ଚୁମ୍ବନ ଦେଇଥିବା ମୋର ମନେ ନାହିଁ । ବୋଧହୁଏ ତାଙ୍କର ଆଗ୍ରହ ବି ନ ଥିଲା । ସେଥିପାଇଁ ଝିଅଟି ମୋତେ

ଚୁମ୍ବିବାକୁ ଆରମ୍ଭ କରିବା ମାତ୍ରେ ମୁଁ ଆତ୍ମବିସ୍ମୃତ ହୋଇଯାଇଥିଲି, ନିଃଶ୍ୱାସ ନେବାକୁ ମନ ବଳିଲି ନାହିଁ । ସେ ମୋର ବାଳ ଉପରେ ଓଷ୍ଠ ପ୍ରହାର କରି ଚାଲିଥାଏ । ମୋର ବେକ ମୂଳ, ମୋର ମୁହଁ ମୋର ଓଠ ମୋର ସର୍ବାଙ୍ଗ ସେ ଚୁମି ଯାଉଥାଏ । ସାରା ରାତି । ମଝିରେ ମଝିରେ ମୋ ଆଖିକୁ ନିଦ ଚରିଆସୁଥାଏ ଓ ଭାଙ୍ଗି ଯାଉଥାଏ ପର ମୁହୂର୍ତ୍ତରେ । ଦେହରେ ମୋର ଜାଗି ଉଠିଥାଏ ଅନନୁଭୂତ ଉଷ୍ଣତା ।

ମୋର ଉଷ୍ଣ ଅଙ୍ଗଲତାକୁ ନିବିଡ଼ ଭାବେ ଆଶ୍ଳେଷ କରି ସେ ପାହାନ୍ତା ପହରରେ କହିଲି—"ତୁମକୁ ଜର ନା କଣ ? ଓଠ ତୁମର ଏମିତି ଗରମ ଲାଗୁଚି ଯେ !"

ସକାଳେ ଆମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଗଲୁ । ଆମ ପରିବାରର ଜଣେ ବନ୍ଧୁ ପାଛୋଟି ନେବାକୁ ଆସିଥିଲେ ଷ୍ଟେସନ୍ । ଆମେ ସମସ୍ତେ ତାଙ୍କ ସହିତ ତାଙ୍କ ଘରକୁ ଗଲୁ । କୋଲେନ୍‌ଗୋଡ୍ ରାଜାଙ୍କ କୋଠି ନିକଟରେ ଥିଲା ତାଙ୍କର ଘର । ରାଜାଙ୍କ ପୁଅ ଥିଲେ ସୈନ୍ୟ ବାହିନୀର ଜଣେ ମେଜର । କଲିକତାରେ ଥିଲାବେଳେ ସେ ଆମ ପରିବାର ସହିତ ବନ୍ଧୁତା ରଖିଥିଲେ । ସେଇ ମେଜର ମେନନ୍ । ମୋତେ ଅନେକ ବଡ଼ ହୋଇଯାଇଥିବାଦେଖି ସେ ଆଚମ୍ବିତ ହୋଇଗଲେ, ଓ ମୋର ଶାଢ଼ୀ ପିନ୍ଧିବା ଢଙ୍ଗ ଦେଖି ଥଟ୍ଟା କଲେ । ପ୍ରକୃତରେ ଶାଢ଼ୀ ପିନ୍ଧିବା ମୋର ଅଭ୍ୟାସ-ଗତ ନଥିଲା । ଦକ୍ଷିଣ ଭାରତକୁ ଯିବାକୁ ପଡ଼ିଲା ବୋଲି ପିନ୍ଧିଥିଲି । କାରଣ, ନଗ୍ନଗୋଡ଼ ଦୁଇଟା ଚମତ୍କାର ଭାବେ ଢାଙ୍କି ହୋଇ ପାରୁଥିଲା ଶାଢ଼ୀରେ । ଦକ୍ଷିଣ ଭାରତର ସଂସ୍କାର ଦୃଷ୍ଟିରୁ ତାହାଥିଲା ପ୍ରୟୋଜନ । ବିଶେଷତଃ ଆମ ନଲିପତ ଭବନର ସ୍ତ୍ରୀ ଲୋକମାନେ ଥିଲେ ରକ୍ଷଣଶୀଳ, ସଂସ୍କାର ସଚେତନ ଓ ପବିତ୍ର ସ୍ୱଭାବର ।

ମୋତେ, ଆମଦଳ ଏବଂ ଆମର ଅତିଥି ସତ୍କାରକଙ୍କୁ ମେଜର ମେନନ୍ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ସମସ୍ତେ ଆଗେ ଚାଲିଗଲେ । ରହିଲି ମୁଁ ଓ ମୋର ସେଇ ବାନ୍ଧବୀ । କେହି ନଥିବା ଦେଖି ସେ ମୋତେ ତା' ସହିତ ବାଥ୍ ରୁମ୍‌ରେ ସ୍ନାନ କରିବା ପାଇଁ ଫୁସୁଲେଇଲା । ଗାଧୋଇ ସାରିବା ପରେ ବନ୍ଧୁଙ୍କ ଘରେ ଥିବା କ୍ୟୁଟିକୁରା ମୋ ଉପରେ ଛିଞ୍ଚିଦେଲା ଓ ମୋତେ ସଜାଇଲା ତା ମନମୁତାବକ । ଆମକୁ ଲାଗିଲା ଯେମିତି କି ବିବାହ ପରେ ଆମେ ମଧୁ-କାଳ ଯାପନ କରୁଛୁ ।

ମେନନ୍‌ଙ୍କ ଘରେ ପହଞ୍ଚିଲୁ ବେଳକୁ ବଢ଼ାବଢ଼ି ସରିଥିଲା । ଭୋଜିଟି ମାଲୟାଲି-ପରମ୍ପରାର ହେଲେ ବି ଥିଲା ଅପୂର୍ବ ଓ ସନ୍ତୋଷଜନକ । ତର୍କାରିପତ୍ର ସବୁ ଥିଲା ପାରମ୍ପରିକ କେରଳ ଢଙ୍ଗରେ ପ୍ରସ୍ତୁତ । ଖାଇବାବେଳେ ମେଜର୍ ମେନନ୍‌ଙ୍କ କଥନଭଙ୍ଗୀ ଓ ପ୍ରଫୁଲ୍ଲତା ସମସ୍ତଙ୍କୁ ଅଭିଭୂତ କରି ରଖିଥିଲା । ମୁଁ ତାଙ୍କ ଘରକୁ ଏତେ ସଂଖ୍ୟକ ସୁନ୍ଦରୀ ପୁଣି ଅବିବାହିତା ମହିଳା ଆସିବାର ସୁଯୋଗ ସୃଷ୍ଟି କରିଥିବାରୁ ମୋ ପ୍ରତି ସମ୍ଭବତଃ ତାଙ୍କ ମନ କୃତଜ୍ଞତାରେ ପୂରି ଉଠିଥିଲା । ମୁଁ ଓ ମୋର ବାନ୍ଧବୀ ଖାଇଲୁ ଅଳ୍ପ । ଖାଇବା ପରେ ଅନ୍ୟମାନେ ଅନ୍ଧାରୁଆ ଘରେ ବସି ଖୁସିଗପ କଲେ । ଆମେ ଦୁହେଁ କିନ୍ତୁ ଖସିଗଲୁ ପଦାକୁ । ବଗିଚାରେ ଗଛର ଛାଇ ତଳେ ତଳେ ଦୁହେଁ ବୁଲିଲୁ ମନ ଖୁସିରେ ।

ସନ୍ଧ୍ୟାରେ ଆହୁରି ଦକ୍ଷିଣକୁ ଯିବା ଲାଗି ଆମେ ଟ୍ରେନ୍ ଧରିଲୁ । ସେଠି ମୋର ବାନ୍ଧବୀ ତା' ପ୍ଲେଟ୍‌ରୁ କିଛିଆନି ଖାଇବାକୁ ବାଧ୍ୟ କଲା । ପୁଣି ରାତିରେ ସମସ୍ତେ ଶୋଇଲା ପରେ, ସେ ସନ୍ତର୍ପଣରେ ଆସିଲା ମୋ ନିକଟକୁ, ମୋତେ ଚୁମ୍ବନ କରିବା ପାଇଁ । ଏଥର ମୋର ବର୍ଥ୍‌ଟି ନିହାତି ସାନ ଥିଲା । ସେ ମୋ ନିକଟରେ ଶୋଇ ପାରିଲା ନାହିଁ । ସେ ମୁହଁ ତଳକୁ କରି ମୋ ଓଠରେ ଓଠ ରଖିଲା । ଇଞ୍ଜିନ୍‌ର ଧୂଆଁ ଓ ବାନ୍ଧବୀର ନିଃଶ୍ୱାସର ଗନ୍ଧ ବାଜୁଥାଏ ମୋ ନାକରେ । ସେ କିନ୍ତୁ ଗଭୀର ଆବେଗର ସହିତ ମୋତେ ଚୁମ୍ବନ କରି ଚାଲିଥିଲା ।

ମୁଁ ଯେତେବେଳେ ମୋର ନିର୍ଦ୍ଦିଷ୍ଟ ଷ୍ଟେସନ୍‌ରେ ଓହ୍ଲାଇ ମୋତେ ପାଛୋଟି ନେବାକୁ ଆସିଥିବା ବ୍ୟକ୍ତିଙ୍କ ସହିତ ଗୃହାଭିମୁଖେ ଯିବାକୁ ବାହାରିଲି, ସେ ଝିଅଟି ଟ୍ରେନ୍‌ର ଦୁଆର ମୁହଁରେ ଠିଆ ହୋଇ ମୋ ଉଦ୍ଦେଶ୍ୟରେ ବିଦାୟ ଦେବା ରୀତିରେ ହାତ ହଲାଉଥିଲା । ତାର ଶୁଭେଚ୍ଛାର ପ୍ରତ୍ୟୁତ୍ତର ନ ଦେଇ, ହାତ ନ ହଲାଇ ମୁଁ ଚାଲିଆସିଲି । କାରଣ ମୋ ଜୀବନରୁ ତାକୁ ଅଲଗା କରି ଦେବା ପାଇଁ ମୁଁ କାମନା କଲି । ତା'ସହିତ ସାକ୍ଷାତ ହେବା ପୂର୍ବରୁ ମୋର ମନର ଅବସ୍ଥା ଯାହା ଥିଲା, ମୁଁ ପୁଣି ସେଇ ଅବସ୍ଥା, ସେଇ ଶୃଙ୍ଖଳାକୁ ପ୍ରତ୍ୟାବର୍ତ୍ତନ ଚାହୁଁଥିଲି । କିନ୍ତୁ ଏତେ ଶୀଘ୍ର ଭୁଲି ପାରି ନ ଥିଲି ତାର ସଂସର୍ଗ । ନିଳାପତ ଭବନରେ ସ୍ୱର୍ଗତଃ ବୃନ୍ଦାପ୍‌ପାଙ୍କର କୋଠରୀରେ ଶୋଇ ଶୋଇ ରାତିର ପୁରୁଣା ଆମ୍ବଗଛ ଗୁଡ଼ିକର ଅଗଗୁଡ଼ିକୁ ଲକ୍ଷ୍ୟ କରୁଥିଲାବେଳେ ମୋର ମନେପଡ଼ି ଯାଉଥିଲା ସେଇ ବାନ୍ଧବୀର ଦୁର୍ଦ୍ଦାନ୍ତ ଆଚରଣ···, ତାର ସେଇ ସ୍ୱର ଓ ତାର ସେଇ ହସ ।

ଗୋଟିଏ ସପ୍ତାହ ପରେ ନିଳାପତରେ ଆସି ପହଞ୍ଚିଲେ ଜଣେ ଆତ୍ମୀୟ । ମୁଁ ଓ ମୋ ଭାଇଙ୍କ ଦ୍ୱାରା ସମ୍ପାଦିତ ପତ୍ରିକାରେ ତାଙ୍କର ଲେଖା ନିୟମିତ

ପ୍ରକାଶ ପାଉଥିଲା । ସେ ରିଜର୍ଭ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆରେ କାମ କରୁଥା'ନ୍ତି । ଏକଦା ସେ ମୋ ନିକଟକୁ "ଜଣେ ବ୍ୟାଙ୍କ୍ କର୍ମଚାରୀର ସ୍ୱପ୍ନ"—ନାମକ କବିତାଟିଏ ପଠାଇଥିଲେ, ଯାହା ପଢ଼ି ଆମେ ମୁଗ୍ଧ ହୋଇଥିଲୁ । ତା'ପରେ ସେ ଲେଖିଥିଲେ ଗୋଟିଏ ଗଳ୍ପ । ଗଳ୍ପଟି କେତେକାଂଶରେ ବ୍ୟଙ୍ଗାତ୍ମକ ଥିଲା । ବମ୍ବେରେ ଥିବା ପ୍ରଭାକର ନାମକ ତରୁଣଟିଏ କିପରି କେଉଁ ବାଟରେ ଯିବ, ଜୀବନ ପାଇଁ କେଉଁ ପନ୍ଥା ବାଛିବ ଠିକ୍ କରି ନ ପାରି ଶେଷରେ ବାଟ୍‌ଭ୍ରାନ୍ତ ହୋଇ ଭୋଗ-ବିଳାସ ଦ୍ୱାରା କବଳିତ ହୋଇଥିଲା, ତାହାହିଁ ଥିଲା ଗଳ୍ପଟିର ବର୍ଣ୍ଣିତ ବସ୍ତୁ ।

ତାଙ୍କର ଲେଖା ବେଶ୍ ଭଲ । ଛୁଟିରେ ଆମ ଘରକୁ ଆସି ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ ସେତେବେଳେ ଗାଢ଼ରଙ୍ଗର ଶାଢ଼ୀଟିଏ ପିନ୍ଧିଥାଏ । ସେ କହିଲେ—"ତୁମେ ଯେ ଭିତରେ ଜଣେ ଚମତ୍କାର ଯୁବତୀ ପାଲଟିଗଲଣି । ମୁଁ ତ ତୁମକୁ ସାନପିଲା ଅବସ୍ଥାରେ ଦେଖିବି ବୋଲି କଳ୍ପନା କରିଥିଲି ।" ମୁଁ ଯେତେବେଳେ ଶିଶୁ ଥିଲି ଓ ବୁଢ଼ୀ-ମାଙ୍କ ପାଖରେ ରହୁଥିଲି, ସେତେବେଳେ ଆମ ଘରକୁ ଆସିଲେ ସେ ମୋତେ ଉପରକୁ ଟେକି ପଙ୍ଖା ଘୂରିଲା ଭଳି ବୁଲାଉଥିଲେ । ଏବେ ସେ ମୋତେ ପାଖରେ ବସାଇଲେ ଓ ହସିଲେ ଏବଂ ବର୍ଟ୍ରାଣ୍ଡ୍ ରସେଲ୍‌ଙ୍କ ରଚନାରୁ ଉଦ୍ଧାର କରି ନାନା କଥା କହିଲେ । ସେ ଥିଲେ ପତଳା, ସାମାନ୍ୟ ଆଗକୁ ଝୁଙ୍କି ଚାଲୁଥିଲେ ଏବଂ ତାଙ୍କର ଦାନ୍ତଗୁଡ଼ିକ ଅସୁନ୍ଦର ଦିଶୁଥିଲା । କିନ୍ତୁ, ଜଣେ ବୌଦ୍ଧିକ-ବ୍ୟକ୍ତିର ଚେହେରା ଥିଲା ତାଙ୍କଠାରେ ।

ସେତେବେଳେ ଅସ୍କାରଓ୍ୱାଇଲ୍ଡ ଥିଲେ ମୋର ପ୍ରିୟ ଲେଖକ ଏବଂ 'Bal·ad of reading Gaol' ଥିଲା ମୋର ପ୍ରିୟତମ କବିତା । କଥା ପ୍ରସଙ୍ଗରେ ସେ ସମଲିଙ୍ଗ-ପ୍ରେମ ବିଷୟରେ ଆଲୋଚନା କଲେ ଖୋଲାଖୋଲି ଭାବରେ । ତାଙ୍କ କହିବା ଅନୁସାରେ, ଆମ ଭିତରୁ ଅନେକେ ସେଇ ଅବସ୍ଥା ଦେଇ ବଢ଼ିଥାଉଁ । ସେ ଗପୁଥିଲାବେଳେ କାଳେ ବୁଢ଼ୀ-ମା ଆସି ଏଇ ନିଷିଦ୍ଧ ଗପସବୁ ଶୁଣି ପକେଇବେ ବୋଲି ମୁଁ ଡରୁଥାଏଁ । ଏଇମିତି ଗପୁ ଗପୁ ସନ୍ଧ୍ୟା ହେଲା । ଅନ୍ଧକାର ଭରିଗଲା ଆକାଶ ସାରା । ସେ ଆକାଶକୁ ଚାହିଁ ଯିବା ପାଇଁ ଉଠି ଠିଆ ହେଲେ । ମୋତେ ତାଙ୍କ ସହିତ ବାଡ଼ ପର୍ଯ୍ୟନ୍ତ ଯିବା ପାଇଁ କହିଲେ । ଠିକ୍ ବାଡ଼ ପାଖରେ ଗୋଟିଏ ଗଛ ମୂଳ ଦେଖି ସେ ମୋତେ ସହସା ନିବିଡ଼ ଆଲିଙ୍ଗନରେ ବାନ୍ଧି ପକାଇଲେ । ମୁଁ ତାଙ୍କର ସେପରି ଆଚରଣରେ ହତଭମ୍ବ ହୋଇଗଲି ଓ କ୍ଷିପ୍ର ଗତିରେ ଫେରିଗଲି ଘର ଭିତରକୁ ।

ଠିକ୍ ସେଇଦିନ ରାତିରେ ବୁଢ଼ୀମା ମୋତେ ସେଇ ଯୁବକଟିକୁ ମୁଁ ବାହାହେବି ବୋଲି ସମ୍ବାଦ ଦେଲେ । ସେ କହିଲେ—"ଦାଶ ପିଲାଟି ଭଲ । ତାର ଆଦୌ ବଦ୍‌ଗୁଣ ନାହିଁ । ତା' ମା ଓ ତୋ' ବାପା-ମାଙ୍କ ଇଚ୍ଛାରେ ଖୁବ୍‌ଶୀଘ୍ର ତୁମ ଦୁହିଙ୍କର ବିବାହ ହୋଇଯିବା କଥା ।"

"ଏତେ ଚଞ୍ଚଳ ହେବାର କାରଣ କଣ୍"—ମୁଁ ପଚାରିଲି । ଯଦିଓ ମୁଁ ଜାଣିଥିଲି, ସେ କିମ୍ବା ଅନ୍ୟ କୌଣସି ପୁରୁଣାକାଳିଆ ଲୋକ ଜଣେ ପନ୍ଦରବର୍ଷର ଝିଅ ଆଗରେ ଆଦୌ ସତ କଥା ପ୍ରକାଶ କରିବେ ନାହିଁ ।

ଅନେକ ଅବୋଧ୍ୟ କାରଣରୁ ଯେ ଆମ ଘର ଖଣ୍ଡବିଖଣ୍ଡ ହୋଇଯାଉଛି ତାହା ମୁଁ ସ୍ପଷ୍ଟ ଜାଣି ପାରିଥିଲି । ମା' ମାଲବାରରେ, ବାପା କଲିକତାରେ । ଅନ୍ୟ ପରିବାର ଭଳି ଆମରଟି ପୂର୍ଣ୍ଣାଙ୍ଗ ହୋଇପାରୁ ନ ଥିଲା । ଯେତେବେଳେ ଆମେ ସବୁ ଏକାଠି ହେଉଥିଲୁ ଓ ମୁଁ ନିଜକୁ ସୁରକ୍ଷିତ ମନେ କରୁଥିଲି, ସେତିକବେଳେ କେମିତି ନା କେମିତି ପ୍ରଖର, ନିର୍ଦ୍ଦୟ, ଓ ଅସଙ୍ଗତ ଦୁର୍ଭାଗ୍ୟ ଆସି ପହଞ୍ଚି ଯାଉଥିଲା; ତା'ର ଧକ୍‌କାରେ ଭୂଲୁଣ୍ଠିତ ହେଉଥିଲା ମୋ ନିରାପତ୍ତାର ଦୁର୍ଗ, ତାସ୍‌ର ଘରପରି ଅନାୟାସରେ । ଏଇ ଅବସ୍ଥାରେ ମୋ ବାପା ଅବସର ନେଇ ମାଲବାରରେ ଆସି ରହିବାକୁ ଚାହିଁବା ଥିଲା ସ୍ୱାଭାବିକ । ମୁଁ ଥିଲି ଏକ ବୋଝ ଓ ଏକ ଦାୟିତ୍ୱ । ମୋ ବାପା-ମା କିମ୍ବା ବୁଢ଼ୀ-ମାଙ୍କ ପକ୍ଷରେ ଏଇ ଦାୟିତ୍ୱଟି ସମ୍ପନ୍ନ କରିବାରେ ବିଳମ୍ବ କରିବା ସମ୍ଭବ ନ ଥିଲା । ମୋ କାମ ବଢ଼େଇଦେବା ଥିଲା ସମସ୍ତଙ୍କର ଇଚ୍ଛା । ଏଣୁ ସମସ୍ତଙ୍କର ସମ୍ମତି ଓ ଶୁଭେଚ୍ଛାର ଅନୁଯୋଗରେ ମୋର ବିବାହ ସ୍ଥିର ହୋଇଗଲା. ତାଙ୍କରି ସହିତ । ମୁଁ କେବଳ ତାଙ୍କୁ ଆଉ ଅଳ୍ପଦିନ ଅପେକ୍ଷା କରିବାକୁ କହିଲି—"ମୁଁ କଲିକତା ଯାଇ ପରୀକ୍ଷା ସାରି ଫେରିଆସେଁ··· !"

କଲିକତା ଯିବାର ଠିକ୍ ପୂର୍ବରୁ ପୁଣି ଆସିଲେ ଆମ ଘରକୁ ସେଇ ଆତ୍ମୀୟ । ସୁଯୋଗ ଦେଖି ସେ ମୋତେ ଟାଣିନେଲେ ଅନ୍ଧାରୁଆ କବାଟ କୋଣକୁ ଏବଂ ମୋର ଓଠ ନିକଟରେ ତାଙ୍କର ଓଠ ଲଗାଇଲେ । ତାଙ୍କର ମୋଟା ମୋଟା ଆଙ୍ଗୁଳିରେ ସେ ଚିପି ଧରିଲେ ମୋର ବକ୍ଷୋଜ । ତା'ପରେ ସେ ପଚାରିଲେ—"ତୁମେ କଣ୍ ମୋତେ ଭଲ ପାଅନା ? ମୋର ସ୍ପର୍ଶ କଣ୍ ତୁମକୁ ଭଲ ଲାଗେନା ?" ମୁଁ ଆହତ ହେଲି । ମୋତେ ନିର୍ଯାତିତ ହେଲାଭଳି ଲାଗିଲା । ମୁଁ କିଛି ନ କହି କେବଳ –'ବିଦାୟ' ମାଗି ଚାଲି ଆସିଥିଲି ସେଦିନ ।

# ଏକୋଇଶି

## ଆଶ୍ଳେଷର ଯନ୍ତ୍ରଣା···

ନିର୍ବନ୍ଧ ପରେ କଲିକତାରେ ପହଞ୍ଚି ମୁଁ ବିଶେଷ ଭାବାଚ୍ଛନ୍ନ ଓ ସନ୍ଦିଗ୍ଧ ହୋଇପଡ଼ିଲି । ନାନା ଅମୀମାଂସିତ ପ୍ରଶ୍ନ ଯେମିତି ମେଘାଚ୍ଛନ୍ନ ହୋଇ ରହିଲା ମୋର ମନର ଆକାଶ । ପ୍ରସ୍ତାବଟି ଗ୍ରହଣ କରିନେଇ ମୁଁ କଣ୍ ଅସାବଧାନତାର ପରିଚୟ ଦେଲି ? ସେ ତ ସ୍ୱାସ୍ଥ୍ୟବାନ୍ ଦିଶୁ ନ ଥିଲେ ! ଆଲ୍‌ଜୁଅସ ହକ୍‌ସଲେ ପ୍ରଭୃତିଙ୍କୁ ସହଜରେ ଉଦ୍ଧାର କରିପାରିବା ଯଥେଷ୍ଟ ଯୋଗ୍ୟତାର ପ୍ରମାଣ ନୁହେଁ । ସେ କଣ୍ ମୋ ସନ୍ତାନଙ୍କର ସ୍ନେହ-ଶୀଳ ପିତାହୋଇ ପାରିବେ ? ସେ କଣ୍ ବିବେକବନ୍ତ ହୋଇପାରିବେ ?

ନିର୍ବନ୍ଧ କଥା ଶୁଣି କଲିକତାରେ ମୋର ବାନ୍ଧବୀମାନେ ଏକରକମ ଚମକି ପଡ଼ିଲେ । ସେମାନେ କହିଲେ—"ତୁ ତ ଠିକଣାରେ । ବାହାଘର କଥା ଚିନ୍ତା କରିବା ପୂର୍ବରୁ ତୋର ପାଠପଢ଼ା ସଂପୂର୍ଣ୍ଣ ହେବା ଉଚିତ ଥିଲା ।"

"ସବୁ ତ ସରିଗଲାଣି"—ମୁଁ କହିଲି—"ତେଣୁ ସେ ବିଷୟରେ ଆଲୋଚନା କରି ଅଧିକା ସମୟ କାହିଁକି ନଷ୍ଟ କରିବା ?"

ବାପା ମୋର ବରଙ୍କୁ କଲିକତା ଆସିବାକୁ ନିମନ୍ତ୍ରଣ କଲେ । ସେ ଉଡ଼ାଜାହାଜରେ ଆସିଲେ ବମ୍ବେରୁ । ଉଡ଼ାଜାହାଜରୁ ଅବତରଣ କଲାବେଳେ ସେ ପଶମି କନାର ସୁଟ୍ ପିନ୍ଧିଥିଲେ, ଦାଢ଼ି କଟା ହୋଇ ନ ଥିଲା । ଦମ୍ ଦମ୍ ବିମାନ କେନ୍ଦ୍ରର ରେଲିଂକୁ ଆଉଜି ମୁଁ ଅତି ବିରକ୍ତିର ସହିତ ତାଙ୍କୁ ଲକ୍ଷ୍ୟ କରୁଥିଲି । କାର୍‌ରେ ଆସିଲାବେଳେ ସେ ମୋ ଆଙ୍ଗୁଳିକୁ ଚିପିଦେଲେ କାମ ଭାବରେ ଚାଳିତ ହୋଇ ଏବଂ ପଚାରିଲେ—"ତୁମର ମନ ବଦଳିଗଲାଣି ତ ?" କାର୍‌ର ଚାଳକ ଦର୍ପଣ ଦେଇ ଗଭୀର କୌତୂହଳର ସହିତ ଆମକୁ ଲକ୍ଷ୍ୟ କରୁଥିଲା ସେତେବେଳେ ।

ଆମେ ଦୁହେଁ ପ୍ରତି ଅପରାହ୍ଣରେ ସିନେମା ଦେଖିବା ପାଇଁ ବାପା ପୂର୍ବରୁ ଟିକେଟ୍ କିଣି ରଖୁଥିଲେ ଓ ଆମର ଖାଇବା ପାଇଁ ବିଶିଷ୍ଟ ହୋଟେଲ୍‌ଗୁଡ଼ିକରେ ଟେବୁଲ୍ ସଂରକ୍ଷଣ କରି ରଖୁଥିଲେ । ଆମକୁ ଅଧିକାଂଶ ସମୟ ନିର୍ଜ୍ଜନରେ ରହିବାର ସୁବିଧା ଦିଆଯାଉଥିଲା । ଯୁବକ ଜଣକ ସହିତ ଏକୁଟିଆ ରହିଲେ ମୁଁ

ଖୁସି ହେବ, ସମ୍ଭବତଃ ଏହାହିଁ ବାପାଙ୍କର ଧାରଣା ଥିଲା । ଆଉ ସେ··· ! ଯେତେବେଳେ ସେ ମୋତେ ଘରେ ଏକୁଟିଆ ପାଉଥିଲେ, ଗ୍ରୁତ ମୁକୁଳା କରିବାକୁ କହୁଥିଲେ ନାନା ଯୁକ୍ତି ଦେଖାଇ । ଆଉ, ମୁଁ ନ ମାନିଲେ, ସେ ହୋଇ ଉଠୁଥିଲେ ଅତ୍ୟନ୍ତ କ୍ରୂର ଓ ପାଶବିକ । ତାଙ୍କର ହାତ ଆଘାତ କରୁଥିଲା ମୋର ଦେହକୁ, ଏବଂ ମୋର ଚମଡ଼ା ଉପରେ ରହି ଯାଉଥିଲା ନୀଳ ଓ ରକ୍ତାଭ ଚିହ୍ନସବୁ । ତାଙ୍କର ମାଲିବାର ଘରେ ସେ କପରି ଗୃହକର୍ତ୍ରୀମାନଙ୍କ ସହିତ ଅବୈଧ ଶୃଙ୍ଗାର କରିଥିଲେ, ସେଇସବୁ ବିଷୟ ଗପୁଥିଲେ । ଗ୍ରାମବାସିନୀ ଦରିଦ୍ରଶ୍ରେଣୀର ନାରୀମାନେ ପକ୍ଷୀମାନଙ୍କ ରତିକ୍ରୀଡ଼ା ସଦୃଶ କମ୍ ସମୟବ୍ୟାପୀ ଏକ କ୍ଷୁଦ୍ର ଓ ଦ୍ରୁତ ଶୃଙ୍ଗାରରେ ଅଭ୍ୟସ୍ତ ଥିଲେ । କାରଣ ମାଟି ତାଡ଼ିବା, ହଳ କରିବା, କାଠ ହାଣିବା ପ୍ରଭୃତି ଅଙ୍ଗପୂର୍ତ୍ତି କାମସବୁ ଓ କୌଣସିମତେ ନିଜେ ଖାଇ ଅପରକୁ ଖୋଇବାର ଦାୟିତ୍ୱ ସଦାସର୍ବଦା ସେମାନଙ୍କର ପୁରୁଷମାନଙ୍କ ପାଇଁ ଅପେକ୍ଷା କରି ରହିଥାଏ । ଏହି ବ୍ୟସ୍ତତାରେ ତାଙ୍କର ସମୟ କେଉଁଠି ଥାଏ, ସ୍ତ୍ରୀଙ୍କ ସହିତ ଶୃଙ୍ଗାରରେ ଟିକିଏ ସୂକ୍ଷ୍ମ ହେବାକୁ ବା ସାମାନ୍ୟ ରସିକତା କରିବାକୁ ।

ମୁଁ କାହିଁକି ଏତେ ଶିଥିଳ ଓ ଏତେ ନିସ୍ତେଜ ବୋଲି ମୋର ଆମ୍ପୀୟ ପଚାରିଲେ । ମୁଁ କିନ୍ତୁ ସେତେବେଳେ ଯୌନ କାମନାର ବାସ୍ତବ ଅର୍ଥ ଜାଣି ନ ଥିଲି । କାରଣ, ଥରେ ହେଲେ ବି ସେପରି ଅନୁଭବ ଆସି ନ ଥିଲା ମୋ ଜୀବନରେ । ସେ ପଚାରିଲେ—"ମୋତେ ଦେଖି ତୁମର କାମଭାବ କଣ ଜାଗ୍ରତ ହେଉନି ?" କପଟ ନ କରି ମୁଁ ଅତି ସହଜ ଭାବରେ କହିଲି—"ମୁଁ ଜାଣେ ନା ।"

ବାସ୍ତବିକ ସେଇ ସପ୍ତାହଟି ଉଭୟଙ୍କ ପାଇଁ ଥିଲା ନୈରାଶ୍ୟଜନକ । ମୁଁ ଆଶା କରିଥିଲି ଯେ ସେ ମୋତେ ବାହୁ ବିସ୍ତାର କରି ଦେବେ ଆଶ୍ଳେଷ ଏବଂ ଚୁମ୍ବନ କରିବେ ମୋର ମୁଖ, ମୋର ହାତ ଓ ମୋର କେଶଗୁଚ୍ଛ । ତାଙ୍କର ମଧୁର ପ୍ରେମସିକ୍ତ ଭାଷା ଅନୁରଣିତ ହେବ ମୋର କାନରେ । ମୁଁ ମୋର ବାପା ଓ ମାଙ୍କଠାରୁ ଯାହା ଆଶା କରୁଥିଲି, ତାଙ୍କଠାରୁ ତାହାହିଁ ଆଶା କରିଥିଲି । ମୁଁ ଚାହିଁଥିଲି ଆଳାପ, ସଖ୍ୟ ଏବଂ ଉଷ୍ମତା । ଶୃଙ୍ଗାରର ଚିନ୍ତା ମୋଠାରୁ ଥିଲା ବହୁତ ଦୂରରେ । ମୁଁ ଭାବିଥିଲି, ମୋ ଜୀବନର ସମସ୍ତ ନିଃସଙ୍ଗତା ତାଙ୍କ ସ୍ନେହସିକ୍ତ ଭୁଜର ଥରେ ମାତ୍ର ସଞ୍ଚାଳନରେ ଦୂରୀଭୂତ ହୋଇଯିବ ।

ସେ ବମ୍ବେ ଫେରିଗଲା ପରେ ବାପା ମୋତେ ଦିନେ କହିଲେ—"ତୁ ତୋର ଉପଯୁକ୍ତ ସାଥୀ ପାଇପାରିଚୁ ଜାଣି ଆନନ୍ଦିତ ।" ଏଇ ସାଥୀ ଶବ୍ଦର

ପାର୍ଥିବ ଅର୍ଥ ସକଳ ମୋ ପକ୍ଷରେ ଥିଲା କଷ୍ଟଦାୟକ । ବିଷାଦ ଭାବ ମୋତେ ଆଚ୍ଛନ୍ନ କଲା । ମନେହେଲା ଯେପରି କି ମୁଁ ହଜିଯାଇଛି । ମୁଁ ବାପାଙ୍କୁ କହିପାରିଲି ନାହିଁ ଯେ ମୁଁ ପ୍ରକୃତରେ ଆଶା କରିଥିଲି ମୋର କେଶଗୁଚ୍ଛ ଉପରେ ଗୋଟିଏ ଅଧିକ ଶାନ୍ତ ହାତର ସ୍ପର୍ଶ ଓ କାନରେ ଭବିଷ୍ୟତର ଭରସା ଯେନି ନିର୍ଭର ପ୍ରତିଶ୍ରୁତି ଦେଉଥିବା ସ୍ୱରଟିଏ । ମୋର ସ୍କାର୍ଟ ଖୋଲିବା ଓ ବ୍ରେସିଆର୍ ଛିଣ୍ଡେଇବାର ଯୋଗ୍ୟତା ଥିବା କର୍କଶ ହାତର କୌଣସି ଆବଶ୍ୟକତା ମୋର ନ ଥିଲା । କିନ୍ତୁ, କିଛି ହେଲେ କହିପାରୁ ନଥିଲି ବାପାଙ୍କୁ ।

ମୁଁ ଜାଣି ନ ଥିଲି କାହା ନିକଟକୁ ଯିବି ଟିକିଏ ସାନ୍ତ୍ୱନା ପାଇଁ । ଏକ ଅତର୍କିତ ଉତ୍ତେଜନାର ବଶବର୍ତ୍ତୀ ହୋଇ ମୁଁ ହଷ୍ଟେଲ୍‌ବାସିନୀ ମୋର ସେଇ ପୂର୍ବତନ ବାନ୍ଧବୀକୁ ଫୋନ୍ କଲି । ମୋର କଣ୍ଠସ୍ୱର ଶୁଣି ସେ ବିସ୍ମିତ ହୋଇଗଲା । ସେ କହିଲା "ମୁଁ ଭାବିଥିଲି ତୁମେ ମୋତେ ଭୁଲିଗଲଣି ବୋଲି ।" ମୁଁ ତାକୁ ଆମ ଘରକୁ ନିମନ୍ତ୍ରଣ କଲି । ସେ ମୋ ସହିତ ଗୋଟିଏ ରବିବାର ଯାପନ କରିବାକୁ ଆସିଲା । ଆମେ ଦୁହେଁ ମିଶି ବହିଥାକ ପରିଷ୍କାର କଲୁଁ ଓ ଧୂଳି ଝାଡ଼ିଲୁ । କେବଳ ଥରେ ମାତ୍ର ସେ ଚୁମ୍ବନ କରିଥିଲା ସେ ସମୟରେ । ଆଖିରୁ ପାଣି ବୋହୁଥିଲା ଓ ଧୂଳିରେ ଆମ ଓଠ ସବୁ ମୋଟା ହୋଇଯାଇଥିଲା ।

ମୁଁ ତାକୁ ପଚାରିଲି —"ତୁମେ ମୋତେ ଏଠୁ ନେଇଯାଇ ପାରିବନି ?"

"ଅତି କମ୍‌ରେ ଆଗାମୀ ଚାରିବର୍ଷ ଭିତରେ ନୁହେଁ"— ସେ ଉତ୍ତର ଦେଲା— 'ମୁଁ ଆଗେ ପଢ଼ା ଶେଷ କରେ ।" ଏତିକି କହି ସେ ମୋତେ ନିବିଡ଼ରେ ଜାକି ଧରିଲା । ମୋ ଗାଲ ଉପରେ ଲାଗିଲା ତା' ଗାଲର ସ୍ପର୍ଶ ।

ତା'ପରେ ଯେବେ ମୁଁ ସେଇ ବାନ୍ଧବୀକୁ ମନରୁ ପୋଛି ଦେଲି, ତା'ସହିତ ପୋଛି ହୋଇଗଲା ମୋର ନିଜ ପ୍ରତି କରୁଣା ପ୍ରଦର୍ଶନ କରିବାର ମନୋଭାବ । ଅନ୍ୟ ଏକ ଭିନ୍ନ ଧରଣର ଜୀବନ ବିଷୟରେ ସ୍ୱପ୍ନ ଦେଖିଲେ ଲାଭ କଣ୍ ହୋଇଥାନ୍ତା । ନେଡ଼ି ଗୁଡ଼ି କାହାଣୀକୁ ବୋଳି ସାରିଥିଲି । ସମାପିତ ହୋଇ ସାରିଥିଲା ମୋ ଜୀବନ ପାଇଁ ଯୋଜନା । ବାପା-ମା ଓ ଆତ୍ମୀୟମାନେ ମୋ ଜୀବନ-ପଥ ପ୍ରସ୍ତୁତ କରିସାରିଥିଲେ । ଏକ ବିଶେଷ ଯୁବକର ଶୃଙ୍ଗାର କ୍ଷୁଧାର ଶରବ୍ୟ ହେବା ଥିଲା ମୋର ଭବିଷ୍ୟତ ଏବଂ ଆମର ସେଇ ସଂସର୍ଗରୁ କେଇଟି ସନ୍ତାନ ଜାତ ହେବା ବି ଥିଲା ଏକରକମ ନିଶ୍ଚିତ । ମୋର ହେବାର ଥିଲା ଏକ ମଧ୍ୟବିତ୍ତ ଗୃହିଣୀ ଏବଂ ପାଦରେ ମସିଆ ଚପଲ୍ ପିନ୍ଧି, ହାତରେ ଦଉଡ଼ି ବୁଣା ମୁଣି ଧରି ଯିବାକୁ ଥିଲା ପରିବା ଦୋକାନକୁ । ମୋର ବ୍ରେଗା ଓ ପତଳା ସନ୍ତାନ-ମାନେ ଦାମିକା ଖେଳନା ମାଗିଲେ ସେମାନଙ୍କୁ ନିର୍ଦ୍ଦୟ ଭାବରେ ବାଡ଼େଇବାକୁ

ପଡ଼ିବ ଓ ସେମାନେ ଉଚ୍ଚ ସ୍ୱରରେ କାନ୍ଦିବେ,—ତାହା ହିଁ ଥିଲା ମୋର ଭବିଷ୍ୟତ, ଯାହା ମୋତେ ଜଳ ଜଳ ହୋଇ ଦିଶୁଥିଲା ସେତେବେଳେ । ସ୍ୱାମୀଙ୍କର ଶଯ୍ୟା ଅଣ୍ଡର୍‌ୱାର୍ କାଚ କୌଣସି ଧରଣର ଜାତୀୟ ପତାକା ପରି ବାହାରେ ଝୁଲାଇ ଶୁଖାଇବାରେ ସ୍ତ୍ରୀ-ତ୍ୱର ଗର୍ବ ଅନୁଭବ କରିବାକୁ ମୋ ଜୀବନ ଅଭିପ୍ରେତ ଥିଲା ।

ସେଇ କରୁଣ ବିଷାଦଭରା ମାସ ଭିତରେ ଆମ ପରିବାରର ଜଣେ ବାନ୍ଧବୀ ଅତିଥି ରୂପେ ଆମ ଘରକୁ ଆସିଲେ । ରହିଲେ ମାସେ । ତାଙ୍କ ସାଙ୍ଗରେ ଥିଲେ ତାଙ୍କର ଶିଶୁକନ୍ୟା ଓ ଅଠର ବର୍ଷର ପୁଅ । କଲିକତାରେ ଭଦ୍ର ମହିଳାଙ୍କର ଅନେକ ପରିଚିତ ଥିଲେ । ସେମାନଙ୍କୁ ସବୁ ସାକ୍ଷାତ କରିବାରେ ସେ ରହିଲେ ବ୍ୟସ୍ତ । ସାରା ସମୟ । ତାଙ୍କ ପୁଅ ସବୁବେଳେ ମୋର ସାଙ୍ଗେ ସାଙ୍ଗେ ରହିଲେ । ତାଙ୍କର ରାଷ୍ଟ୍ରଦୂତ-ମାମୁଁ ଚୀନରୁ ଆଣିଥିବା ଗୋଟିଏ କ୍ୟାମେରାରେ ସେ ମୋର ଫଟୋ ନେଲେ । ହିନ୍ଦୀ ସିନେମା ଗୀତର ଲହର ତାଙ୍କ ପାଟିରେ ସର୍ବଦା ଲାଗି ରହିଥିଲା । ତାଙ୍କ ସହିତ ମୁଁ ଭିକ୍ଟୋରିଆ ମେମୋରିଆଲ୍‌କୁ ଗଲି । ସେଠି ଗଛ ଓ ଝରଣାର ପୃଷ୍ଠଭୂମିରେ ସେ ମୋର ଫଟୋଗ୍ରାଫ୍ ନେଲେ ।

ତାଙ୍କର ସାନ୍ନିଧ୍ୟରେ ମୁଁ ନିଜକୁ ସୁନ୍ଦରୀ ମନେ କଲି । ସାମାନ୍ୟ ଲାଜ ଲାଜ ହୋଇ ସେ ମୋର ଅବୟବକୁ ସଜାଡ଼ିଲାବେଳେ ତାଙ୍କ ମୁହଁ ରଙ୍ଗା ପଡ଼ିଯାଉଥିଲା । ସେ ଥିଲେ ସୁସ୍ଥସବଳ ଓ ଗୌରବର୍ଣ୍ଣର । ଛାତ୍ରନେତା ରୂପେ ସେ ଅନେକ ବିପ୍ଳବାତ୍ମକ କାର୍ଯ୍ୟକ୍ରମରେ ଭାଗ ନେଇଥିଲେ ବି ।

'କଣ ହେବାକୁ ତୁମର ଅଭିଳାଷ'—ମୁଁ ଥରେ ପଚାରିଲି । ସେ କହିଲେ—"ମୁଁ ପ୍ରଥମେ ଗ୍ରାଜୁଏଟ୍ ହେବି ଓ ତା'ପରେ ଏଇ ଅପଦାର୍ଥ ଦେଶଟାରୁ ଚାଲିଯିବି ବାହାରକୁ ।" ନିଜ ଘରେ ସେ ଶାନ୍ତିରେ ନ ଥିଲେ । ମୋ ଭିତରେ ଏକ ସ୍ନେହ-ପ୍ରବଣ ଆତ୍ମାର ସନ୍ଧାନ ପାଇଲେ ସେ ।

"ତୁମେ ବାହାହୋଇ ଯାଉଚ ନା ?"—ସେ ଏକଦା ପଚାରିଲେ— "ଏତେ ଜଲ୍‌ଦି କାହିଁକି··· ? ପ୍ରକୃତରେ ଆଶ୍ଚର୍ଯ୍ୟ ଲାଗୁଚ ।"

"ମୁଁ ମଧ୍ୟ ତୁମର ଭଳି ମୁକ୍ତ ରହିବି···ମୁକ୍ତ···"—ମୁଁ କହିଲି । ସେ ସମ୍ମତି ଜଣାଇଲେ । ସବୁଜ ଘାସ ଉପରେ ବହୁତ ସମୟ ଧରି ଆମେ ବସି ରହିଲୁ । ମଝିରେ ମଝିରେ ଘାସର ପତ୍ର ଛିଣ୍ଡାଇ ଦାନ୍ତରେ ଚୋବାଉ ଥାଉଁ । ଏକାନ୍ତ ନୀରବତା ଭିତରେ । ହଁ, ନୀରବତା । ଶୀତ ଦିନର ଖରାଭଳି କୋମଳ

ନୀରବତାକୁ···ଆମେ ପରସ୍ପର ଭିତରେ ଭାଗ କରିଦେଇ ଥିଲୁ। ପୁଷ୍ପାଙ୍କର ମତରେ ଆମେ ଦୁହେଁ ପରସ୍ପର ପାଇଁ ଉପଯୁକ୍ତ, ଏକ ସୁନ୍ଦର ଯୋଡ଼ି । ସେ ମୋତେ କହିଲି—"ତୁମେ ଏଇ ଯୁବକକୁ ବାହା ହେଇପଡ଼ । ସେ ତରୁଣ ଓ ସ୍ୱାସ୍ଥ୍ୟବାନ୍।" ମୁଁ ପଚାରିଲି—"କେମିତି ? ତାଙ୍କର ତ ଚାକିରି ନାହିଁ। ମୋତେ ସେ ପୋଷିବେ କିପରି ?"

ବିଷାଦରେ ପୁଷ୍ପାଙ୍କ ଉତ୍ତର ଦେଲି—"ହଁ, ସବୁଠିଁଅ ସମାନ । ସମସ୍ତେ ଖାଲି ପଇସା କଥା ଭାବନ୍ତି।"

ଆପଣା ସହରକୁ ଫେରିବା ପରେ ଯୁବକ ଜଣକ ମୋତେ ଚିଠି ଲେଖିଲେ ଯେ ସେ ମୋ ବାହାଘରକୁ ଆସିବେ। ମୁଁ କିନ୍ତୁ ଉତ୍ତର ଦେଲି ନାହିଁ।

ଫେବ୍ରୁୟାରି ମାସରେ ମୋର ବିବାହ ଅନୁଷ୍ଠିତ ହେଲା। ସେତେବେଳେ ଆମ୍ରଗଛ ଗୁଡ଼ିକ କଅଁଳିଆ ଲାଲ୍‌ପତ୍ରରେ ଭରି ଯାଇଥିଲା । କଅଁଳ ଖଣ୍ଡିରେ ଗୁଣୁ ଗୁଣୁ ହୋଇ ବୁଲୁଥିଲେ ନୀଳ ମହୁମାଛିମାନେ । ସମସ୍ତ ଫୁଲଗଛ ହୋଇଥିଲା ପୁଷ୍ପିତ । ପୁରାତନ ନିର୍ମଳି ଗଛଟା ବି ଫୁଲଭାରରେ ଅବନତ ହୋଇଥିଲା। ମଳୟ ପବନ ବହି ଆଣୁଥିଲା ସେସବୁର ସୁବାସ ଘର ଭିତରକୁ । ମହକ ଉଠୁଥିଲା ଆମ ଘରର କୋଣ-ଅନୁକୋଣ।

ବାହାଘରର ଅଳ୍ପ କେଇଦିନ ପୂର୍ବରୁ ଆମର ଚାକର ଓ ମୂଲିଆମାନେ ବାଡ଼ ପରିଷ୍କାର କଲେ । ବାଡ଼ଗୁଡ଼ିକୁ ସଜାଡ଼ିଲେ ଓ ତାଳବରଡ଼ାର ଛାତ ପକାଇ ତିଆରି କଲେ ଗୋଟିଏ ସାମିୟାନା । କିଛି ରଙ୍ଗୀନ୍ କାଗଜର ଫୁଲ ଝୁଲିଗଲା। ସ୍ତମ୍ଭଗୁଡ଼ିକୁ ମଧ୍ୟ ରଙ୍ଗ କାଗଜରେ ଗୁଡ଼େଇ ସୁନ୍ଦର କରାଗଲା। ତଳେ ପକାଗଲା ସପ ଓ ମସିଣା । ତା' ଉପରେ ବିଛାଗଲା ପୁରୁଣା ଗାଲିଚା । ତା' ବ୍ୟତୀତ ବଗିଚା ଭିତରେ ଗୋଟିଏ କୃତ୍ରିମ ସରୋବର ପ୍ରସ୍ତୁତ କରାଗଲା ଓ ସେଥିରେ ରୋପିତ ହେଲା ପଦ୍ମଫୁଲ । ସ୍ଥାନ ସ୍ଥାନ ଆମ୍ରଗଛ ଗୁଡ଼ିକ ଉପାଡ଼ି ଧାଡ଼ିକରି ପୁନର୍ବାର ରୋପଣ କରାଯାଇଥିଲା । ପାଚିଲା ଫଳ ଧାରଣ କରିଥିଲେ ସେଗୁଡ଼ିକ। ବଗିଚା ଦେଖି ଅତିଥିମାନେ ବଡ଼ ପ୍ରଶଂସା କରିଥିଲେ।

ମୋ ବାପା ବଡ଼ ଉତ୍‌ଫୁଲ୍ଲ ଦିଶୁଥାନ୍ତି । ସମସ୍ତଙ୍କ ମତରେ ଖର୍ଚ୍ଚ ବାର୍ଚ୍ଚ ଓ ଆୟୋଜନ ଦୃଷ୍ଟିରୁ ମୋ ବାହାଘରଟି ଥିଲା ସେଇବର୍ଷର ଶ୍ରେଷ୍ଠ ବିବାହୋତ୍ସବ। ଘର ପଛକୁ ଥିବା ଖୋଲା ଜାଗାରେ କାଲିକଟରୁ ଆସିଥିବା ରୋଷେୟାମାନେ ତମ୍ବୁ ପକାଇ ରହିଥିଲେ, ଓ ନାନା ପ୍ରକାର ମିଠେଇ ଓ ନାୟାର୍-ସମାଜର ପାରମ୍ପରିକ ଖାଦ୍ୟ ପ୍ରସ୍ତୁତ କରିବାରେ ବ୍ୟସ୍ତ ଥିଲେ। ଗୋଟିଏ ପୂର୍ବ କୋଠରିରେ

ଖାଲି ଲଡ୍ଡୁ ଭର୍ତ୍ତି ହୋଇ ରହିଥିଲା । ସେଇମିତି ଅନ୍ୟ ଏକ କୋଠରୀରେ ଥିଲା କେବଳ ଫଳ ।

ଏହି ସମସ୍ତ ଅତିଭୋଜନ ସାମଗ୍ରୀ ଦେଖି ମୁଁ ନିଜକୁ ଅତି ଶସ୍ତା ମନେକଲି । ମୋତେ କିଛି ଭଲ ଲାଗିଲାନି । ଆମଭଳି ସମ୍ଭ୍ରାନ୍ତ ପରିବାରଗୁଡ଼ିକ ପକ୍ଷରେ ବିବାହୋତ୍ସବ ଥିଲା ପ୍ରକୃତରେ ଏକ ସମ୍ପଦର ପ୍ରଦର୍ଶନୀ ମାତ୍ର । ବାପା ଯେ ଅଧାଲକ୍ଷ ଅର୍ଥ ବ୍ୟୟକରି ବାହାଘରର ଆୟୋଜନ କରି ପାରିଛନ୍ତି, ତାହା ହିଁ ଯେପରି ଘୋଷିତ ହେଉଥିଲା ବନ୍ଧୁ-ବାନ୍ଧବଙ୍କ ଗହଣରେ । କନ୍ୟା ଥିଲା ଅବହେଳିତା ଓ ତା'ର ସୁଖ ସ୍ୱାଚ୍ଛନ୍ଦ୍ୟ, ତାର ଆନନ୍ଦ ଓ ଅନୁରାଗ ବିଷୟ ଥିଲା ନିହାତି ଗୌଣ । ମୋର ବିବାହ ଉତ୍ସବରେ ଗାନ୍ଧୀବାଦର ସାମାନ୍ୟ ସ୍ପର୍ଶ ବି ନ ଥିଲା । ବିବାହ ସମାପିତ ହେବାପରେ ରାତିରେ କଥାକଳି ନୃତ୍ୟ ଆୟୋଜିତ ହୋଇଥିଲା । ସେଥିପାଇଁ କଳାମଣ୍ଡଳମ୍‌ରୁ ବିଶିଷ୍ଟ ନୃତ୍ୟଶିଳ୍ପୀମାନେ ନିମନ୍ତ୍ରିତ ହୋଇ ଆସିଥିଲେ । ଏସବୁ ଅପବ୍ୟୟ ଦେଖି ମୁଁ ସମାଲୋଚନା କରିବାରୁ ବୁଢ଼ୀ-ମା ମୋତେ ଗାଳି ଦେଲେ । ସେ କହିଲେ—"ଏପରି ଗୋଟିଏ ଆଡ଼ମ୍ବରପୂର୍ଣ୍ଣ ବିବାହ ଉତ୍ସବର ଆୟୋଜନ କରିଥିବାରୁ ତୋର ବରଂ ବାପାଙ୍କୁ କୃତଜ୍ଞତା ଜ୍ଞାପନ କରିବା ଉଚିତ । ତୁ ଯା, ଉପରେ ତୋ' କୋଠରୀରେ ବିଶ୍ରାମ ନେବୁ । ତୋ' କଥା ଶୁଣି ଆତ୍ମୀୟ ଓ ବାନ୍ଧବମାନେ ଭାବିବେ ଯେ ଝିଅଟା ଗୋଟାଏ ନିମ୍ନ ସ୍ୱଭାବର ।"

କିନ୍ତୁ ହୋ-ହଲ୍ଲା ଓ ଅଶାନ୍ତ ମୋତେ ଏତେ ବେଶୀ ଉତ୍ତେଜିତ କଲା ଯେ ମୁଁ ଆଉ ମୋ କୋଠରୀରେ ଶାନ୍ତିରେ ରହିପାରିଲି ନାହିଁ । ଚାକରମାନଙ୍କର କୋଠରୀରେ ଯାଇଁ ଲୁଚିଗଲି । ବେଦୀ, ସାମିୟାନା ଓ ବଗିଚାର ସଜାସଜି ଓ ଆଡ଼ମ୍ବରକୁ ମୁଁ ଥିଲି ଅନୁପଯୁକ୍ତ । ଏସବୁ ଘଟଣାର ପୃଷ୍ଠ-ପଟ୍ଟ ଆବଶ୍ୟକ କରୁଥିଲା ମୋଠାରୁ ଅଧିକ ଜଣେ ଉଜ୍ଜ୍ୱଳବର୍ଣ୍ଣା କନ୍ୟା, ଯେ କି ରମଣୀୟା ପ୍ରମୋଦିନୀ ଓ ବିଳାସିନୀ ହୋଇଥାନ୍ତା ।

ରାତି ଆସିବାରୁ ଡାଇନାମା ସାହାଯ୍ୟରେ ବିଦ୍ୟୁତ୍ ଉତ୍ପାଦନ କରାଗଲା ଓ ପୂର୍ବରୁ ଗଛମାନଙ୍କରେ ଝୁଲା ହୋଇଥିବା ରଙ୍ଗୀନ୍ ବଲ୍‌ବ ସବୁ ଜଳି ଉଠିଲା । ମୁଁ ଅନ୍ୟସବୁ ଶିଶୁମାନଙ୍କ ସହିତ ବଗିଚାରେ ଲୁଚୁକାଳି ଖେଳିବା ଆରମ୍ଭ କରିଦେଲି । ଆମ ଖେଳର ଶବ୍ଦରେ ବଗିଚାଟି କମ୍ ମୁଖରିତ ହେଉ ନ ଥିଲା । ଅବଶ୍ୟ, ବୟସ୍କ ବନ୍ଧୁବାନ୍ଧବମାନେ କ୍ଳାନ୍ତି ଅପନୋଦନ ପାଇଁ ହଲ୍‌ରେ (ତଳପାଡ଼ିରେ) ବିଛା ହୋଇଥିବା ନୂଆ ଗାଲିଚା ଉପରେ ଶୋଇ ଯାଇଥିଲେ । ସର୍ବଶେଷରେ ମୁଁ ଶୋଇବାକୁ ଗଲାବେଳକୁ ପ୍ରକୃତରେ ରାତି ଚାରି ବାଜି

ଯାଇଥିଲି ଓ ବୁଢ଼ୀ-ମା ପ୍ରଭାତ-ପ୍ରାର୍ଥନା ଉଦ୍ଦେଶ୍ୟରେ ଉଠି ସାରିଥିଲେ । ତାର ଠିକ୍ ଦୁଇଘଣ୍ଟା ପରେ ବୁଢ଼ୀ-ମା ମୋତେ ନିଦରୁ ଉଠାଇ କହିଲେ—ଯା' ଗାଧୋଇ ଆସିବୁ । ତୁ ପରା କନିଆ, ତୁ ଗାଧୋଇବା ପୂର୍ବରୁ ତୋତେ କେହି ଦେଖିବା ଉଚିତ ନୁହେଁ । ଯା···ଯା···ଉଠ । ଗାଧୋଇସାରି ଭଲ ଶାଢ଼ୀଟିଏ ପିନ୍ଧିବୁ । ମନ୍ଦିରକୁ ଯାଇ ଠାକୁରଙ୍କୁ ପ୍ରାର୍ଥନା କରି ଆସିବୁ ।" ତା' ଡାକରେ ମୁଁ ନିଦ ଭାଙ୍ଗି ଭଲକରି ତାକୁ ଚାହିଁବା ମାତ୍ରେ ତା' ଆଖିରେ ଲୁହ ଭରି ଆସିଲା ।

ମୁଁ ପଚାରିଲି—"ତୁ କାନ୍ଦୁଚୁ ବୁଢ଼ୀ-ମା ?"

"ନାହିଁ ଲେ—ମୁଁ କାନ୍ଦିବ କାହିଁକି"—ସେ ଅଶ୍ରୁଳ ଆଖିରେ କହିଲା—"ଆଜି ପରା ଆମ ସମସ୍ତଙ୍କର ଖୁସି ଓ ସୌଭାଗ୍ୟର ଦିନ ।"

ମୁଁ ଅଚହ୍ଲା ଅତିଥିଙ୍କ ଗହଣରେ ପଶି ବାଟ କାଟି ଗାଧୋଇବାକୁ ଗଲି । ଗୃହକର୍ତ୍ତ୍ରୀ ମୋ ଗାଧୋଇବାର ସମସ୍ତ ପାରମ୍ପରିକ ସରଞ୍ଜାମ ଗାଧୁଆ ଘରେ ସଜାଡ଼ି ରଖିଥିଲେ । କିନ୍ତୁ ମୁଁ ସେସବୁର ଉପଯୋଗ ନ କରି ସାବୁନ୍ ଲଗାଇ ତରତରରେ ଗାଧୋଇ ପଡ଼ିଲି ଓ ଧଳା ଶାଢ଼ୀଟିଏ ପିନ୍ଧିଦେଲି ।

କମ୍‌ବୟସ୍କ ଆତ୍ମୀୟାମାନେ ମୋତେ ଦେଖି ନିରାଶାରେ ପାଟି କରି ଉଠିଲେ—"ତୁମେ କନ୍ୟା ପରି ଦିଶୁନ । କେଉଁ କନ୍ୟା ଏପରି ନିରାଡ଼ମ୍ବର ଦିଶେ···?"

## ବାଇଶି

## କଥାକଳି ବାଦ୍ୟର ତାଳେ ତାଳେ
## ସେ ମୋତେ ଆଘାତ କରି ଚାଲିଥାନ୍ତି—

ବିବାହର ଘଟଣା ଭିତରୁ ମୋର ସବୁଠୁ ଅଧିକ ମନେଅଛି ମୋର ସେଇ ଅଠର-ବର୍ଷ-ବୟସ୍କ ଯୁବକ ବନ୍ଧୁଙ୍କ କଥା । ସନ୍ଧ୍ୟାରେ କଥାକଳି ନୃତ୍ୟ ମୁଁ ତାଙ୍କ ନିକଟରେ ବସି ଦେଖିବି ବୋଲି କଥା ଦେଇଥିଲି । କିନ୍ତୁ ତାଙ୍କୁ ଏକୁଟିଆ ଚାଲିକୁ ଯିବାକୁ ପଡ଼ିଥିଲା । କଥାକଳି ନୃତ୍ୟ ଆରମ୍ଭ ହେଲା ବହୁତ ବିଳମ୍ବରେ, ସମସ୍ତେ ଖାଇ-ପିଇ ସାରିବା ପରେ । ଆମ ଘରର ଠିକ୍ ମୁଣ୍ଡ

ଉପରକୁ ଉଠି ଆସିଥିଲେ ନିର୍ମଳ ପୂର୍ଣ୍ଣଚନ୍ଦ୍ର ଓ ଗୃହଆଡ଼େ ବିଚ୍ଛେଇ ହୋଇ ପଡ଼ିଥିଲା ଶୁଭ୍ର ଜ୍ୟୋତ୍ସ୍ନା ।

କ୍ରମେ ଆମଘର ଖାଲି ହୋଇଗଲା । ସମସ୍ତେ କଥାକଳି ନୃତ୍ୟ ଉପଭୋଗ କରିବାକୁ ଚାଲିଗଲେ । ଘରେ ଏକୁଟିଆ ମୁଁ ଓ ମୋର ସ୍ୱାମୀ । ସ୍ୱାମୀ କହିଲେ, ତାଙ୍କର ନାଚ ଦେଖିବାକୁ ଆଦୌ ଇଚ୍ଛାନାହିଁ । ମୋତେ ରହିବାକୁ କହି ସେ ମୋତେ ଟାଣି ଟାଣି ଶୟନ କକ୍ଷକୁ ନେଇଗଲେ । ଆମର ନିର୍ଦ୍ଧାରିତ ଶୟନ କକ୍ଷରେ ଅତିଥିମାନଙ୍କ ପ୍ରଦତ୍ତ ଉପହାର ସବୁ ଏଣେ ତେଣେ ବିକ୍ଷିପ୍ତ ଭାବରେ ପଡ଼ିଥିଲା ଚଟାଣରେ । ବିଛଣା ଗୁଦର ଲୋଚ୍‌କୋଚ୍ ହୋଇ ମାଇଥିଲା । ନାଚ ଦେଖିବାକୁ ଯିବା ପୂର୍ବରୁ ପରିଚାରକମାନେ ତାକୁ ସଜ୍ଜିତ କରିବା ଉଚିତ ଥିଲା । ସମ୍ଭବତଃ ସେମାନେ ଭୁଲି ଯାଇଥିଲେ ।

ସୁନାରଜରି ଲାଗିଥିବା ଓଜନିଆ ଶାଢ଼ୀ ମୁଁ ଖୋଲିଦେଲି ଓ ବସିରହିଲି ବିଛଣାରେ । ତା'ପରେ ସ୍ୱର୍ଣ୍ଣଶ୍ରୀ ସ ଚନ୍ଦ୍ର ... ହୋଇ ସେ ମୋ ଉପରକୁ ଲୁଦ୍ଧ ପଡ଼ିଲେ । ତାଙ୍କର ନିର୍ଦ୍ଦିଷ୍ଟ ଆଲିଙ୍ଗନରେ ମୁଁ ବିସ୍ମିତ ହୋଇଗଲି । ତାଙ୍କର ବନ୍ଧନରୁ ମୁଁ ନିଜକୁ ମୁକ୍ତ କରିବାକୁ ଯେତେ ଚେଷ୍ଟାକଲି ବିଫଳ ହେଲି । ମୋର ଦେହ ଝାଳରେ ବୁଡ଼ିଗଲା ଓ ଗ୍ରୀତ ଦାକ ଦାକ ହେଲା ବନ୍ୟ ଭାବରେ । ମୁଁ ତାଙ୍କୁ ଶେଷରେ ଅନୁରୋଧ କଲି—ଈଶ୍ୱର ଚିନ୍ତା କରିବାକୁ । କହିଲି —"ଦେଖ, ଆଜି ଆମର ବିବାହ ରଜନୀ । ସର୍ବପ୍ରଥମେ ଆମେ କୃଷ୍ଣଙ୍କୁ ପ୍ରାର୍ଥନା କରିବା ଉଚିତ ।" ସେ ମୋତେ ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟକଲେ । ମୋତେ ବିଶ୍ୱାସ କରିପାରୁ ନ ଥିଲେ ସେ । ସତେ ଯେମିତ ମୋର ମୁଣ୍ଡ ବିଗିଡ଼ି ଯାଇଥିଲା ।

ତାଙ୍କର ସେଇ ପାଶବିକ ଅତ୍ୟାଚାର ବିଫଳ ହେଲା । ମୁଁ ପ୍ରକାଶ କଲି—"ମୋତେ ଡର ଲାଗୁଚି, ବୋଧହୁଏ ମୁଁ ରତିକ୍ରୀଡ଼ା ପାଇଁ ଅନୁପଯୁକ୍ତ । ସାଧାରଣ ଭାବରେ ନାରୀଙ୍କଠାରୁ ଯାହା ମିଳେ ସମ୍ଭବତଃ ମୋ ଠାରେ ତାହା ନାହିଁ, ସମ୍ଭବତଃ ମୁଁ ଯୌନ ଆବେଗ-ରହିତ ଜଣେ ଅ-ନାରୀ— ।"ମୋ କଥାଶୁଣି ସେ ଦୟାକଲେ ଓ ମୋତେ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲେ । ମୋତେ ନିବିଡ଼ ଭାବରେ ଆଲିଙ୍ଗନ କରି ସେ କହିଲେ—"ତୁମେ ଯାହା ହୋଇଥାଅ ପଛକେ, ଆମେ ଏକାଠି ଖୁସିରେ ରହିବା ।"

ତା'ପରେ ବାରମ୍ବାର ସେଇ ବିଷାଦଭରା ରଜନୀସାରା ସେ ମୋତେ ଖାଲି ଆଘାତ ପରେ ଆଘାତ ଦେଇ ଚାଲିଲେ । ବାହାରେ ଚାଲିଥିବା କଥାକଳି

ନୃତ୍ୟର ବାଦ୍ୟଧ୍ୱନି ଉଦାସ ଭାବରେ ଆମ ବାଡ଼ାଘରର ଦରଜାରେ ପିଟି ହେଉଥିଲା ଓ ଗାୟକମାନେ ଦମୟନ୍ତୀଙ୍କ କରୁଣ ଅରଣ୍ୟ ଯାତ୍ରା ବିଷୟ ଗାଉଥିଲେ ।

ସକାଳବେଳକୁ ମୋର ଅବୟବ ସବୁ କ୍ଲାନ୍ତ । ହାତ ପାଦ ସଂଚାଳନ କରିବାକୁ ବି କଷ୍ଟ ଲାଗୁଥାଏ । ଛ'ଟା ବେଳକୁ ଆସିଲେ ମାଆ ଓ ମୋତେ ଉଠାଇଲେ । ବିଦାୟୀ ଅତିଥିମାନଙ୍କୁ ମୋର ଦେଖା କରିବାର ଥିଲା । ମୁଁ ପାହାଚ ଓହ୍ଲାଇ ତଳକୁ ଗଲି । ଦେଖିଲି, ବାହାରେ ମୋର ବନ୍ଧୁ କାନ୍ଧରେ କ୍ୟାମେରା ଝୁଲାଇ, ବିଦାୟ ନେବା ଭଙ୍ଗୀରେ ମୋତେ ଅପେକ୍ଷା କରିଛନ୍ତି । ସେ ମୋତେ ଚାହିଁଲେ । ମୋର ଆଖିରେ ଲୁହ ଭରିଗଲା । ପଦେ ବି ଉଚ୍ଚାରଣ କରିପାରିଲି ନାହିଁ । ସେ ମୋତେ କିଛିକ୍ଷଣ ଧରି ଲକ୍ଷ୍ୟ କଲେ, ଓ ତା'ପରେ କିଛି ନ କହି ଚାଲିଗଲେ ନିଜ ବାଟରେ ।

ମଧୁ-ରଜନୀ ଯାପନ କରିବାକୁ ଆମେ ଅନ୍ୟ କେଉଁଠିକି ଯାଇ ନ ଥିଲୁ । ମୋର ସ୍ୱାମୀ ଥିଲେ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ଅନ୍ତର୍ଗତ । ତାଙ୍କର ଅନେକ ତରୁଣୀ ଆତ୍ମୀୟା ଥିଲେ । ସେମାନଙ୍କ ପ୍ରଶଂସା ଓ ପ୍ରଶସ୍ତି ଶୁଣିବାକୁ, ସେମାନଙ୍କ ସରାଗ ଓ ସ୍ନେହରେ ବାନ୍ଧି ହୋଇ ଘରେ ରହିବାକୁ ଚାହୁଁଥିଲେ ସେ । ଅନ୍ୟମାନଙ୍କ ସଦୃଶ ତାଙ୍କର ଜଣେ ପ୍ରଶସ୍ତି-ଗାୟିକା ଓ ତାଙ୍କର କ୍ଷୁଦ୍ର କାମନା ନିକଟରେ ଅନାୟାସରେ ବଶ୍ୟତା ସ୍ୱୀକାର କରିବା ଭଳି ଜଣେ ଆତ୍ମୀୟା ମୁଁ ହୋଇଯାଏଁ, ତାହାହିଁ ସମ୍ଭବତଃ ସେ ଆଶା କରିଥିଲେ । ବିବାହ ପରେ ପ୍ରାୟ ପନ୍ଦର ଦିନ ଧରି ମୁଁ କୁମାରୀ ସଦୃଶ ରହିଲି । ମୋର ଶାରୀରିକ ପ୍ରତିରୋଧ ତାଙ୍କ ପକ୍ଷରେ କ୍ରମଶଃ ଅସହ୍ୟ ଓ କ୍ଲାନ୍ତିକାରକ ହୋଇ ଉଠିଲା, ଯଦିଓ ସେ ପ୍ରକାର ପ୍ରତିକୂଳତା ସହିତ ମୋର ମାନସିକ ଇଚ୍ଛା—ଅନିଚ୍ଛାର ଲେଶ ମାତ୍ର ସମ୍ପର୍କ ନଥିଲା ସେତେବେଳେ ।

ସେଇ ସମୟରେ ମୁଁ ତାଙ୍କୁ ଗଭୀର ଭାବରେ ଭଲ ପାଉଥିଲି । ତାଙ୍କର ସନ୍ତୋଷ ପାଇଁ ମୁଁ ଯେ କୌଣସି ଧରଣର କଷ୍ଟଦାୟକ ଅତ୍ୟାଚାର ସହିବାକୁ ପ୍ରସ୍ତୁତ ଥିଲି । କିନ୍ତୁ କଣ ବା ମୁଁ କରିପାରିଥାନ୍ତି ? ମୋର ଅଙ୍ଗଲତାରେ ଯୌବନର ଫୁଲଫୁଟା ତଥାପି ଶେଷ ହୋଇ ନ ଥିଲା; କାମନାର ଜୁଆର ତଥାପି ବୁଡ଼ାଇ ନ ଥିଲା ମୋ ଦେହର ତଟଭୂମିକୁ । ପୁରୁଷର ଉଦ୍ଦାମ ଶୃଙ୍ଗାର ପାଇଁ ମୁଁ ଥିଲି ଅଯୋଗ୍ୟା । ମୋର ଅସ୍ଫୁଟ ଅଙ୍ଗ ତାଙ୍କର ଉଦଗ୍ର ରତି ଖେଳରେ ବାସ୍ତବିକ ବାଧା ସୃଷ୍ଟି କରୁଥିଲା । କାରଣ ସେ ବି ଥିଲେ ଜଣେ ନିପୁଣ ଶୃଙ୍ଗାରୀ । ତାଙ୍କ ଘରର ଦାସୀମାନଙ୍କ ସହିତ ସ୍ୱଚ୍ଛନ୍ଦ ଶୃଙ୍ଗାର କରିବା ଫଳରେ

ସେ କଠୋର ଓ କଠିନ ଯୌନ-ଲୀଳାରେ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ସେତେବେଳେ ମୋ ଧାରଣାରେ ପ୍ରେମ ଥିଲା କବିତାର ଫୁଲ, ଥିଲା ଯେମିତିକି ହାଲଦିଆ ଜହ୍ନ, ଯାହା ଭିତରେ ମୋର ପ୍ରିୟର ମୁହଁଟି ଝଲସି ଉଠୁଥିଲା । ମୁଁ ଆଶା କରିଥିଲି, ପ୍ରେମ ହେବ ମୋ କାନରେ ମଧୁର ଶବ୍ଦର ଗୁଞ୍ଜରଣ ।

ମାସର ଶେଷ ଆଡ଼କୁ ବର୍ଜନ, ଈର୍ଷା ଓ ଅନ୍ୟାନ୍ୟ ଅନେକ ତିକ୍ତ ଅନୁଭୂତି ଅର୍ଜନ କରିବା ପରେ ସହସା ମୋର ଶିଶୁ-ମୁହଁର ରୂପାନ୍ତର ଘଟିଲା । ମୁଁ ଦିଶିଲି ସ୍ତ୍ରୀ-ଲୋକଟିଏ ପରି । ମୋର ଅବୟବ ସବୁ ବେଦନାଯୁକ୍ତ ଓ କ୍ଳାନ୍ତ ହୋଇ ଉଠିଲେ ।

ତା'ପରେ ଆମେ ଗଲୁଁ ବମ୍ବେ । 'ଶାନ୍ତା କ୍ରୁଜ୍'ରେ ଗୋଟିଏ ଶ୍ରେଷ୍ଠ ଫ୍ଲାଟ୍‌ରେ ତାଙ୍କର ଅନେକ ଅବିବାହିତ ବନ୍ଧୁଙ୍କ ଗହଣରେ ଆମକୁ ରହିବାକୁ ହେଲା । ତାସ୍-ଖେଳାଳୀ ବନ୍ଧୁମାନେ ଫେରିବା ପରେ ଆମକୁ ସେଇ ବୈଠକ ଘରେ ଶୋଇବାକୁ ଅନୁମତି ମିଳିଥିଲା । ସକାଳ ହେବାର ଅବ୍ୟବହିତ ପୂର୍ବରୁ ମୁଁ ବିଛଣା ଗୁଡ଼ୁଥିଲି ଓ ମୁହଁ ଧୋଇ ନେଇ ବିଛଣା ଗୁଡ଼େଇ ନେଉଥିଲି । ଭୋର୍ ପାଞ୍ଚଟା ବେଳେ ଖବରକାଗଜ ବାଲା ଲୁହା ଫାଟକର ଆର ପଟରୁ ଥାଇ କାଗଜ ଗୁଞ୍ଜି ଦେଇ ଯାଉଥିଲା ଭିତରକୁ । ସକାଳ ହେଲାକ୍ଷଣି ବନ୍ଧୁମାନେ ସେଇ କୋଠରୀଟିରେ ବସି ଖବରକାଗଜ ପଢ଼ୁଥିଲେ ।

ନ'ଟା ବେଳେ ପୁରୁଷମାନେ ଗରମ ଭାତ ଓ ତର୍କାରି ଖାଉଥିଲେ । ସେଇଟା ଥିଲା ତାଙ୍କର ପ୍ରଥମ ଖାଇବା ଯାହାକୁ ସେମାନେ 'ଲଞ୍ଚ୍' କହୁଥିଲେ । ତା'ପରେ ପୁରୁଷମାନେ ଯାଉଥିଲେ ନିଜ ନିଜର କର୍ମକ୍ଷେତ୍ରକୁ । ବମ୍ବାରେ ପୂଝାରୀ ସହିତ ମୋତେ ଏକୁଟିଆ ରହିବାକୁ ପଡ଼ୁଥିଲା । ପୂଝାରୀ ବି ଦିନସାରା ବୁଲି ବୁଲି ଅପରାହ୍ନ ପାଞ୍ଚଟା ବେଳକୁ ଫେରୁଥିଲା ମାଲିକମାନଙ୍କୁ ସ୍ୱାଗତ ଜଣାଇ ଚା-ଜଳଖିଆ ଦେବାକୁ ହେବ ହୋଲି । ସେଇସବୁ ଦିନ ଗୁଡ଼ିକରେ ଶୋକରେ ଆଉଟି ପାଉଟି ହୋଇ ମୋର ଅବସ୍ଥା ବଡ଼ ଦୟନୀୟ ହୋଇ ଯାଇଥିଲା । ଗର୍ଭବତୀ ହେବା ପରେ ଅବସ୍ଥା ହେଲା ଆହୁରି ସାଙ୍ଘାତିକ । ବାରମ୍ବାର ବାନ୍ତି ଫଳରେ ମୁଁ ବଡ଼ କଷ୍ଟ ଅନୁଭବ କରୁଥିଲି ସେତେବେଳେ ।

ଦିନେ, ଗାଧୁଆ ଘରେ ସହସା ମୋର ଚେତା ବୁଡ଼ିଗଲା । କିଛି ସମୟ ମୁଁ ସେଇଠି ଓଦା ଚଟାଣରେ ଶୋଇ ରହିଲି । ମୋର ଉପର ଦେଇ ମାଛି ବହିଯାଉଥିଲା ଓ ପାଣି ଝରିବାର ସ-ସ ଶବ୍ଦ ଶୁଣା ଯାଉଥିଲା ଅସ୍ପଷ୍ଟ ଭାବରେ । ଦିନକୁ ଦିନ କ୍ଷିପ୍ର ହାରରେ ମୋର ଓଜନ ହ୍ରାସ ପାଇଲା । ରାତିରେ ଭଲ ନିଦ

ହେଲାନି । କାରଣ, ଅଧିକାଂଶ ସମୟରେ ପ୍ରତିହିଂସା ବଶତଃ ସ୍ୱାମୀ ମୋତେ ଶାସ୍ତି ଦେଉଥିଲେ ଓ ଦିନମାସ ମାଜି ଲଙ୍କା-ଭରା ତର୍କାରି ଓ ଭାତ ଗଣ୍ଡିଏ ଖାଇ ମୋତେ ବାରଘଣ୍ଟା ଖାଲି ପେଟରେ ରହିବାକୁ ପଡ଼ୁଥିଲା ।

ଥରେ ଅଫିସ୍ କାମରେ ବାପା ଆସିଲେ ବମ୍ବେ ଓ ରହିଲେ ତାଜ୍‌ମହଲ ହୋଟେଲ୍‌ରେ । ସେଠାରୁ ଆସିଲେ ମୋତେ ଦେଖିବାକୁ । ମୁଁ ଜୀବ-ଜନ୍ତୁ ଦେଖିବାକୁ ଭଲପାଏ ବୋଲି ସେ ମୋତେ ଭିକ୍ଟୋରିଆ ଚିଡ଼ିଆଖାନାକୁ ବୁଲାଇ ନେଇଗଲେ । ସରୋବରର ଚକାକାର କାନ୍ଥ ଉପରେ ଆମେ ଦୁହେଁ ବସିଲୁ । ସେଇଠି ମୁଁ କାହିଁକି ଏତେ ଦୁର୍ବଳ ଦିଶୁଚି ବୋଲି ବାପା ପଚାରିଲେ । ତାଙ୍କ ଧାରଣାରେ ବାହାଘର ପରେ ମୁଁ ବେଶ୍ ସୁସ୍ଥ ସବଳ ହୋଇଯିବା ଉଚିତ ଥିଲା । ତାଙ୍କ କଥା ଶୁଣି ମୋର କାନ୍ଦିବାକୁ ଇଚ୍ଛା ହେଲା । ତାଙ୍କର ଗଣନା ଭୁଲ୍ ବୋଲି ମୁଁ କହିଦେବାକୁ ଚାହୁଁଥିଲି । ମୋ ପକ୍ଷରେ ଏଇ ଯୁବକଟିକୁ ବିବାହ କରିବା ଉଚିତ ହୋଇନି ବୋଲି ମୁଁ ସ୍ପଷ୍ଟ ଜଣାଇ ଦେବାକୁ ଚାହୁଁଥିଲି । କିନ୍ତୁ ତାଙ୍କ ମନରେ ମୁଁ କଷ୍ଟ ଦେଇପାରିଲି ନାହିଁ । ନୀରବ ରହିଲି ।

ମୋ ବାପା ଥିଲେ ଜଣେ ଏକଛତ୍ରବାଦୀ । ସେ ନିଜ ଭୁଲ୍ ମାନିବାକୁ ପ୍ରସ୍ତୁତ ନ ଥିଲେ । ତାଙ୍କର ସିଦ୍ଧାନ୍ତ ଯେତେ ଭ୍ରାନ୍ତିମୂଳକ ହେଲେ ମଧ୍ୟ କେହି ତାଙ୍କୁ ସମାଲୋଚନା କରିବା ସେ ପସନ୍ଦ କରୁ ନ ଥିଲେ । ତାଙ୍କର ଏଇ ବିଶ୍ୱାସର ସୁରକ୍ଷା କରି ପାରିବାର ବୟସ ଓ ବୁଦ୍ଧି ମୋର ହୋଇ ନାରିଥିଲା । ପ୍ରାୟ ଘଣ୍ଟାକ ପରେ ସେ ଗୋଟିଏ ଦୋକାନରୁ ମୋ ପାଇଁ ଗୋଟିଏ ସିଙ୍ଗର ସିଲେଇ ମେସିନ୍ କିଣିଦେଲେ ।

ସନ୍ଧ୍ୟାରେ ସ୍ୱାମୀ ମୋତେ ବୁଲେଇ ନିଅନ୍ତି । କିନ୍ତୁ ଭୋକ ଓ କ୍ଳାନ୍ତି ଜନିତ ଦୁର୍ବଳତା ଯୋଗୁ ମୋତେ ଚାଲିବାକୁ କଷ୍ଟହୁଏ । ପ୍ରକୃତରେ, ମୁଁ ତାଙ୍କର ଉପଯୁକ୍ତ ସାଥୀ ହୋଇପାରି ନଥିଲି । ଅନ୍ୟ କେହି ମୋ ପ୍ରତି ସମ୍ବେଦନା ଜ୍ଞାପନ କଲେ ମୁଁ ସାନ ପିଲାଙ୍କ ପରି କାନ୍ଦି ଉଠୁଥିଲି । ମୋର ମାନସିକତାକୁ ଲକ୍ଷ୍ୟ କରି ସେ ଉଦ୍‌ବିଗ୍ନ ହୋଇ ପଡ଼ିଲେ ଓ ବିଶ୍ରାମ ପାଇଁ ମୋର ବୁଢ଼ୀ-ମାଙ୍କ ନିକଟକୁ ଚାଲିଯିବା ଉଚିତ ବୋଲି ପରାମର୍ଶ ଦେଲେ । ମୋତେ କିନ୍ତୁ ତାଙ୍କର ପରାମର୍ଶ ଭଲ ଲାଗିଲା ନାହିଁ; କାରଣ ସେତେବେଳେ ତାଙ୍କ ନିକଟରେ ଶୟନ କରିବା ଓ ଦେଖିବା ମୋ ପକ୍ଷରେ ଥିଲା ମୂଲ୍ୟବାନ୍ । ମୁଁ କହିଲି—"ନା ଗୋ, ମୁଁ ତୁମକୁ ଛାଡ଼ି ରହିପାରିବି ନାହିଁ ।" କିନ୍ତୁ ତାଙ୍କର ବନ୍ଧୁମାନେ ମୋର ଅବସ୍ଥା ପ୍ରତି ଦୟାପ୍ରବଣ ହୋଇ ମୋତେ ଘରକୁ ପଠାଇ ଦେବା ଉଚିତ ବୋଲି ତାଙ୍କୁ ପରାମର୍ଶ ଦେଲେ ।

ମୋତେ ମାଲବାର ନେଇଯିବାକୁ ଜଣେ ଜଣା ଆସିଥିଲେ । ଅବଶେଷରେ କେବେ ବି ମୋତେ ଭଲପାଇବାକୁ ଚେଷ୍ଟା କରି ନ ଥିବା ପୁରୁଷଟିଠାରୁ ଆପଣାକୁ ଛିନ୍ନ କରି ମୁଁ ଗଲି ମାଲବାର । ବୁଢ଼ୀ-ମା ମୋତେ ଦେଖିବା ମାତ୍ରେ କାନ୍ଦି ଉଠିଲେ । ଜଣେ ଆୟୁର୍ବେଦ-ଚିକିତ୍ସକଙ୍କୁ ଡାକି ମୋର ସ୍ୱାସ୍ଥ୍ୟର ପରୀକ୍ଷା କରିନେଲେ । ତାଙ୍କର ପରାମର୍ଶରେ ଓ ବୁଢ଼ୀ-ମାଙ୍କ ଯତ୍ନରେ ଖୁବ୍ ଶୀଘ୍ର ମୁଁ ସୁସ୍ଥ ଅନୁଭବ କଲି । କ୍ରମେ ମଧୁକାଳର ଦମ୍ପତ୍ତିମାନଙ୍କ ଅବସ୍ଥାର ଛବି ପୋଛି ହୋଇଗଲା ମୋ ମନରୁ ।

ସକାଳେ ମୁଁ ବୁଢ଼ୀ-ମାଙ୍କ ସହିତ ପ୍ରାର୍ଥନା ଘରକୁ ଯାଉଥିଲି । ବୁଢ଼ୀ-ମା ପଢ଼ୁଥିଲେ ଭାଗବତ ଓ ଗୀତା । ମୁଁ ତାଙ୍କ ପାଖରେ ବସି ଶୁଣୁଥିଲି । ଦିନେ ମୋ ଗର୍ଭରେ କିଛି ସଞ୍ଚାଳନ ଅନୁଭବ କଲି । ମୋ ଗର୍ଭସ୍ଥ ଶିଶୁ ଯେ ଜୀବନ୍ତ ହୋଇ ଉଠିଲାଣି—ଏ ଉପଲବ୍ଧି ମୋର ଆସିଲା । ମୁଁ ବୁଢ଼ୀ-ମାଙ୍କୁ ଅନୁଚ୍ଚ ସ୍ୱରରେ କହିଲି—"ମୋ ପୁଅଟା ଗୁଲୁଗୁଲ୍ କଲାଣି ।"

ସେ ହସି ଦେଇ କହିଲେ—"ପୁଅ ବୋଲି କେମିତି ଜାଣିଲୁ ?"

ମୁଁ କହିଲି—"ଏଇଟି ନିଶ୍ଚୟ ପୁଅ ହେବ ଓ ସେଇ ପୁଅଟି ଠିକ୍ କୃଷ୍ଣଙ୍କ ପରି ଦିଶିବ ।"

ଧୂପର ଧୂଆଁ ଭିତରେ ମୁଁ କୃଷ୍ଣଙ୍କର ମନୋହର ହସ ଅନୁଭବ କଲି । ମୁଁ ମନେ ମନେ ତାଙ୍କୁ ନିବେଦନ କଲି—"ସବୁ ଦିନେ,...ହଁ ସବୁଦିନେ ମୁଁ ତୁମକୁ ଭଲ ପାଇବି । ତୁମେଇ କେବଳ ହେବ ମୋର ସ୍ୱାମୀ । କେବଳ ତୁମରି ସହିତ ମୋର ଜାତକ ମିଳିଯିବ...?।"

# ତେରଶି

## ପ୍ରେମ ପାଇଁ ସୁନା ମୋହରଟିଏ...

ଜଣେ ସ୍ୱଳ୍ପବୟସ୍କା ତରୁଣୀ ପାଇଁ ସବୁଠାରୁ ଭଲ ଖେଳଣା ହେଲା ଗୋଟିଏ ଜୀବନ୍ତ ଶିଶୁ । ସେଇ ଶିଶୁ ତା'ପକ୍ଷରେ କଣ୍ଢେଇ । ଯାହାର କୋମଳ, ଲଳିତ ଦେହକୁ ଗାଧୋଇ ଦେଇ, ଦେହରେ ପାଉଡର୍ ବୋଳିଦିଏ ଓ ଆପଣାର ସ୍ତନ୍ୟ ଚୁଚୁମାଇ ଶୁଆଇ ପକାଏ ସେ ଯାହାକୁ ।

ପ୍ରସବ ଯନ୍ତ୍ରଣା ଅନୁଭବ କରିବା ମାତ୍ରେ ମୁଁ ଗ୍ରାମୋଫୋନ୍‌ରେ ପୁରୁଣା ରେକର୍ଡ଼୍ ସବୁ ଲଗେଇଲି ଓ ମୋର ପ୍ରସୂତି ଦର୍ଶନାଭିଳାଷିଣୀ ଆତ୍ମୀୟାମାନଙ୍କ ସହିତ ଗଳ୍ପ କଲି, ଅତି ସାହସର ସହିତ । ସେମାନେ ସମସ୍ତେ ମୋ କୋଠରୀର ବାହାରେ ବାରଣ୍ଡାକୁ ଆଉଜି ବସିଥିଲେ । ସବୁଠାରୁ ଉଦ୍‌ବିଗ୍ନ ଥିଲା ମୋର ସାନ ଭାଇ । ପ୍ରାୟ ପ୍ରତି ମିନିଟ୍ ଅନ୍ତରରେ ସେ ଆସି ପିଲା ହେଲାଣି କି ନାହିଁ ପଚାରି ଯାଉଥିଲା ।

ଶେଷରେ ମୋର ବାମ ଜଙ୍ଘ ଦେଇ ଶିଶୁଟି ପଦାକୁ ଆସିଲାବେଳେ ଯେଉଁ ଉତ୍କଟ ଯନ୍ତ୍ରଣା ହେଲା, ମୁଁ ତାହା ସହିବାକୁ ପ୍ରସ୍ତୁତ ନ ଥିଲି । ଚତ୍କାର କରି ଉଠିଲି । କିନ୍ତୁ ମୋ ବାନ୍ଧବୀ ରାଜିର ବାପା ଥିଲେ ଜଣେ ଡାକ୍ତର । ସେ ଉପସ୍ଥିତ ଥିଲେ । ମୋର ଗାଲ ଥାପୁଡ଼ାଇ ସେ କହିଲେ—"ଜୋଇ, ଭଲ କରିଚୁ···ତୋର ପୁଅଟିଏ ହେଇଚି ।"

ଭିତରେ ବହୁତ ଜମିଗଲେ ପୁଅ ଦେଖିବାକୁ । ପୁଅର ଉଚ୍ଚ କପାଳ ଓ ଦୁଧ ରଙ୍ଗର ଦେହ ଦେଖି ପ୍ରଶଂସା କଲେ ସମସ୍ତେ । ପୁଅକୁ ଯେତେବେଳେ ମୁଁ ପ୍ରଥମେ ଦେଖିଲି ଆନନ୍ଦରେ ସଙ୍କୁଚିତ ହୋଇଗଲି । କହିଲି—"ମୁଁ ତାକୁ 'ମନୁ' ବୋଲି ଡାକିବି । ସେ ଅନେକ ପରିମାଣରେ କବି ଲର୍ଡ଼୍ ବାଇରନ୍‌ଙ୍କ ଭଳି ଦିଶୁଚି ।" ସେ ସମୟରେ ମୋର ଟେବୁଲ୍ ଉପରେ ସବୁବେଳେ ସ୍ୱର୍ଗତଃ ଲର୍ଡ ବାଇରନ୍‌ଙ୍କ ଫଟୋ ଥିଆ ହେଉଥିଲା । ସବଦା ମୁଁ ଗୁହୁଁଥିଲି, ମୋ ପୁଅ ତାଙ୍କ ସଦୃଶ ହେଉ । ମନୁର ପାଦରେ ଜନ୍ମବେଳେ କଣ୍ଟିକିଏ ଅସୁବିଧା ଥିଲା ପରି ମନେ ହେଉଥିଲା । ଗୋଟିଏ ଅବ୍ୟବହୃତ ଡେଣାପରି ବାଙ୍କି ଯାଉଥିଲା ପାଦଟି । ତାର ଏଇ କ୍ଷୁଣ ମୋତେ ଆନନ୍ଦିତ କଲା । ବାଇରନ୍‌ଙ୍କର କଣ୍ ଗୋଟିଏ ପାଦ ଅସୁବିଧାଜନକ ନ ଥିଲା କି ?

ନିୟମିତ ଘଷା-ଘଷି କରି ବୁଢ଼ୀ-ମା ପୁଅର ବଙ୍କା ପାଦଟିକୁ ସଜାଡ଼ି ଦେଲେ । ମୋ ଶାଶୁ ଓ ବୁଢ଼ୀମା ଘଣ୍ଟା ଘଣ୍ଟା ବସି ପୁଅକୁ ଗେହ୍ଲା କରୁଥିଲେ ଓ ପ୍ରଶଂସା କରୁଥିଲେ । ମଝିରେ ମଝିରେ ମୁଁ ମୋ ଖେଲଗୁଡ଼ି ଉଠି ଯାଉଥିଲି ଓ କୋଳରେ ଧରି ପୁଅକୁ ସ୍ତନ୍ୟ ଦେଉଥିଲି । ମୋର ଦେହରେ ସଞ୍ଚିତ ଶକ୍ତି ବ୍ୟତୀତ ମୁଁ ତାକୁ ଅନ୍ୟ କିଛି ଖାଇବାକୁ ଦବାକୁ ଇଚ୍ଛା କରୁ ନ ଥିଲି । ପ୍ରକୃତରେ ସେ କେବଳ ମୋଠାରୁ ଖାଇ ବଢ଼ିଲା ଏବଂ ଦିନକୁଦିନ ଆକୁଲ୍-ଥୁକୁଲ୍ ଓ ସୁନ୍ଦର ହୋଇଗଲା ।

ତାକୁ ପାଖରେ ନେଇ ରାତିରେ ଶୋଇଲାବେଳେ ମୋର ମନେ ପଡ଼ିଲା ସ୍ୱାମୀଙ୍କ କଥା । ମୁଁ ତାଙ୍କୁ ଛୁଟି ନେଇ ଆସିବାକୁ ଚିଠି ଦେଲି । ସେ

ଆସି ପହଞ୍ଚିଲେ । ରାତରେ ପୁଅ ବାରମ୍ବାର ଖାଇବା ପାଇଁ ଉଠିବାରୁ ସେ ବଡ଼ ବିରକ୍ତି ପ୍ରକାଶ କଲେ । ରାଗିଯାଇ ଚିତ୍କାର କଲାଭଳି କହିଲେ "ନେଇ ଯା ତାକୁ ତୁମ ବୁଢ଼ୀ-ମା'ଙ୍କ ପାଖରେ ଛାଡ଼ି ଆସିବ । ଏତେ ଗୋଳମାଳ ଓ କେଁ-କାଁ ଭିତରେ ମୁଁ ଶୋଇ ପାରିବିନି ।" ତାଙ୍କ ପାଟିରେ ପିଲାଟା ବି ମୋତେ ଜାବୁଡ଼ି ଧରିଲାଭଳି ବୋଧ ହେଲା । ମୋର ମନେ ହେଲା ଆମର ନିର୍ଯ୍ୟାତିତ ପରିସ୍ଥିତି ବିଷୟ ସେ ବି ଅନୁମାନ କରିନେଲା ବୋଧହୁଏ ।

ମୁଁ ପୁଅକୁ ଧରି ବୁଢ଼ୀ-ମା'ଙ୍କ ନିକଟକୁ ଗଲି । ସେଠି ଆମେ ତିନିଜଣ ଗୋଟିଏ ବିଛଣାରେ ହେଲେ ବି ଆନନ୍ଦରେ ଶୋଇ ପଡ଼ିଲୁ ଗଭୀର ନିଦ୍ରାରେ । ନିଦ ଲାଗିବା ପୂର୍ବରୁ ମୁଁ ବୁଢ଼ୀମାଙ୍କୁ କହିଲି—"ସ୍କୁଲ୍‌ରେ ମୁଁ ଗଣିତରେ ଆଉ ଟିକିଏ ଭଲ କରିବାର ଥିଲି ।"

ବୁଢ଼ୀମା କହିଲେ—"ଏତେବେଳେ ସେ କଥା କାହିଁକି ?"

ମୁଁ କହିଲି—"ତା'ହେଲେ—ମୋତେ ତୁମେ ଏତେ ଶୀଘ୍ର ବାହା କରିଦେଇ ନ ଥା'ନ୍ତ ।"

ସେ କଥା ଶୁଣି ସେ ହସିଲେ । ତା'ପରେ ପୁଅକୁ ଓ ମୋତେ ତାଙ୍କ ସାଲ୍ ଖଣ୍ଡିକରେ ଆସ୍ତେ କରି ଢାଙ୍କିଦେଲେ ।

ମାଲ୍‌ବାରରେ ଥିଲାବେଳେ ମୋ ସ୍ୱାମୀଙ୍କର ଅଧିକାଂଶ ସମୟ କଟୁଥିଲା ତାଙ୍କର ଆତ୍ମୀୟା ଓ ଶାଳୀମାନଙ୍କ ଗହଣରେ । ମୋ ପ୍ରତି ତାଙ୍କର ଆଦୌ ଧ୍ୟାନ ନ ଥିଲା । ମୋ ସହିତ ପଦେ କଥା କହିବାକୁ ବି ସେ ଆଗ୍ରହ ପ୍ରକାଶ କରୁ ନ ଥିଲେ । କିନ୍ତୁ ରାତରେ ? ସର୍ଦ୍ଦାର ଯେପରି ତାର ଗୋଲାମମାନଙ୍କଠାରୁ ତା'ର ପାଉଣା ଅତି ସହଜ ଭାବରେ ଓ ବିନା ବାକ୍ୟବ୍ୟୟରେ ଆଦାୟ କରିନିଏ ସେ ରାତରେ ସେଇପରି ଆସୁଥିଲେ ମୋ ନିକଟକୁ । ତାଙ୍କୁ ଭଲ ଲାଗିବ ବୋଲି ମୋର କୁଞ୍ଚିତ କେଶରେ ମୁଁ ଯେଉଁସବୁ ପାରିଜାତ ଖଞ୍ଜିଥାଏଁ ସେସବୁ ନଷ୍ଟ ହୋଇଯାଏ ! ତାଙ୍କର ପ୍ରେମ ଥିଲା ସଂକ୍ଷିପ୍ତ ଓ ବର୍ବରୋଚିତ । ଯୌନବ୍ୟତୀତ ଅନ୍ୟ କୌଣସି ବିଷୟର ଚର୍ଚ୍ଚା ତାଙ୍କୁ ଭଲ ଲାଗୁନଥିଲା । ପକ୍ଷାନ୍ତରେ ମୁଁ ଥିଲି ଯୌନ-ବିଜ୍ଞାନ ବିଷୟରେ ଅଜ୍ଞ । ପୁଣି, କାମଭାବ ଉଦ୍ଦୀପ୍ତ କଲାଭଳି ରୂପ ବି ମୋର ନଥିଲା । ମୋର ଅଙ୍ଗ ଥିଲା କ୍ଷୀଣ । ପୁଣି ମୋର ବକ୍ଷୋଜ ଥିଲା ଅନାକର୍ଷଣୀୟ । ଅଥଚ, ମୋର ସ୍ୱାମୀଙ୍କ ସ୍ନାନ ପାଇଁ ସ୍ନାନ-ଘରକୁ ପାଣି ଓ ଲୁଗାପଟା ନେଇଯାଉଥିବା ନଳାପଡଭବନର ସ୍ୱାସ୍ଥ୍ୟ-ବତୀ ଦାସୀଗଣଙ୍କର ଶରୀର ତାଙ୍କ ପକ୍ଷରେ ଥିଲା ବେଶ୍ ଆମୋଦଦାୟକ, ଯେଉଁମାନଙ୍କ ପାଇଁ ଅନ୍ଧାରୁଆ ଗାଧୁଆ-ଘରେ ଅପେକ୍ଷା କରି କରି ସେ ଅଧୈର୍ଯ୍ୟ ହୋଇ ପଡ଼ୁଥିଲେ ।

ପଦ୍ଧଏ ମିଠାକଥା ଓ ଦାରେ ମାଙ୍କ ସ୍ନେହ ସ୍ପୃହାଣୀପାଇଁ ମୁଁ ଝୁରି ହେଉଥିଲି । ଆମର ସାମାଜିକ ମର୍ଯ୍ୟାଦା ଓ ସମ୍ପଦ ଲାଭର ସମ୍ଭାବନା ଦେଖି ଯେ ସ୍ୱାମୀ ମୋତେ ବିବାହ କରିଛନ୍ତି, ତାହା ମୁଁ ଅନୁମାନ କରିନେଲି । ଏକ କରୁଣ ଶୀତଳତା ଗ୍ରାସ କଲା ମୋର ହୃଦୟ । ମୁଁ ସେତେବେଳେ ଜାଣିପାରିଲି, ବୈବାହିକ ଜୀବନରେ ଯେଉଁ ପ୍ରେମ ପାଇବି ବୋଲି ମୁଁ ଆଶା କରିଥିଲି, ବିଧି-ସମ୍ମତ ପରିଧିର ବାହାରେ ମୋତେ ତା'ର ସନ୍ଧାନ କରିବାକୁ ପଡ଼ିବ । ଯଥାର୍ଥ ପ୍ରେମ ଓ ଭଲ ପାଇବା ସହିତ ମୁଁ ମୋ ଜୀବନକୁ ମିଶେଇଦେବାକୁ ଚାହିଁଲି ।

ସେ ଯେତେବେଳେ ବମ୍ବେ ଫେରିଗଲେ ପ୍ରଥମ ଚିଠି ମୋତେ ନ ଲେଖି ଲେଖିଥିଲେ ତାଙ୍କର ଜଣେ ତରୁଣୀ ଆତ୍ମୀୟାଙ୍କ ନିକଟକୁ । ସନ୍ଧ୍ୟାରେ ଦିନେ ମୋ ସ୍ୱାମୀ ଆମ ଘରକୁ ଚାଲି ଚାଲି ଆସୁଥିଲାବେଳେ ବାଟରେ ସେଇ ଯୁବତୀଟି ତାଙ୍କୁ ଆଲିଙ୍ଗନ କରିବାର ସୁଯୋଗ ଦେଇଥିଲା । ନା, ନା, ମୁଁ ଆଉ ତାଙ୍କର ବିଶ୍ୱାସ ରଖିବି ନାହିଁ, ଅନ୍ତତଃ କାମ୍‌ରେ ଶରୀର କ୍ଷେତ୍ରରେ, ମନେ ମନେ ଏହାହିଁ ମୁଁ ଠିକ୍ କରିନେଲି ।

ସେତେବେଳେ ମୋ ବାପା ନାଲପତ ଭବନ ନିକଟରେ ଗୋଟିଏ ଆଧୁନିକ ଧରଣର ଘର ନିର୍ମାଣ କରାଉଥିଲେ । କାରଣ, ସେ ଥିଲେ ଆମିଷ-ପ୍ରିୟ । ନାଲାପତର ପ୍ରେଷେଇ ଘରେ ଆମିଷ-ପ୍ରସ୍ତୁତି ସୁବିଧାଜନକ ନ ଥିବାରୁ ସେ ଅଲଗା ରହିବାକୁ ଯୋଜନା କରୁଥିଲେ । କାମ ଚାଲିଥିଲା । ମୂଲିଆମାନଙ୍କ ଭିତରେ ଜଣେ ଯୁବକ ମିସ୍ତ୍ରୀ ଥିଲା ଯେ କି ଚୁକ୍ତି ସୂତ୍ରରେ ଅନ୍ୟ ଏକ ଗାଁରୁ ଆସିଥିଲା । ଯୁବକଟି ଥିଲା ବହୁତ ସୁନ୍ଦର । ମୋର ଆତ୍ମୀୟମାନଙ୍କ ସହିତ ମୁଁ କାମ ଦେଖିବାକୁ ଯାଇ ପ୍ରକୃତରେ ତାକୁହିଁ ଲକ୍ଷ୍ୟ କରୁଥିଲି । ସେ ଯେଉଁସବୁ ଅଶ୍ଳୀଳ ସଙ୍କେତ ଦେଉଥିଲା, ଆମ ଚାକରାଣୀ ସେସବୁ ମୋ ଆଗରେ କେବଳ ପ୍ରକାଶ କରୁଥିଲା ଗୋପନରେ । ସେଇ ଯୁବକଟିକୁ ପୋଷ ମନେଇଲେ ଭଲ ହେବ ବୋଲି ମୁଁ ଭାବିଲି ।

କାମ ପ୍ରାୟ ସମ୍ପୂର୍ଣ୍ଣ ହୋଇ ଆସିଲାବେଳକୁ ମୁଁ ଆମ ଚାକରାଣୀକୁ ଯୁବକଟି ରହୁଥିବା ସ୍ଥାନକୁ ପଠାଇଲି । ସାଙ୍ଗରେ ଦେଇଥିଲି ସୁନା ମୋହରଟିଏ; ମୋ ତରଫରୁ ତା'ପାଇଁ ସେଇଟି ଉପହାର । ଭଗବତୀଙ୍କ ବେଦୀ ପାଖରେ ସେ ମୋତେ ଆସି ସାକ୍ଷାତ କରିବାକୁ ମୁଁ ନିମନ୍ତ୍ରଣ କରିଥିଲି । ସେତେବେଳକୁ ସଞ୍ଜ ଗଡ଼ିଯାଇଥିବ ଓ ଆକାଶକୁ ଜହ୍ନ ଉଠିସାରିଥିବ । କିନ୍ତୁ, ଚାକରାଣୀ ଫେରିଆସି ଯୁବକଟି ତା' ଗାଁକୁ ଚାଲିଗଲାଣି ବୋଲି ଖବର ଦେଲା । ମୁଁ ତା'ର ଠିକଣା

ଜାଣି ନ ଥିଲି । ମୁଁ ଗୃହପରିଚାରିକାକୁ କହିଲି—"ଯା, ଯେମିତି ହେଲେ ତା'ର ଠିକଣା ବୁଝି ତାକୁ ଏ ଗାଁକୁ ନେଇଆ । ଏଇ ସପ୍ତାହକ ଭିତରେ ତୁ ଯଦି ତାକୁ ଆଣିପାରୁ ମୁଁ ତୋତେ ମୋ ସୁନା ହାରଟି ଦେଇଦେବି ।"

ମୁଁ ଥିଲି ପ୍ରେମପାଇଁ ପ୍ରସ୍ତୁତ; ଶୃଙ୍ଗାର ଭୋଜନ ପାଇଁ ପରିପକ୍ୱ । ମୋର ଗୀତରେ ଓ କଥନ ଭଙ୍ଗୀରେ ଫୁଟି ଉଠୁଥିଲା ନାରୀସୁଲଭ ପ୍ରେମାଭିଳାଷ । ଏକଦା ମୋର ଜଣେ ଆତ୍ମୀୟ ମୁଁ ପାହାଚରେ ଉଠୁଥିବା ସମୟରେ ମୋତେ ଜାବୁଡ଼ି ଧରି କହିଲେ—"ତୁମେ ବହୁତ ସୁନ୍ଦର ।" ଯଦିଓ ମୁଁ ତାଙ୍କର ଉକ୍ତିକୁ ବିଶ୍ୱାସ କରିପାରି ନ ଥିଲି, ତଥାପି ତାଙ୍କପ୍ରତି କୃତଜ୍ଞତା ବଶତଃ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କଲିନାହିଁ ! ତାଙ୍କର ଆଲିଙ୍ଗନ ଭିତରେ କେତୋଟି ମିନିଟ୍ ଯାପିତ ହୋଇଗଲା । ତାଙ୍କ ଅଙ୍ଗରେ ଥିଲା ଆବେଗର କମ୍ପନ । ସେ ମୋର ଓଠ ଚୁମ୍ବନ କଲାବେଳେ ମୋତେ ତାଙ୍କ ପାଟିର ଗନ୍ଧ ଭଲ ଲାଗି ନ ଥିଲା ।

ତାହାହିଁ ଥିଲା ସମ୍ଭବତଃ ମୋ ଜୀବନର ସର୍ବଶ୍ରେଷ୍ଠ ଉଚ୍ଛାସମୟ ମଧୁଋତୁ । ଗ୍ରାମଫୋନ୍‌ରେ ମୀରା-ଭଜନ, ବିଳାସପ୍ରିୟ ଆତ୍ମୀୟଗଣ ଓ ସର୍ପବେଦୀ ନିକଟରେ ଥିବା ନିର୍ମଳି ବୃକ୍ଷର ସୁବାସିତ ପୁଷ୍ପଗୁଚ୍ଛ···ଏବଂ ରାତିରେ ଶିଶୁପୁତ୍ରର ମୁହଁ ଉପରେ ଚନ୍ଦ୍ରକିରଣର ଆଭାସ ଓ ମୋର ସ୍ତନ ଉପରେ ତାର କୁନି କୁନି ଆଙ୍ଗୁଳି । ବେଶ୍ ସ୍ମରଣୀୟ ଥିଲା ସେଇ ଦିନଗୁଡ଼ିକ । ସ୍ୱାମୀଙ୍କର ମୁଖ କ୍ରମେ ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇଯାଉଥିଲା; ମୋର ଜୀବନରୁ କ୍ରମେ ହଜିଯାଉଥିଲା ତାଙ୍କର ବାସ୍ତବତା; ସୂର୍ଯ୍ୟାସ୍ତ ପରେ କ୍ରମେ କ୍ରମେ ଦିଗନ୍ତରେ ବିଲୟମାନ ରକ୍ତିମାଭା ସଦୃଶ ସେ ମୋ ଜୀବନରୁ ବିଦାୟ ନେଇଯାଉଥିଲେ ଯେମିତି । ମୁଁ ଆଉ ତାଙ୍କୁ ଭଲ ପାଉ ନ ଥିଲି । ତାଙ୍କଠାରୁ ଚିଠି ଆସିଲେ ମୋ ଆଖିଠାରୁ ଦୂରରେ ଡ୍ରୟର୍ ମଧ୍ୟରେ ରଖିଦେଉଥିଲି । ସେ ଅଧିକାଂଶ ସମୟ ତାଙ୍କର ଜଣେ ୱାଇ. ଏମ୍. ସି. ଏ ଠାରେ ରହୁଥିବା ନିକଟ ବନ୍ଧୁ ସମ୍ପର୍କରେ ଲେଖୁଥିଲେ । ସେଇ ଜଣକ ଥିଲା ତାଙ୍କର ସବୁଦିନଆ ବନ୍ଧୁ । ବନ୍ଧୁ ଜଣକ ନିଶ୍ଚୟ ମୋର ପସନ୍ଦଯୋଗ୍ୟ ହୋଇବ ବୋଲି ସେ ଲେଖୁଥିଲେ ।

ସର୍ବଶେଷରେ ମୋର ପୁନଶ୍ଚ ବମ୍ବେ ଯିବା ସ୍ଥିର ହେଲା ବୈବାହିକ ଜୀବନକୁ ପୁନରୁଜ୍ଜୀବିତ କରିବାପାଇଁ । ଏକଥା ଶୁଣି ଆତ୍ମୀୟବର୍ଗଙ୍କର ହୃଦୟ ଭାଙ୍ଗିଗଲା । ଆଉ ଗୀତ ଓ ସାନ୍ଧ୍ୟଭ୍ରମଣର ପ୍ରଶ୍ନ ନ ଥିଲା । ମୋ ସହିତ ଶାଶୂ ଓ ଦୁଇଜଣ ଚାକର ବମ୍ବେ ଗଲେ । ଦାଦାର ପାଖରେ ହିନ୍ଦୁନିବାସଠାରେ ଗୋଟିଏ ଫ୍ଲାଟ୍ କିଣାଯାଇଥିଲା ବମ୍ବେରେ । ପ୍ରତିବେଶୀ ଓ ଆମର ମିଶି ବାରଣ୍ଡା ଥିଲା ଗୋଟିଏ । ପ୍ରତିବେଶୀ ଘରର ପିଲାମାନେ ସେଇ ବାରଣ୍ଡା ଉପରେ ଠିଆ ହୋଇ

ଆମ ଘର ଭିତରକୁ ଗଳିକରି ଚାହୁଁଥିଲେ, ଆମେ ଘରେ ଥିଲାବେଳେ କିପରିଭାବେ ଆବୃତ ବା ଅନାବୃତ ହୋଇଚୁ ଦେଖିବା ଉଦ୍ଦେଶ୍ୟରେ । ଶାଶୁଙ୍କୁ ଏଇ ଘଟଣା ବଡ଼ ଖରାପ ଲାଗିଲା ।

ଶାଶୁ ମାଲବାରର ଜଣେ ବିଶିଷ୍ଟ ବିତ୍ତଶାଳୀ ଓ ବହୁକୁଟୁମ୍ବୀ ପରିବାରର ଅନ୍ତର୍ଗତ । ପୁଣି ସେ ଥିଲେ ସେଇ ପରିବାରର ବୟସ୍କ-ତମା ମହିଳା । ନଗରୀର ଦୋକାନମାନଙ୍କରୁ କିଣାଯାଉଥିବା ନିମ୍ନ-ମାନର ଖାଦ୍ୟ-ଶସ୍ୟ ଓ ଏକ ଫ୍ଲେଟ କଂକ୍ରିଟ୍ ଘରେ ରହିବା ଫଳରେ ତାଙ୍କ ମନ ବିଦ୍ରୋହ କରି ଉଠିଥିଲା । ବଡ଼ ବଡ଼ ପ୍ରଶସ୍ତ ଘର ଓ ପୁଷ୍ପିତ ଗଛଙ୍କ ଗହଣରେ ଚଳିବା ଥିଲା ତାଙ୍କର ଅଭ୍ୟାସ । ତାଙ୍କର ବୋଲ କରିବାପାଇଁ ମାଲବାରରେ ଗୋଟେ ଚାକର ଖଞ୍ଜା ହୋଇଥିଲେ ପରି ।

ଆଉ, ବମ୍ବେର ହିରନବାସ···ସିଟିଲାଇଟ୍ ସିନେମା ପାଖ ରାସ୍ତା ଖାଲି ଭରି ରହିଥିଲା ମଇଁଷିଙ୍କ ମୂତରେ । ସେଠି ଶାଶୁ ଥିଲେ କେବଳ ଜଣେ ବୟସ୍କା ସ୍ତ୍ରୀ-ଲୋକ, କାଶ୍ମୀରି ରମଣୀ ପରି ଗୌର-ବର୍ଣ୍ଣର ଜଣେ ମାଦ୍ରାଜୀ ମହିଳା ମାତ୍ର; ହାତରେ କାମ ନ ଥିଲେ ବା ଅନ୍ୟ କିଛି ଭଲ ଦୃଶ୍ୟ ନ ଥିଲେ ଓ ସନ୍ଧ୍ୟା ବେଶି ଦୀର୍ଘ ହୋଇଥିଲେ ଯାହାଙ୍କୁ ଶିଶୁ ଓ ଭୃତ୍ୟମାନେ ମଜାରେ ଚାହିଁ ରହୁଥିଲେ ।

# ଚବିଶି

## ଦୁଃଖର ଦିନ···

କେହି ଜଣେ ଝରକା ବାଟ ଦେଇ ଘର ଭିତରକୁ ଚାହିଁଲେ ମୋ ଶାଶୁ ଦଶ ମାସ୍ୟଭାବେ ଉତ୍‌କ୍ଷିପ୍ତ ହୋଇ ଉଠୁଥିଲେ । ଆମ ଫ୍ଲାଟ୍‌ର ଅସୁବିଧାଗୁଡ଼ିକ ଘେନି ଅଭିଯୋଗ କଲେ ସେ । କିପରି ବୟସ୍କା ଚାକରାଣୀ କଥା ମାନୁନି, ପୂଝାରୀ କିପରି ହିସାବରେ ଠକାଉଚି ଏବଂ ଆଖପାଖରେ ଝିଅମାନେ ତାଙ୍କ ସହିତ ନାନା ଖେଳରେ ଯୋଗ ଦେବାଲାଗି କିପରି ମୋତେ ଘର ଭିତରୁ ପଦାକୁ ଡାକି ନେଇଯାଉଛନ୍ତି—ଏହିସବୁ ଥିଲା ତାଙ୍କ ଚିଡ଼ିଚିଡ଼ି ହେବାର ପ୍ରଧାନ କଥା ।

ଆମର ନିକଟତମ ପ୍ରତିବେଶୀ ଥିଲେ ଜଣେ ମରାଠୀ, ଯାହାଙ୍କର ଦ୍ୱିତୀୟ କନ୍ୟା ଥିଲେ ସେ ସମୟର ଜଣେ ଲୋକପ୍ରିୟ ଚଳଚ୍ଚିତ୍ରତାରକା । ତାଙ୍କ ନାମ

ଉପାକରଣ । ତାଙ୍କର ସାନଭଉଣୀ ଦୁଇଜଣ ମୋର ସାଙ୍ଗ ପାଲଟି ଗଲେ । ଗଣେଶ ପୂଜାର ଅବ୍ୟବହିତ ପୂର୍ବରୁ ଦୀର୍ଘ ଚାରିସପ୍ତାହ ଧରି ଆମର ଅଳିନ୍ଦରେ ଆମେ ଘଣ୍ଟା ଘଣ୍ଟା ଧରି ଗୁଜରାଟି ଗରବା, ପଞ୍ଜାବୀ ଭାଙ୍ଗ୍‌ରା ଓ ନୃତ୍ୟନାଟକ ପ୍ରଭୃତି ନାନାବିଧ ମନୋରଞ୍ଜକ କଳାସବୁ ଅଭ୍ୟାସ କରିଥିଲୁ । ସବା ସାନ ଥିଲା ପୁଷ୍ପା । ତାର ମାଦକତାମୟ କଣ୍ଠସ୍ୱର ଥିଲା ଅପୂର୍ବ । ସେ ମୋତେ ଗୋଟିଏ ମରାଠୀ ସିନେମା ଗୀତ ଶିଖାଇଥିଲା—ଯଥା : 'ନାଚଥୋ ବାରୁଣି ଆନନ୍ଦ—ବୋଲବି ପଦା ଗୋବିନ୍ଦ ।' ସେଇମାନଙ୍କ ଗହଣରେ ମୁଁ ଜୀବନର ତିକ୍ତତା ଭୁଲି ଯାଉଥିଲି ଏବଂ ଅଳ୍ପ କେଇଟି ଘଣ୍ଟାପାଇଁ ମୁଁ ରହିପାରୁଥିଲି ଅନୁଦ୍‌ବିଗ୍ନ, ଯେପରି ମୁଁ ଥିଲି ବମ୍ବେକୁ ଆସିବା ପୂର୍ବରୁ ।

ଶାଶୁ କିନ୍ତୁ ସେଥିରେ କ୍ଷୁବ୍ଧ ହେଲେ । ଶିଶୁ ଓ ଗୃହ କର୍ତ୍ତବ୍ୟକୁ ଅବହେଳା କରି ମୁଁ ବହୁତ ସମୟ ବାହାରେ ରହିଯାଉଛି ବୋଲି ସେ ଅନୁଭବ କଲେ । ଶାଶୁ ଯେତେବେଳେ କୌଣସି ପ୍ରକାରର ନୈରାଶ୍ୟଜନକ କଥା କହୁଥିଲେ, ମୋ ସ୍ୱାମୀ ତତ୍‌କ୍ଷଣାତ୍ ରାଗି ଯାଉଥିଲେ ଏବଂ ତାଙ୍କର ସମସ୍ତ ରାଗ ମୋ ପ୍ରତି ଓ ପୁଅ ପ୍ରତି ଉଦ୍ଦିଷ୍ଟ ଥିଲା । ଚାକରମାନଙ୍କର ବି ଶାଶୁଙ୍କ ସହିତ ପଟୁନି ନାହିଁ । 'ଆମେ ମାଲବାର ଫେରି ଯାଉଛୁ'—ବୋଲି ପ୍ରତିଦିନ ସେମାନେ କହିବାକୁ ଲାଗିଲେ । ସେମାନେ ଶାଶୁଙ୍କ ଅତ୍ୟାଚାର ଆଉ ସହିପାରିବେନି ବୋଲି ସ୍ପଷ୍ଟ କହିଦେଲେ । ଅନ୍ୟପକ୍ଷରେ ସ୍ୱାମୀ ମଧ୍ୟ ତାଙ୍କର ଓ୍ୱାଇ· ଏମ୍· ସି· ଏ· ରେ ଥିବା ବନ୍ଧୁଙ୍କ ସଙ୍ଗ ସନ୍ଧ୍ୟାରେ ଭେଟି ପାରୁ ନ ଥିଲେ । ତା'ଛଡ଼ା ମୋ ବିଷୟ ଯେବେ ସେ ନିର୍ଦ୍ଦିଷ୍ଟ ଭାବେ ସଙ୍କ୍ଷିପ୍ତ ଓ ଅଧୈର୍ଯ୍ୟ ହୋଇ ସାରିଥିଲେ ।

ଏଇ ସମସ୍ତ କ୍ରୂରତା ଓ ଅଶାନ୍ତିର ଜ୍ୱାଳା ମୁଁ ଆଉ କେତେକାଳ ସହି ପାରିଥା'ନ୍ତି । ପାରିଲି ନାହିଁ । ଦିନେ ମୁଁ ପୂଝାରୀକୁ ଔଷଧ ଦୋକାନରୁ ମୋ ପାଇଁ ଡଜନେ ବାର୍‌ବିଚୁରେଟ୍ ବଟିକା ଆଣିବାକୁ ପଠାଇଲି । କିନ୍ତୁ କୌଣସି ଔଷଧ ବିକ୍ରେତା ବିନା ଡାକ୍ତରୀ-ପରାମର୍ଶ ଫର୍ଦ୍ଦରେ ତାହା ଦେଲେ ନାହିଁ । ଖାଲି ହାତରେ ଫେରିଆସି ପୂଝାରୀ ବି କାନ୍ଦି କାନ୍ଦି କହିଲା, "ତୁମେ ଯଦି ମରିବାକୁ ଚାହିଁବ ମୁଁ ବି ତା'ହେଲେ ସେଇ ବଟିକାରୁ କିଛି ଖାଇଦେବି ।" ଚାକରାଣୀ ବି ପହଞ୍ଚିଗଲା । ସେ ବି କାଲେ ଯାଇ ଚଳନ୍ତା ବସ୍ ସାମ୍ନାରେ ପଡ଼ିବାର ଯୋଜନା କରିଥିଲା । ସେ କହିଲା—"ମୁଁ ଏମିତି ହଇରାଣରେ ବଞ୍ଚିପାରିବି ନାହିଁ ଆଉ ।" ପ୍ରକୃତରେ ଆମ ତିନିଜଣଙ୍କର ଅବସ୍ଥା ଥିଲା ଶୋଚନୀୟ । ସନ୍ଧ୍ୟାରେ ଅଳିନ୍ଦରେ ଚାଲିଥିବା ଗୀତ-ନାଚାଦିର ଅଭ୍ୟାସ ସ୍ଥଳକୁ ମୋର ଯିବା ସ୍ୱାମୀଙ୍କ ନିର୍ଦ୍ଦେଶରେ ବନ୍ଦ୍ ହୋଇଗଲା । ସେ କହିଲେ—"ତୁମର ମନେ ରଖିବା ଉଚିତ ଯେ ତୁମେ

ଜଣେ ପତ୍ନୀ ଓ ଜଣକର ମା ।" ମୋର ବାନ୍ଧବୀମାନେ ସମ୍ବେଦନଶୀଳ ଦୃଷ୍ଟିରେ ଝରକାବାଟେ ମୋତେ ଲକ୍ଷ୍ୟ କରି କରି ଅପସରି ଯାଇଥିଲେ ।

ତା'ପରେ ଗୃହ କର୍ତ୍ତବ୍ୟ ସମ୍ପାଦନରେ ମୁଁ ଧ୍ୟାନ ଦେଲି । ଝରକାରେ ବସି ବୋତାମ ସିଲେଇ ଭଳି ଏମ୍ବ୍ରଏଡ଼େରୀ କାମ କରୁ ଓ ସନ୍ଧ୍ୟାରେ ସ୍ୱାମୀଙ୍କ ପାଇଁ ଟୀ' ଓ ସ୍ନାକ୍ସ୍ ପ୍ରଭୃତି କେତେକ ସାଧାରଣ ଶୁଷ୍କ ଗୃହ-କାର୍ଯ୍ୟ କରୁଥିଲି-ବେଳେ ମୋର ଆତ୍ମା ବିଦ୍ରୋହ କରି ଉଠୁଥିଲା ଓ କହୁଥିଲା ଚିତ୍କାର କରି—"ଯା, ଏ ଜାଲରୁ ମୁକ୍ତ ହୋଇ ଯା, ପଳେଇ ଯା··· ।"

ସକାଳେ ସ୍ୱାମୀ ଅଫିସ୍ ଗଲାବେଳେ ମୁଁ ତାଙ୍କ ପଛେ ପଛେ ଦୌଡ଼ି ଯାଉଥିଲି ବାହାରକୁ । ରାସ୍ତାର ଯେଉଁ ପାଖରେ ଗାଈମାନେ ବୁଲୁଥା'ନ୍ତି ଓ କୁଆମାନେ ଯେଉଁଠି ଖୋଲା ମଇଳା ବାକ୍ସରୁ ମାଛକଣ୍ଟା ଆଣି ଖାଉଥା'ନ୍ତି, ସେଇଠି ମୁଁ ଠିଆ ହେଉଥିଲି । ହାତରେ ବ୍ରିଫ୍‌କେସ୍ ଧରି ପ୍ରଥମ ଟ୍ରେନ୍ ଧରି ଚର୍ଚ୍ଚଗେଟ୍‌କୁ ଯିବାଲାଗି ସ୍ୱାମୀ ଷ୍ଟେସନ୍ ଆଡ଼କୁ ଚାଲି ଚାଲିଯିବା ଲକ୍ଷ୍ୟ କରୁଥିଲି । ସେଠାରୁ ଫେରିବା ପରେ ଯାଇଁ ଗାଧୋଉଥିଲି ଓ ଲୁଗାପଟା ବଦଳାଉଥିଲି ।

ଅନେକ ସମୟରେ ଆମର ପଛପଟର ଘରୁ ଅଥବା ସମୁଦ୍ରକୂଳରୁ ପଚା ମାଛର ଗନ୍ଧ ଭାସି ଆସୁଥିଲା । ଆମର ପଛପଟ ବାରଣ୍ଡା ପର୍ଯ୍ୟନ୍ତ, ଯେଉଁ ବାରଣ୍ଡା ଉପରେ ଠିଆହୋଇ ମୁଁ ମ୍ୟୁନିସିପାଲ୍ ସ୍କୁଲ ପିଲାଙ୍କର ପାରେଡ୍ ଦେଖୁଥିଲି, ଦେଶାତ୍ମବୋଧକ ଗୀତ ଶୁଣୁଥିଲି ଯେଉଁଠାରୁ ଅନେକ କୁଡ଼ିଆ ଘର ମଧ୍ୟ ମୋ ଦୃଷ୍ଟିରେ ପଡ଼ୁଥିଲା । ସେଗୁଡ଼ିକ ଥିଲା ଗରିବ ମଦବେପାରି ମାନଙ୍କର କୁଡ଼ିଆ । ସେମାନେ ରାତିରେ ଗରିବ ପଦାର୍ଥ ଆଣି ପୋତି ପକାଉଥିଲେ ଓ ଦିନବେଳେ ଖଟ ଉପରେ ଶୋଉଥିଲେ । ଖରାରେ ତାଙ୍କର ଚମଡ଼ା କଳା ପଡ଼ିଯାଉଥିଲା ।

ଅପରିଚିତଙ୍କୁ ଦେଖିବା ମାତ୍ରେ ସେମାନେ ସନ୍ଦେହ କରୁଥିଲେ । ଥରେ କି ଦି-ଥର ମୁଁ ଯେବେ ତାଙ୍କର ଉପନିବେଶ ବାଟଦେଇ ଚାଲି ଯାଇଥିଲି ସେମାନେ ମୋତେ ସନ୍ଦିଗ୍ଧ ଆଖିରେ ଲକ୍ଷ୍ୟ କରିଥିଲେ ।

ତା' ଭିତରେ ଗୋଟିଏ କୁଡ଼ିଆ ଅପେକ୍ଷାକୃତ ବଡ଼ ଥିଲା ଓ ତହିଁରେ ରହୁଥିବା ପରିବାରଟିର ସଭ୍ୟମାନେ କିଛି ପରିମାଣରେ ଭଲ ଲୁଗାପଟା

ପିନ୍ଧିଥିଲେ । ପରିବାରର ପୁରୁଷଟି ଥିଲା ଅନୁଚ୍ଚ, କିନ୍ତୁ ଗୋରା ଓ ସୁନ୍ଦର । ତାର ଧଳା ଓ ଖାକି ପୋଷାକକୁ ପ୍ରତିଦିନ ତାର ସ୍ତ୍ରୀ ଆଗ୍ରହର ସହିତ ପରିଷ୍କାର କରୁଥିଲା । ଗଛମୂଳେ ପଡ଼ିଥିବା ଖଟଉପରେ ପୁରୁଷଟି ଶୋଇପଡ଼ିବାକୁ ଆରମ୍ଭ କଲାମାତ୍ରେ ସ୍ତ୍ରୀଟି ତା' ପାଇଁ ଆଣି ଦେଉଥିଲା ଏକଗ୍ଲାସ୍ ଦୁଧ । ସେ ତାକୁ ଭଲକରି ଖୁଆଉଥିଲା । ଯଦିଓ ମୁଁ ତା'ର କଥାବାର୍ତ୍ତା ଶୁଣିପାରୁ-ନ ଥିଲି, ତଥାପି ସ୍ତ୍ରୀର କଥାବାର୍ତ୍ତା ଯେ ପ୍ରେମପୂର୍ଣ୍ଣ ଥିଲା, ତାହା ମୁଁ ଅନୁମାନ କରିପାରୁଥିଲି । ପୁରୁଷଟି ନୀରବ ଓ ପ୍ରାୟ ଅନ୍ୟମନସ୍କ ରହୁଥିଲା, ସ୍ତ୍ରୀଙ୍କଠାରୁ ଯଥାଯଥ ପ୍ରେମଲାଭ କରୁଥିବା ସବୁପୁରୁଷଙ୍କ ସଦୃଶ । ସ୍ତ୍ରୀ ଲୋକଟି ସ୍ୱାମୀଆଡ଼କୁ ପିଠିକରି କୁଡ଼ିଆ ଭିତରକୁ ଚାଲିଗଲା ବେଳେ ପୁରୁଷଟି ତାକୁ ଉଦାସୀନ ଭାବରେ ଚାହିଁ ରହିବା ଘଟଣା ମୁଁ ଲକ୍ଷ୍ୟ କରି ପାରୁଥିଲି ।

ସାରା କଲୋନିରେ ତା'ପ୍ରତି ଥିଲା ସମସ୍ତଙ୍କର ସମ୍ମାନ । ଏପରିକି ହାତରେ ଲମ୍ବା ଲୁହାଛଡ଼ ଧରି କେଉଁଠି କିଏ କଣ ପୋତିଛି ଅନୁସନ୍ଧାନ କରିବାକୁ ଟ୍ରକ୍-ଯୋଗେ ଆସୁଥିବା ପୋଲିସ୍ କନେଷ୍ଟବଲ୍‌ମାନେ ମଧ୍ୟ ତାକୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ସେମାନେ ଖୋଜାଖୋଜି କଲାବେଳେ ସେ ହସି ଦେଉଥିଲା ବଡ଼ ପାଟିରେ । ଦିନେ ଦିନେ ଯେବେ ତାକୁ ବେଶୀ କିଛି ମାଡ଼ୁ ନଥିଲା ସେ ତାର ସାନ ସାନ ପୁଅଙ୍କ ସହିତ ଖେଳୁଥିଲା, ସେ ଶୂନ୍ୟକୁ ପକେଇ ପୁଣି ଧରିଲା ବେଳେ ପିଲାମାନେ କର୍‌କର୍ ହୋଇ ହସୁଥିଲେ । ସ୍ତ୍ରୀ ପିଲାମାନଙ୍କ ଗୋଲଗାଲ ଶରୀରକୁ ସାବୁନ ଦେଇ ଗାଧେଇ ଦେଲାବେଳେ ପୁରୁଷଟି ଦେଖୁଥିଲା ଅତି ଆନନ୍ଦରେ । ନିଜର ସନ୍ତାନମାନଙ୍କ ପାଇଁ ଗର୍ବ କରିବା ତା' ପକ୍ଷରେ ଥିଲା ସ୍ୱାଭାବିକ ।

ଦିନକର ଘଟଣା । ମୁଁ ବାରଣ୍ଡାର ରେଲିଂକୁ ଆଉଜି ଦେଖୁଥିଲି, ପୁରୁଷଟି ଶୋଇଥିଲା । ସହସା ଆଖି ଖୋଲି ସେ ମୋତେ ଚାହିଁଲା । ତାର ସେଇ ଲାଲ୍ ଲାଲ୍ ଆଖିରେ ନିଦ୍ରା ଓ ଶୃଙ୍ଗାର ପିପାସା ଭର୍ତ୍ତିହୋଇ ରହିଥିଲା । ମୋର ଅବୟବଗୁଡ଼ିକୁ ସେଇ ଆଖି ଦୁଇଟି ଲକ୍ଷ୍ୟ କରିବା ମାତ୍ରେ ମୋତେ ଅଡ଼ୁଆ ଅଡ଼ୁଆ ଲାଗିଲା ଓ ମୁଁ କାଳବିଳମ୍ବ ନ କରି ଘରଭିତରକୁ ଚାଲିଗଲି । ଦିନେ ସକାଳେ ଗଣ୍ଡଗୋଳର ଶବ୍ଦ ଶୁଣି ଉଠିପଡ଼ିଲୁ । ପୋଲିସ୍ ତାକୁ ଟ୍ରକ୍‌ରେ ବସେଇ ନେଇ ଯାଉଥିବା ଦେଖାଗଲା । ଅବଶେଷରେ ସେମାନେ ବାଡ଼ରେ ଗୁଣ୍ଡି ଓ କାଠ ଘୁମରେ ଲୁଚେଇ ରଖିଥିବା ମଦ ପୋଲିସ୍‌ମାନେ ସନ୍ଧାନ କରିପାରି-

ଥିଲେ । ତାର ସ୍ତ୍ରୀ ଟ୍ରକ୍ ପଛେ ପଛେ ଦୌଡ଼ୁଥିଲା, ତାର ଖଇରଆ ପଣତ ଲୋଟି ଯାଉଥିଲା ତଳେ । କିନ୍ତୁ ପୁରୁଷଟିର ଭ୍ରୂକ୍ଷେପ ନ ଥିଲା ତା'ଆଡ଼େ । ଟ୍ରକ୍‌ରେ ଗୋଟିଏ କାଠ ଘୁମ୍ନ ଉପରେ ରଜା ପରି ବସି ରହିଥିଲା ସେ, ତା'ର ମୁହଁ ଥିଲା ଆବେଗଶୂନ୍ୟ ଓ ଶୀତଳ ।

ଶାଶୁଙ୍କର ଅସନ୍ତୋଷ ଆଉରି ବଢ଼ିବା ପରେ ଓ ଗ୍ରାହକମାନେ ବାରମ୍ବାର ଅଭିଯୋଗ କରିବା ପରେ ମୋ ସ୍ୱାମୀ ଆମ ସମସ୍ତଙ୍କୁ ମାଳବାର ପଠାଇ ଦେବା ସ୍ଥିର କଲେ । ଏଇ ସିଦ୍ଧାନ୍ତ ସମସ୍ତଙ୍କ ପକ୍ଷରେ ଥିଲା ସ୍ୱାଗତଯୋଗ୍ୟ । ତାଙ୍କର ଜଣେ କକା ଆସିଲେ ଆମକୁ ବମ୍ବେରୁ ନେଇଯିବା ପାଇଁ, ଖାଲି ବମ୍ବେ ଆସିବା ପାଇଁ ସେ ଦୁଇଟି ନୂଆ ଦାମିକା ସୁଟ୍ ତିଆରି କରିଥିଲେ । ଝିଅମାନଙ୍କ ପ୍ରତି ତାଙ୍କର ପ୍ରଚଣ୍ଡ ଦୁର୍ବଳତା ଥିଲା । ସେ ପହଞ୍ଚିବା ମାତ୍ରେ ତାଙ୍କ ଗାଁରୁ କୌଣସି ଏଁଟି ହସ୍‌ପିଟାଲ୍‌ରେ ନର୍ସ ଗ୍ରାହକରି କରିବା ପାଇଁ ଆସିଥିବା ମୀନାକ୍ଷି ନାମ୍ନୀ ଝିଅର ଠିକଣା ମୋତେ ପଚାରିଲେ ।

ମୁଁ ତ ସେମିତି ନାମ ଜାଣି ନ ଥିଲି । ଏଥିରୁ ସେ ବଡ଼ ନିରାଶ ହୋଇଗଲେ । ତାଙ୍କର ତିନିଦିନ ରହିବାର ଥିଲା । ଏକାଗ୍ରତାର ସହିତ ସେ ପ୍ରତିଦିନ ସକାଳୁ ବାହାରି ମୀନାକ୍ଷୀର ସନ୍ଧାନ ନେବା ଲାଗି ପ୍ରତ୍ୟେକ ହସ୍‌ପିଟାଲ୍ ବୁଲି ଖୋଜୁଥିଲେ । ତା'ପାଇଁ କରିଥିବା ଯୋଜନା ଓ ସୁଟ୍ ବିଫଳ ହେବା ସେ ପସନ୍ଦ କରୁ ନ ଥିଲେ ।

ପରିଶେଷରେ ବମ୍ବେ ଛାଡ଼ିଲୁ ଟ୍ରେନ୍ ଯୋଗେ । ଆମ ସହିତ ଅନ୍ୟ ଏକ ବର୍ଥ୍‌ରେ ଜଣେ ବିଖ୍ୟାତ କଂଗ୍ରେସୀ ଭଦ୍ରମହିଳା ଯାଉଥିଲେ । ଆମ କକାଙ୍କୁ ସାକ୍ଷାତ କରି ସେ ବେଶ୍ ଆନନ୍ଦ ଅନୁଭବ କଲେ । ଉଭୟେ ବସି ଦୀର୍ଘ ସମୟ ଧରି ଆଳାପ କଲେ, ପ୍ରାୟ ଭୋର୍ ତିନିଟା ପର୍ଯ୍ୟନ୍ତ । ଶାଶୁ କ୍ଳାନ୍ତ ବଶତଃ ଗାଢ଼ନିଦ୍ରାରେ ଶୋଇ ପଡ଼ିଥିଲେ । ମୁଁ ପୁଅ ନିକଟରେ ଶୋଇ ଶୋଇ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲି । ତାଙ୍କର ଆଳାପ ଆତ୍ମପ୍ରବଞ୍ଚନାରେ ପୂର୍ଣ୍ଣଥିଲା ଓ ପ୍ରହସନ ପରି ଲାଗୁଥିଲା । ଭଦ୍ରମହିଳା ଜଣକ ଯେତେବେଳେ କହିଲେ ମୁଁ ଜୀବନରେ ସବୁବେଳେ କେତେକ ଉଚ୍ଚାଙ୍ଗ ନୀତି ଓ ଆଦର୍ଶ ପୋଷଣ କରି ଆସିଛି ।" ତାହାର ଉତ୍ତର ସ୍ୱରୂପ କକା କହିଲେ—"ଅବଶ୍ୟ, ଅବଶ୍ୟ, ନାରୀମାନେ ଆଉ କଣ୍ ପୋଷଣ କରନ୍ତେ ଯେ…"

# ପଚିଶି

## ରକ୍ତାକ୍ତ ଜ୍ୟୋଛନା...

ମୁଁ ପୁନର୍ବାର ବମ୍ବେ ଯିବା ପୂର୍ବରୁ ଆମର ହରିନିବାସର ଫ୍ଲାଟ୍‌ଟିକୁ ସ୍ୱାମୀ ତାଙ୍କ ପ୍ରିୟ ବନ୍ଧୁଙ୍କର ପରାମର୍ଶ କ୍ରମେ ବିକିଦେଇ ଖର୍-ଠାରେ ଘରଟିଏ ଭଡ଼ା ନେଇ ରହୁଥାଉଥିଲେ । ତାହା ଫଳରେ ବନ୍ଧୁଙ୍କ ରହିବା ସ୍ଥାନର ସେ ନିକଟବର୍ତ୍ତୀ ହୋଇ ପାରିଲେ । ଏପରି ଘର ପରିବର୍ତ୍ତନ ସମ୍ଭବତଃ ଆମ ବିବାହର ପ୍ରକୃତରେ କିଛିଟା ଅନୁକୂଳ ପରିବର୍ତ୍ତନ ଆଣିପାରିବ ବୋଲି ସେ ମନେ କରିଥିଲେ । ମୋ କାମରେ ଓ ଶିଶୁପୁତ୍ରର ନାନା କାମରେ ସହାୟତା କରିବା ପାଇଁ ମୋ ସାଙ୍ଗରେ ଜଣେ ପୂଝାରି ଓ ଜଣେ ଆୟା ଯାଇଥିଲେ । ଯଦିଓ ସେମାନଙ୍କୁ ସାଙ୍ଗରେ ରଖିବା ଭଳି ଆର୍ଥିକ ସମ୍ବଳ ଆମର ଥିଲା କି ନା ସନ୍ଦେହ ।

ପ୍ରତିଦିନ ସ୍ୱାମୀ ନ'ଟାରେ ଅଫିସ୍ ଯାଇ ରାତି ଦଶଟାରେ ଫେରୁଥିଲେ । ସେତେବେଳକୁ ପୁଅ ତା' କୋଠରିର କ୍ରିବ-ଖଟଟି ଉପରେ ଶୋଇ ସାରିଥାଏ । ତାର ନିକଟରେ ତଳେ ସପ ପକାଇ ଶୋଉଥିଲା ଆୟା । ବାପ ପକ୍ଷରେ ପୁଅ ସହିତ ମିଶିବାକୁ ସୁବିଧା ନ ଥିଲା । ଶିଶୁଟି ଯେ ଜଣେ ଭିନ୍ନ ବ୍ୟକ୍ତି ସେ କଥା ବୁଝିବାକୁ ଅବସର ନ ଥିଲା ସ୍ୱାମୀଙ୍କର ।

ଲୋକମାନଙ୍କ ବିଷୟରେ ଶିଶୁମାନେ ବେଶ୍ ଅନୁମାନ କରିପାରନ୍ତି । କାହାକୁ ବର୍ଜନ କରିବାକୁ ହେବ ସେ ଧାରଣା ବି ତାଙ୍କ ଭିତରେ ପ୍ରାପ୍ତବୟସ୍କଙ୍କ-ଠାରୁ ଅଧିକ ଭାବେ ସୃଷ୍ଟି ହୋଇଥାଏ । ଏଣୁ କ୍ରମେ କ୍ରମେ ପୁଅ ବାପକୁ ବର୍ଜନ କରିବାକୁ ଆରମ୍ଭ କଲା । ରବିବାର ଦିନରେ ସ୍ୱାମୀଙ୍କର ଉପସ୍ଥିତି ମଧ୍ୟ ତାହା ପକ୍ଷରେ ଥିଲା ଅଶୁଭ ଜନକ । ଏଣୁ ସେ ତାଙ୍କୁ ଘୃଣାହିଁ କରୁଥିଲା ।

ଅଧିକାଂଶ ସମୟରେ ସେ ରାତି ଅଧରେ ଶୋଇବାରୁ ଉଠିଆସି ଆମ ଶୋଇବା ଘର ଦରଜା ଠକ୍ ଠକ୍ କରି ଉଚ୍ଚ ସ୍ୱରରେ ମୋତେ ଡାକି କାନ୍ଦୁଥିଲା । ଆୟା ବୁଢ଼ୀ ନିଦ ବାଉଳାରେ ଚଡ଼ଚଡ଼ା ସ୍ୱରରେ ବାପଲୋ ଧନଲୋ କହୁଥିଲା । ଅର୍ଦ୍ଧଯାମର ଏଇ ଘଟଣାଗୁଡ଼ିକୁ ସ୍ୱାମୀ ଘୃଣା କରୁଥିଲେ ଓ ଆମ ତିନିଜଣଙ୍କ ଉପରେ ଗାଳି ବୃଷ୍ଟି କରୁଥିଲେ । ପୁଅକୁ

ସେତେବେଳେ ଦୁଇବର୍ଷ । ଦିନେ ରାତିରେ ଅତ୍ୟଧିକ ରାଗବଶତଃ ସ୍ୱାମୀ ତାଙ୍କୁ ଗୋଟିଏ ଘରେ ବନ୍ଦ୍ କରି ତାଲା ପକେଇ ଦେଲେ । ପୁଅ ସେଇ ଘରେ ଅନ୍ଧାର ଚଟାଣରେ କାନ୍ଦି କାନ୍ଦି ଗଡ଼ୁଥିଲା ।

ମୋର ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ସ୍ୱାମୀଙ୍କ ସହିତ ମୋର ଯାହା କିଛି ଆବେଗଗତ ସମ୍ପର୍କ ଥିଲା ସବୁ ଛିନ୍ନ ହୋଇଗଲା । ସେ ସେତେବେଳେ ଉପରିସ୍ଥ ଅଫିସରଙ୍କ ନିମିତ୍ତ 'Rural Credit Survey Committee Report'— ପ୍ରସ୍ତୁତ କରୁଥିଲେ ଓ ପରିବାର କଥା ବୁଝିବାକୁ ତାଙ୍କର ଆଦୌ ସମୟ ନ ଥିଲା । ତାଙ୍କର ସ୍ନାୟୁ ସକଳ ଉଗ୍ର ଅବସ୍ଥାରେ ରହିଥିଲା ଓ ଅନିଚ୍ଛାହେଲେ ବି ମୁଁ ତାଙ୍କ ସହିତ ଯୁକ୍ତି କରିବାକୁ ଆଗଭର ହୋଇ ନ ଥିଲି । ବିନା ଆପତ୍ତିରେ ମୁଁ ପ୍ରତ୍ୟେକ ରଜନୀରେ ତାଙ୍କୁ ଦେହ ଦାନ କରୁଥିଲି; ଆଶା ଥିଲା ଶୃଙ୍ଗାର ଫଳରେ ତାଙ୍କର ପରିଶ୍ରାନ୍ତ ଉଗ୍ର ସ୍ନାୟୁସବୁ ଶିଥିଳ ଓ ଶୀତଳ ହୋଇଯିବ ଓ ସେ ଶାନ୍ତ ହୋଇଯିବେ । ରାତିରେ, ସମସ୍ତେ ଶୋଇ ପଡ଼ିଲା ପରେ, ମୁଁ ମାଇଁ ବୈଠକ ଖାନାରେ ବସି କାନ୍ଦୁଥିଲି ଓ କେବେ କିପରି ଭାଗ୍ୟ ବଦଳିବ ଓ ଜୀବନଟିକିଏ ସୁଖକର ହୋଇପାରିବ, ସେଇ ବିଶ୍ୱାସ ମନ ଭିତରେ ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲି ।

ମୋର ଯେ ଅନେକ ବାନ୍ଧବୀ ଥିଲେ ତା'ସତ । ବିଶେଷ କରି ପ୍ରତିବେଶିନୀ ମହିଳାମାନେ ପ୍ରତିଦିନ ସକାଳେ ଆମ ଘରକୁ ଆସି ଯୋଫା ମଣ୍ଡନ କରୁଥିଲେ ଓ ମୋର ରନ୍ଧା ଜିନିଷ ଚାଖି ଚାଖି ଇଆଡ଼ୁ ସିଆଡ଼ୁ ଗପୁଥିଲେ । ସଫଳ ବୈବାହିକ ଜୀବନର ଉଷ୍ମତାରେ ସେମାନେ ସମସ୍ତେ ଥିଲେ ପ୍ରଫୁଲ୍ଲିତ । ମୁଁ ଯେ ଏକ ଭିନ୍ନ ଧରଣର ଜୀବନ ପ୍ରକ୍ରିୟା ଭିତରେ ସଢ଼ୁଥିଲି, ମୁଁ ଯେ ଏକ ଶାଣିତ ଅବସାଦବୋଧ ଦ୍ୱାରା ପ୍ରତିଦିନ ଦଗ୍ଧ ହେଉଥିଲି, ତାହା ସେମାନେ ଜାଣିପାରି ନ ଥିଲେ ।

ମୋର ଦାମ୍ପତ୍ୟର ବିଫଳତା ବିଷୟରେ ମୁଁ ସର୍ବନ ସ୍ୱୀକାର କରୁ ନ ଥିଲି । ମୁଁ ବି ଛାଡ଼ପତ୍ର ଦେଇ ଫେରିପାରୁ ନ ଥିଲି ନଇଁପଡ଼ିଲି, କାରଣ ଆମ ଦୁଇ ପରିବାର ଭିତରେ ଦୀର୍ଘ ତିନିପୁରୁଷ ଧରି ସୁସମ୍ପର୍କ ରହିଆସିଥିଲା । ମୁଁ ଚାହୁଁ ନ ଥିଲି ମୋ କାରଣରୁ ତାହା ଛିନ୍ନ ହେଉ । ମୋର ସାନ-ବୁଢ଼ାପ୍‌ପା ନାରାୟଣ ମେନନ୍ ତାଙ୍କର ପରିବାରରେ ବିବାହ କରିଥିଲେ । ତା' ବ୍ୟତୀତ ଏ ପୃଥିବୀରେ ମୋର ସର୍ବଶ୍ରେଷ୍ଠ ବାନ୍ଧବୀ ମାଳତି ଥିଲା ସେଇ ପରିବାରର ଅନ୍ତର୍ଗତ ।

ମୋ ବାପା-ମା ଓ ବନ୍ଧୁ-ବାନ୍ଧବମାନଙ୍କ ଅବଚେତନରେ ଲୋକ-ମତ ପ୍ରତି ସବୁବେଳେ ଭୟ ସଞ୍ଚିତ ହୋଇ ରହିଥିଲା । ବ୍ୟକ୍ତି ବିଶେଷର କ୍ରିୟା-କଳାପ

ଘେନା ସମାଜର ରଚିକି ସ୍ୱାକୁ ସେମାନେ ଅଧିକ ଗୁରୁତ୍ୱର ସହିତ ବିଗ୍ଭର କରୁଥିଲେ । ଭଗ୍ନ ଦାମ୍ପତ୍ୟ ଥିଲା ତାଙ୍କ ପକ୍ଷରେ କୁଷ୍ଠଆକ୍ରମଣ ସଦୃଶ କଦର୍ଯ୍ୟ ଓ ଭୟାନକ । ବାସ୍ତବିକ ମୁଁ ଯଦି ସେତେବେଳେ ମୋର ବିବେକର ନିର୍ଦ୍ଦେଶରେ ସ୍ୱାମୀଙ୍କୁ ପରିତ୍ୟାଗ କରିଥାନ୍ତି, ତେବେ ପୁଣି ଥରେ ବିବାହ କରିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିଥା'ନ୍ତା । କେଣେ ବି କେହି ସ୍ୱ-ଇଚ୍ଛାରେ ମୋତେ ଗ୍ରହଣ କରିବାକୁ ଆସି ନଥାନ୍ତେ । କାରଣ ମୁଁ ସୁନ୍ଦରୀ ତ ନ ଥିଲି । ତା'ବ୍ୟତୀତ, ମୋର ଥିଲା ଦୁଇବର୍ଷର ପିଲାଟିଏ । ନୂତନ ସ୍ୱାମୀଙ୍କ ପକ୍ଷରେ ସେ ନିଶ୍ଚୟ ଏକ ପ୍ରତିବନ୍ଧକ ରୂପେ ଦେଖାଦେଇଥାନ୍ତା ।

ଜୀବିକା ଅର୍ଜନ ପାଇଁ ଗ୍ଭକିରୀ କରିବା ଲାଗି ଯଥେଷ୍ଟ ଶିକ୍ଷାଗତ ଯୋଗ୍ୟତା ମୋର ନ ଥିଲା । ଗଣିକାବୃତ୍ତି ଆଚରଣ କରିବା ମଧ୍ୟ ଥିଲା ଅସମ୍ଭବ । କାରଣ ମୁଁ ଥିଲି ଶିଥିଳ । ପୁଣି, ସ୍ୱାମୀଙ୍କ ପ୍ରତି ମୋର ଭଲପାଇବା ମୋର ଦେହ ଓ ଆବେଗକୁ ଅବରୁଦ୍ଧ କରି ଦେଇଥିଲା; ଠିକ୍ ଏକ ଗର୍ଭାବସ୍ଥା ଭଳି, ଯେଉଁ ଅବସ୍ଥାରେ ଅନ୍ୟ କାହାର ସଂସର୍ଗରେ ପୁନଶ୍ଚ ଗର୍ଭୋଦୟ ହେବା ଅସମ୍ଭବ ହୋଇ-ଥାଏ । ବାସ୍ତବିକ ସବୁ ଦିଗକୁ ଓ ସବୁ କଥାକୁ ମୁଁ ଥିଲି ଅନୁପଯୁକ୍ତ । ଦୀର୍ଘ ସମୟ ଧରି ମୁଁ କେବଳ ଅନୁତାପ କରୁଥିଲି ଓ କାନ୍ଦୁଥିଲି; ସେତେବେଳେ ଅନ୍ୟ ଗୃହରେ ଟିକେ ଗ୍ରେଟ ଦଖରରେ ଆରାମରେ ଶୋଇ ରହୁଥିଲେ ମୋର ସ୍ୱାମୀ, ମୋର ପୁଅ, ବୁଢ଼ୀ-ଆୟା, ପୂଝାରୀ ଓ ତରୁଣୀ ଗ୍ଭକରାଣୀ ।

ଏକଦା ମୋର ସ୍ୱାମୀ ନ ଥିଲେ, ଅଫିସ କାମରେ ଯାଇଥିଲେ ଓଡ଼ିଶା । ସେଇ ସମୟରେ ମୋର ପୁଅ ବାଡ଼ରୁ ତୋଳି କଞ୍ଚା ଜଡ଼ା ଫଳ ଖାଇଦେଲା ଓ ସାଙ୍ଘାତିକ ଭାବରେ ପୀଡ଼ିତ ହୋଇପଡ଼ିଲା । କ୍ରମାଗତ ବାନ୍ତି ଫଳରେ ସେ ପୂରାପୂରି ନୀଳ ପଡ଼ିଗଲା ଓ ତାର ଚମ ଦିଶିଲା ଶୁଖିଲା ଚମଡ଼ା ପରି । ବୁଢ଼ା ଚନ୍ଦ୍ର କଣ୍ଢେଇଟିଏ ପରି ସେ ଦେଖାଗଲା । ଆଖି ତଳେ କଳାଗାର ପଡ଼ିଗଲା ଓ ଅଙ୍ଗ ପ୍ରତ୍ୟଙ୍ଗ ବି ସେ ହଲାଇ ପାରିଲା ନାହିଁ । ପକ୍ଷୀକଣ୍ଠ ପରି ଚେଁ-ଚେଁ ଶୁଣାଗଲା ତାର କାନ୍ଦଣା । ଯଦିଓ ମୁଁ ତାକୁ କୋଳରେ ଧରି ତାର ଟାଣ ପିଠିକୁ ଆଉଁସୁଥିଲି, ତଥାପି ସେ ମୋତେ ହିଁ ତାକ ଗ୍ଭଳିଥିଲା ନିରବଚ୍ଛିନ୍ନ ଭାବରେ ଓ ମେଞ୍ଚା ମେଞ୍ଚା ସବୁଜ ରଙ୍ଗର ବାନ୍ତି କରୁଥିଲା ସେ ।

ଆମର ବୟୋବୃଦ୍ଧ ଡାକ୍ତର ପ୍ରାୟ ଦର୍ଶନୀୟ ଭାବେ ଉତ୍‌କ୍ଷିପ୍ତ ହୋଇ ପଡ଼ିଥିଲେ । ଈଶ୍ୱର କାହାକୁ ବିନା ଉଦ୍ଦେଶ୍ୟରେ କଷ୍ଟ ଦିଅନ୍ତି ନାହିଁ ଭଳି ବାକ୍ୟ କହି ସେ ମୋତେ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଥିଲେ । ସବୁ ଉଦ୍ୟମ

ବିଫଳ ହେବାପରେ ସେ ରାତିଅଧରେ ଡାକ୍ତର ପଟେଲ ନାମକ ଜଣେ ବିଖ୍ୟାତ ଶିଶୁରୋଗ-ବିଶେଷଜ୍ଞଙ୍କୁ ଡାକିଆଣିଲେ ଆମ ଘରକୁ । ଡାକ୍ତର ପଟେଲ୍ ପୁଅର ସ୍ନାୟୁରେ ଗ୍ଲୁକୋଜ୍ ଇନ୍‌ଜେକ୍‌ସନ୍ ଦେଲେ । ମୁଁ ତାଙ୍କ ଗହଣରୁ ଗ୍ୱଲିଗଲି ରୋଷେଇ ଘରକୁ ଓ ଭୂତଳରେ ଲୋଟିଯାଇ ପୁଅର ଆରୋଗ୍ୟ କାମନା କରି ଈଶ୍ୱରଙ୍କୁ ପ୍ରାର୍ଥନା କଲି । ମୋ ଚକ୍ଷୁରେ କେବଳ ଗୁରୁବାୟୁରର ଶ୍ରୀକୃଷ୍ଣଙ୍କ ଅତୁଳନୀୟ ସୁନ୍ଦର ମୁହଁର ଛବି ଓ ତାଙ୍କର ହାସ୍ୟ ହିଁ ଉଦ୍‌ଭାସିତ ହେଉଥିଲା । ପିଲାଙ୍କ ପରି ମାନସିକ କଲି ଯେ ମୋ ପୁଅ ବଞ୍ଚିଲେ ମୁଁ ତାଙ୍କ ପାଦତଳେ ମୋର ସବୁତକ ଗହଣା ନେଇ ଦେଇଆସିବି । ଅଳ୍ପ କେଇ ମିନିଟ୍ ପରେ ପୁଅକୁ ନିଦ ଲାଗିଗଲା ଓ ସ୍ୱାଭାବିକ ହୋଇଗଲା ତାର ନିଃଶ୍ୱାସ ପ୍ରଶ୍ୱାସ ।

ପୁଅର ଏହି ଅସୁଖ ମୋ ପକ୍ଷରେ ଥିଲା ଏକ ଚମକ । ଏକ ହୃତ୍‌କମ୍ପ । ମୋ ଅନ୍ତରର ବର୍ଦ୍ଧିଷ୍ଣୁ ଯନ୍ତ୍ରଣା ଓ କଠିନ ଅନ୍ଧକାର ମୋ ମୁହଁର ପୂର୍ବ ସୌନ୍ଦର୍ଯ୍ୟକୁ ନଷ୍ଟ କରିଦେଲା । ଏକ ଅନ୍ଧକାରାବୃତ ଅଟ୍ଟାଳିକା ପରି ହୋଇ-ଯାଇଥିଲା ମୋର ଅବସ୍ଥା । ଛିଣ୍ଡା ଶାଢ଼ୀ ଖଣ୍ଡିଏ ପିନ୍ଧି ମୁଁ ଘରର ଏ ଦିଗରୁ ସେ ଦିଗ ପଦଗ୍ଚାରଣା କରୁଥିଲି । ଯଦିଓ କ୍ଳାନ୍ତ ଗୋଡ଼ ଦୁଇଟା ଖୋଜୁଥିଲେ ବିଶ୍ରାମ; କିନ୍ତୁ ମୋର ପଦଗ୍ଚାରଣା ଶେଷ ହେଉ ନଥିଲା; କୌଣସି ଶକ୍ତିଶାଳୀ ସେତାନ୍‌ର ନିର୍ଦ୍ଦେଶରେ ମୁଁ ଘୂରି ଗ୍ୱଲିଥିଲି ଯେପରିକି । ମୁଁ ଆଉ ମୁଣ୍ଡବାଳ ଧୋଇଲି ନାହିଁ । ଦିନକୁ ଦିନ ମୁଁ ପାଗଳାମି ହୋଇଯାଉଚି ବୋଲି ସ୍ୱାମୀ ମନ୍ତବ୍ୟ କଲେ । ହଁ, ସମ୍ଭବତଃ ତାହାହିଁ । କିନ୍ତୁ ବର୍ଦ୍ଧିଷ୍ଣୁ ପାଗଳାମିର ପ୍ରତିରୋଧ କରିବାକୁ ମୋର ଶକ୍ତି ନଥିଲା ।

ସେତେବେଳେ ସ୍ୱାମୀ ତାଙ୍କର ପୁରାତନ ବନ୍ଧୁଙ୍କ ନିକଟକୁ ଆନନ୍ଦ ପାଇବା ଆଶାରେ ଯାଉଥିଲେ । ମୋର ଉପସ୍ଥିତିରେ ମଧ୍ୟ ସେମାନେ ପରସ୍ପର ସହିତ ପ୍ରେମିକ-ପ୍ରେମିକା ସଦୃଶ ବ୍ୟବହାର କରୁଥିଲେ । ମୋର ଜନ୍ମୋତ୍ସବ ଦିନ ମୋତେ ଅନ୍ତର କରିଦେଇ ସେମାନେ ଦୁହେଁ ଶୋଇବା ଘରର ଦରଜା ଭିତରପଟୁ ବନ୍ଦ କରିଦେଲେ । ମୁଁ କିଛି ସମୟ ଦରଜା ବାହାରେ ଆଚମ୍ବିତ ଅବସ୍ଥାରେ ଠିଆ ରହିଲି । ଦୈହିକ ଉତ୍ତେଜନା ଓ ସୁଖ ପାଇବା ପାଇଁ ଦୁଇଜଣ ପୁରୁଷଙ୍କ ଭିତରେ କି ପ୍ରକାରର କ୍ରିୟା ସମ୍ଭବ ଥିଲା ? କିନ୍ତୁ, କିଛିକ୍ଷଣ ପରେ ମୋର ନାରୀସୁଲଭ ଅଭିମାନ ମୋତେ ଅନ୍ୟତ୍ର ଯିବାକୁ ବାଧ୍ୟକଲା । ମୁଁ ଯାଇଁ ପୁଅ ନିକଟରେ ଶୋଇଲି । ମୋ ବକ୍ଷୋଜର ଓଜନ ସମ୍ଭବତଃ ମୋତେ ହିଁ ମର୍ଦ୍ଦନ କରୁଥିଲା । ମୋର ଗୋପନ ଅଙ୍ଗ ମୋତେ ଏକ କ୍ଷତସ୍ଥାନ ପରି ଲାଗିଲା, ଯେଉଁ ପଥଦେଇ ମୋ ଆତ୍ମାର କ୍ଷତଟା ବି ପ୍ରକାଶିତ ହେଲାଭଳି

ବୋଧ ହେଉଥିଲା । ମୋର କୁନି ପୁଅ ପଚାରିଲା—"ମା ଲୋ, ତୁ କାନ୍ଦୁଚୁ କାହିଁକି ?" ମୁଁ ତାକୁ ମୁଣ୍ଡ ହଲାଇ କହିଲି—"ନା, ନା, କିଛି ନୁହେଁ..."

ରାତିରେ ମୁଁ ସ୍ୱାମୀଙ୍କ ପାଦକୁ ଜାବୁଡ଼ି ଧରିଲେ, ତାଙ୍କର ଯେ ମୋ ପାଇଁ ଆଉ ପ୍ରେମ ନାହିଁ ତାହା ଅନୁଭବ କରିପାରୁଥିଲି । ତାଙ୍କ ପ୍ରେମ ପାଇବାର ସୌଭାଗ୍ୟ ଥିଲା ଅନ୍ୟ କାହାର । ଦିନେ ରାତିରେ ସମସ୍ତେ ଶୋଇ-ପଡ଼ିବା ପରେ ମୁଁ ଉଠିଗଲି ଉପର ମହଲାର ବାରଣ୍ଡାକୁ ଓ ସେଇଠୁ ଚାହିଁଲି ତଳକୁ । ଦାଣ୍ଡ ପର୍ଯ୍ୟନ୍ତ ଲମ୍ବେଇ ଯାଇଥିବା ରାସ୍ତାର ଦୃଶ୍ୟ ମୋର ଦୃଷ୍ଟିପଥାରୂଢ଼ ହେଲା । ଯାଇ ଦେଖିଲି ମଣ୍ଡୋବାପାଣିଆ ହୋଇମାନଙ୍କର । ବାହାର ଅଗଣାରେ ଓ ରାସ୍ତା ଉପରେ ପଡ଼ିଥିଲା ଖଣ୍ଡ ଖଣ୍ଡ ଜ୍ୟୋତ୍ସ୍ନା ।

ଭାବିଲି, ତଳକୁ ଡେଇଁପଡ଼ିବି, ଏବଂ ଶୁଭ୍ର ଉଜ୍ଜ୍ୱଳ ଚନ୍ଦ୍ରାଲୋକକୁ କଳଙ୍କିତ କରିଦେବି ରକ୍ତଛିଟାରେ । କିନ୍ତୁ, ଖୁବ୍ ଶୀଘ୍ର ଚାଲିଗଲା ଜହ୍ନଟା, ଯେପରିକି କାହାର ପ୍ରତୀକ୍ଷିତ ସାକ୍ଷାତ ପାଇଁ ସେ ଥିଲା ବ୍ୟାକୁଳିତ ଓ ଚଞ୍ଚଳ । ଦୂରରେ, ବଣଝୁଣ୍ଟି ତଳେ ଏକାକୀ ନୃତ୍ୟକରି ଚାଲିଥିଲା ପାଗଳ ଭିକ୍ଷୁକଟିଏ ଉପରକୁ ହାତଟେକି, ଓ ଗପି ଚାଲିଥିଲା ନିଜ ସାଙ୍ଗରେ । ତାର ସେଇ ନୃତ୍ୟର ଛନ୍ଦ ପ୍ରଭାବିତ କଲା ମୋର ପାଦ ଦୁଇଟିକୁ । ମୋର କେଶରାଶି ବିଚ୍ଛୁରିତ ହୋଇଗଲା ମୋର ମୁହଁ ଉପରେ । ମୋତେ ଲାଗିଲା, ଯେପରିକି ପୃଥିବୀର ନିର୍ଜନତମ ଶୃଙ୍ଗ ଉପରେ ମୁଁ ନୃତ୍ୟ କରୁଛି । ସେ ନୃତ୍ୟ ଯେମିତିକି ପୃଥିବୀର ଶେଷତମ ମାନବର ନୃତ୍ୟ...,

ଅପରାହ୍ଣର ପାହାଚରେ ଓହ୍ଲାଇ ଯେଦିନ ତଳ ଘରକୁ ଆସିଲିବେଳେ ମୋର ଗତି ଥିଲା ଅତି ମନ୍ଥର, ନିଦ-ଚାଲିର ପଦପାତ ସଦୃଶ । ବୈଠକ ଘରେ ଟେବୁଲ୍ ଲ୍ୟାମ୍ପ୍ ଜଳାଇ ଏକ ଅକଳଙ୍କ ଅକ୍ଷତ ଭବିଷ୍ୟତ, ଏକ ନୂତନ ଜୀବନ ବିଷୟରେ ଲେଖିବାକୁ ଆରମ୍ଭ କଲି ।

"ପୋଛିଦିଅ ରଙ୍ଗସବୁ, ଭାଙ୍ଗିଦିଅ ନିର୍ମିତ କଳସ<br>ଯା' କିଛି ଅତୀତ ସବୁ ନଷ୍ଟହେଉ, ନଷ୍ଟହେଉ ଅତୀତ ଆରଷି...।"

କବିତାଟିକୁ ପରଦିନ ସକାଳେ ଭାରତୀୟ P. E. N. ର ପତ୍ରିକାକୁ ପଠାଇଦେଲି । ଟେବୁଲ୍ ର ଧଳା କାଗଜ ଉପରେ ମୋର ଦୁଃଖସବୁ ମହୁଠୋପା ପରି ଝରି ପଡ଼ିଥିଲା । ଆକାଶ ଭାଗରେ ବର୍ଷାଋତୁର ଭାସମାନ ମେଘଖଣ୍ଡ ସଦୃଶ ପତ୍ରିକାମାନଙ୍କର ପୃଷ୍ଠାରେ ପୃଷ୍ଠାରେ ଭାସିଉଠିଲେ ମୋର ଦୁଃଖସବୁ ।

# ଛାଇଶୀ

## ଅନ୍ଧକାରର ପ୍ରଥମ ପର୍ବ…

ଆମର ଆୟା ବୁଢ଼ୀଟା ଥିଲା ଅସଭ୍ୟ ପ୍ରକୃତିର ଓ ଗପୁଡ଼ି । ଆମ ସମ୍ପର୍କରେ ଶୁଣିବାକୁ ଆକାଂକ୍ଷିତ ପ୍ରତିବେଶୀମାନଙ୍କ ଘରେ ବୁଲିବୁଲି ସେ ବନ୍ଧୁତା କରିଥିଲା । ଚମତ୍କାର ପର-ନିନ୍ଦାବିଷୟକ ଗପ ବଦଳରେ ସେମାନେ ଆୟାକୁ କେତେବେଳେ ପଇସା ଓ ଅନ୍ୟ କେତେବେଳେ ଟିକିଏ ଦୋକତା ଦେଉଥିଲେ । ଆୟାଟି ତାର ଭଙ୍ଗା ଦାନ୍ତରେ ଦୋକତା କାମୁଡ଼ି ସେମାନଙ୍କୁ ପର-ଘର-ନିନ୍ଦା ରସରେ ବୁଡ଼େଇ ରଖୁଥିଲା ।

ନିକଟବର୍ତ୍ତୀ ଭଡ଼ାଘର ମାନଙ୍କରେ ରହୁଥିବା ଅବିବାହିତମାନଙ୍କ ସହିତ ତା'ର ଥିଲା ବିଶେଷ ବନ୍ଧୁତା । ରବିବାର ଅପରାହ୍ନରେ ସେ ସେମାନଙ୍କୁ ନାନା ପ୍ରକାର କାଳ୍ପନିକ ଓ ସତ ଗପସବୁ ଶୁଣାଉଥିଲା ଓ ସେମାନେ ଶୋଇ ଶୋଇ ଶୁଣୁଥିଲେ । ମୋ ନିକଟରେ ମଧ୍ୟ ସେ ସେମାନଙ୍କର ଭଲଗୁଣ ଓ ଦୟାପ୍ରବଣତା ବିଷୟରେ କହୁଥିଲା, କିନ୍ତୁ ମୁଁ ସେସବୁ କଥା ପ୍ରତି କର୍ଣ୍ଣପାତ କରୁ ନ ଥିଲି ।

ମୁଁ ତାର ବଡ଼-ପାଟିରେ କଥା କହିବା ଢଙ୍ଗ ଓ ବେଶ ପୋଷାକକୁ ଘୃଣା କରୁଥିଲି । ପ୍ରାୟ ସବୁ ସମୟରେ ସେ ଲାଲ୍ ରଙ୍ଗର ବ୍ଲାଉଜ୍ ପିନ୍ଧୁଥିଲା । ତାର ଆଖିରେ ଥିଲା କଜଳଗାର ଓ ସର୍ବଦା ପାନ ଖିଲି ଯୋଗୁ ପାଟି ତାର ଥିଲା ଲାଲ ।

ଥରେ ରାତିରେ; ସ୍ୱାମୀ ଆସାମକୁ ଗସ୍ତରେ ଯାଇଥା'ନ୍ତି । ମୁଣ୍ଡ ବିନ୍ଧୁଥିବା ଯୋଗୁ ମୁଁ ରୁମାଲ୍ ଟିଏ କପାଳରେ ବାନ୍ଧି ଶୋଇ ରହିଥିଲି । ଏଇ ସମୟରେ ଦରଜାରେ ଠକ୍ ଠକ୍ ଶବ୍ଦ ହେଲା । ଦରଜା ଖୋଲିବା ମାତ୍ରେ ଆୟା ଓ ଗୋଟିଏ ମୋଟା ଲୋକର ଛାୟାମୂର୍ତ୍ତି ଦେଖିବାକୁ ପାଇଲି । ମୋଟା ଲୋକଟି ମୋର ଶଯ୍ୟା ଆଡ଼କୁ ଆସୁଥିଲା ।

ଆୟା କହି ଉଠିଲା—"ତୁମେ କିଛି ଭାବନା, ମୁଁ ତୁମକୁ ଯେଉଁ ଲୋକଟି ବିଷୟରେ କହୁଥିଲି, ଏ ସେହି । ସେ ତ ତୁମ ବିଷୟରେ ଅନେକ କଥା ପଚାରୁଥିଲା । ବର୍ତ୍ତମାନ ସେ ତୁମ ସହିତ ନିଜେ ଆଳାପ କରିବାକୁ ଚାହେଁ…"

ମୁଁ ଭୟରେ ଚମକି ପଡ଼ି ବିଛଣାରେ ବସି ପଡ଼ିଲି ଓ ଭୟରେ ଗୁହାରି ରହିଲି ତାକୁ । ବୁଢ଼ୀକୁ ପଚାରିଲି—"ଏତେ ରାତିରେ ଜଣେ ଅଚିହ୍ନା ଲୋକକୁ ତୁ କାହିଁକି ଡାକି ଆଣିଚୁ ?"

ଲୋକଟି କହିଲା—"ମୁଁ ତୁମକୁ ଆଦୌ ଆଘାତ ଦେବି ନାହିଁ ।"

ମୁଁ ତାକୁ କହିଲି—"ଯାଅ, ବାହାରି ଯାଅ, ଦୟାକରି ବାହାରି ଯାଅ ।"—କିନ୍ତୁ ମୋର ଚିତ୍କାର ଥିଲା ସମ୍ଭବତଃ ଅସ୍ପଷ୍ଟ, ଏପରି କି ମୋ ନିଜ କାନକୁ ବି ନରମ ଶୁଣାଯାଉଥିଲା । ସେଇ ଅବସରରେ ବୁଢ଼ୀ ଦୁଆର ବନ୍ଦ କରି କଣ୍ ସବୁ ବରବର ହେଇ ସ୍ଥାନ ଛାଡ଼ି ଚାଲିଗଲା । ଲୋକଟି ଯେ ରାତି ଅଧରେ ମୋ କୋଠରୀକୁ ପ୍ରବେଶ କରିବା ପାଇଁ ବୁଢ଼ୀକୁ ଲାଞ୍ଚ ଦେଇ ହାତ କରିନେଇ ଥିଲା, ତାହା ମୁଁ ସ୍ପଷ୍ଟ ବୁଝିି ପାରିଲି ।

ସେଇଟି ଥିଲା ଏକ ପାଶବିକ-ଅତ୍ୟାଚାରର ଦୃଶ୍ୟ । ମୁଁ ବିକଳରେ କହିଲି—"ଦେଖ, ମୋ ମୁଣ୍ଡ ବିନ୍ଧୁଛି, ମୋ ଦେହ ଭଲ ନାହିଁ । ଦୟା କରି ତୁମେ ମୋତେ ଏକା ଛାଡ଼ି ଚାଲିଯାଅ ।" ଦୁଇଥର ବିଚିତ୍ର ହୁଙ୍କାର କରି ଲୋକଟି ମୋ ଦେହ ଉପରେ ପଡ଼ିଗଲା । ତାର ପାଟିରୁ ମଦର ଉତ୍କଟ ଗନ୍ଧ ବାହାରୁ-ଥିଲା । ତାର ସେଇ ଓଜନିଆ ଶରୀର ତଳେ ଚାପି ହୋଇଗଲା ମୋର ଅବୟବ । ଉଠିପଡ଼ି ବାଧାକରି ଦେବାକୁ ମୋର ଇଚ୍ଛା ହେଲା । କିନ୍ତୁ ଖୁବ୍ ଶୀଘ୍ର, ଅତ୍ୟାଚାରଟି ସଫଳ ଓ ସମ୍ପୂର୍ଣ୍ଣ ନ ହେବା ପୂର୍ବରୁ ସେ ମୋର ଦେହ ଛାଡ଼ି ଗଡ଼ି ପଡ଼ିଲା ତଳକୁ । ଖଟ ଗୋଡ଼ ପାଖରେ ନିଶ୍ଚଳ ହୋଇ ବସି ସେ ଦୁଇ ହାତରେ ଜାବୁଡ଼ି ଧରିଲା ମୋର ପାଦ । ସେ ପାଦକୁ ଦୁଇହାତରେ ଚୁମ୍ବନ କରି କହିଲା—"ଝିଅ, ତୁମେ ମୋତେ କଣ୍ କ୍ଷମା ଦେବ ନି ।"

ମୁଁ ନୀରବ ରହିଲି । ସେ ପୁଣି କହିଲା—"ଏ ବିଷୟ ତୁମେ କଣ୍ ଲୋକଙ୍କ ଆଗରେ ପ୍ରକାଶ କରିଦେବ !"

ମୁଁ ତାକୁ ଅନୁଚ୍ଚ ଓ ଅସ୍ପଷ୍ଟ ସ୍ୱରରେ କହିଲି—"ହଁ, ମୁଁ ତୁମକୁ କ୍ଷମା କରିଦେବି । କିନ୍ତୁ ତୁମେ ଚାଲିଯାଅ, ଚାଲିଯାଅ···।" ତା'ପରେ ସେ ସେଇଠି ଶୋଇପଡ଼ିଲା ନିଦରେ ।

ମୁଁ ଉଠି ପୂଅର ଶୋଇବା ଜାଗାକୁ ଗଲି । ମୋତେ ଦେଖି ସେ ଉଠିପଡ଼ି ମୋ ବେକ ଚାରିପଟେ ତାର କୁନି ହାତଟିକୁ ବେଢ଼ାଇ ଦେଲା । ବନ୍ୟ ଭାବରେ ଥରି ଉଠୁଥିଲା ମୋର ଛାତି ।

ସକାଳେ ନିଦ ଭାଙ୍ଗିଲା ବେଳକୁ ମାତାଟା ବାଜି ସାରଲାଣି, ଘରସାରା ହାଲଦିଆ ସୂର୍ଯ୍ୟକିରଣ । ମୁଁ ମୋ ଶୋଇବା ଘରକୁ ଗଲି । ଗୃହିଣୀ ଖଟ ତଳକୁ । ପୋଷାକ ଆଲମିରାର ଭିତରଟା ମଧ୍ୟ ପରୀକ୍ଷା କରିନେଲି । ଆସ୍ଥା ପଚାରିଲା "କଣ ଖୋଜୁଚ ?" ଗତ ରାତିର ସେଇ ମଦ-ଗନ୍ଧ ଓ ଧାରୁଆ ଯନ୍ତ୍ରଣା କଣ୍ ଏକ ଦୁଃସ୍ୱପ୍ନ ? ଅର୍ଦ୍ଧ ରାତିର ପରିଦର୍ଶକଙ୍କ ବିଷୟରେ ତାକୁ ପଚାରିବାରୁ ସେ କହିଲା—"ହଁ ଅ, ତୁମେ ବାଇଆଣୀ ହେଲ କି ?"

ଠିକ୍ ତା'ପରଦିନଠାରୁ ମୁଁ ପୁଅକୁ ମୋରି ଘରେ ଶୁଆଇ ପକାଇଲି । ଆମେ ଦୁହେଁ ଏକ ପ୍ରକାରର ଆନନ୍ଦଜନକ ଖେଳର ଆବିଷ୍କାର ମଧ୍ୟ କଲୁ । ମୁଁ ବିଛଣା ଆରପଟରେ ଆଲଣାର ଆଡୁଆଳରେ ଲୁଚି ରହୁଥିଲି, କଣ୍ଠସ୍ୱର ସାମାନ୍ୟ ପରିବର୍ତ୍ତିନ କରି ତାକୁ କହୁଥିଲି—"ମୁଁ ସେଇ କୃଷ୍ଣ, ତୁମ ସହିତ କଥାବାର୍ତ୍ତା କରିବା ପାଇଁ ମୁଁ ବୃନ୍ଦାବନରୁ ଆସିଚି ।" ମନୁ ବିଶ୍ୱାସ କରି ଯାଉଥିଲା—ଓ ଶିଶୁ କୃଷ୍ଣଙ୍କୁ ପଚାରୁଥିଲା—"ତୁମେ ଆଜି ସକାଳେ କଣ୍ ସବୁ ଖାଇଚ ? କି ଖେଳ ଖେଳିଚ ?" ତା'ପରେ ସେ ନିଜେ ହେଉଥିଲା କୃଷ୍ଣ । ଏଇପରି ରାତିରେ ହିନ୍ଦୁଧର୍ମର ପ୍ରଧାନ ପ୍ରଧାନ ଦେବତାଙ୍କ ସହିତ ମନୁର ଆତ୍ମୀୟତା ହେଲା । ବେଳେ ବେଳେ ମୁଁ ତାକୁ ମିଠେଇ ପାକେଟ୍‌ଟିଏ ଉପହାର ଦେଇ କହୁଥିଲି—"ଏଇଟି ତୁମପାଇଁ ବୃନ୍ଦାବନରୁ ଅଣାଯାଇଚି ।" ମନୁକୁ କେବଳ ମୋ ଆଙ୍ଗୁଳିର ଅଗ ଦିଶୁଥିଲା । ସେଥିପାଇଁ ମୁଁ ଆଙ୍ଗୁଳିର ଅଗଗୁଡ଼ିକୁ କାଳି ଲଗାଇ ନୀଳ କରି ଦେଉଥିଲି । ମନୁ କୃଷ୍ଣଙ୍କୁ ପଚାରୁଥିଲା—"ତୁମେ ମୋ ଜନ୍ମଦିନ ଉତ୍ସବକୁ ଆସିବ କି ନାହିଁ ?" ଏବଂ କୃଷ୍ଣ ଉତ୍ତର ଦେଉଥିଲେ—"ଅବଶ୍ୟ ଆସିବ ।"

ଆମ ବାସ୍ତବ ଜୀବନ ସହିତ ସମାନ୍ତରାଳ ଭାବରେ ବଢ଼ି ଚାଲିଥିଲା ଗୋଟିଏ କାଳ୍ପନିକ ଜୀବନର ଧାରା । ନାନାବିଧ ବୈଚିତ୍ର୍ୟ ଓ ଇନ୍ଦ୍ରଜାଲର ସ୍ପର୍ଶରେ ମୁଁ ପରିପୂର୍ଣ୍ଣ କରିଥିଲି ତା'ର ଶୈଶବ । ନିଚୋଳ ବିଶ୍ୱ ରହିବାର ଖୁସିରେ ସେ ଥିଲା ହସହସ । ଶିଶୁ କୃଷ୍ଣଙ୍କ ପରି ସେ ବସି ରହୁଥିଲା ମୋର କୋଳରେ ।

ମୁଁ ପୁନଶ୍ଚ ଗର୍ଭବତୀ ହେଲି । ଦ୍ୱିତୀୟ ଗର୍ଭ । ତା'ର ପ୍ରଭାବରେ ମୋର ଧାର୍ମିକ ପବିତ୍ରତାର ଭିତ୍ତି ଦୋହଲି ଗଲା । ସହସା ମୁଁ ମାଛ-ମାଂସ ଖାଇବାକୁ ଲାଗିଲି । ଟିକିଏ ଟିକିଏ କଥାରେ ଚଞ୍ଚଳ ଓ ମନୁଆ ହୋଇପଡ଼ିଲି ।

ଗର୍ଭର ଅଷ୍ଟମ ମାସରେ ମୁଁ ପୁଣି ଗଲି ନଲପତ, ବୁଢ଼ୀ-ମାଙ୍କ ପାଖକୁ । ସେ ମୋର ପରିବର୍ତ୍ତନ ଦେଖି ଦୁଃଖ ପ୍ରକାଶ କଲେ । ମୁଁ ଅନେକ ସମୟରେ

ନିର୍ବାକ ନିସ୍ପନ୍ଦ ଅବସ୍ଥାରେ କାନ୍ଥର ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁକୁ ଚାହିଁ ଚାହିଁ ନିରବଚ୍ଛିନ୍ନ ଭାବରେ ଘଣ୍ଟାଏ ବା ଦି-ଘଣ୍ଟା ବସି ରହୁଥିଲି, ଯେପରି ମୁଁ ବଶୀଭୂତ ହୋଇ ଯାଇଥିଲି କାହାର ଯାଦୁ-ମନ୍ତ୍ରରେ । ବୁଢ଼ୀ-ମା ପଚାରୁଥିଲେ—"କେମିତି ହସିବାକୁ ହୁଏ, ଝିଅଟା ଭୁଲିଗଲା ନା କଣ୍ ? ସେ ଏମିତି ବଦଳିଗଲା କାହିଁକି ?"

ଗର୍ଭବତୀ ନାରୀମାନଙ୍କୁ ସେମାନଙ୍କ ନିଜ ରୁଚି ଓ ଆଶା ଅନୁସାରେ ଖାଇବା-ପିଇବା ଦେବା ନିହାତି ଉଚିତ ବୋଲି ବୁଢ଼ୀ-ମାଙ୍କର ଦୃଢ଼ବିଶ୍ୱାସ ଥିଲା । ଏଣୁ, ଯେତେବେଳେ ମୋର ସାମାନ୍ୟ ମଦ୍ୟ ଜାତୀୟ ପାନୀୟ ପ୍ରତି ଆଶା କଥା ତାଙ୍କୁ କହିଲି, ସେ ଆମ ଘରକୁ ମୋ ମଲାସୁରଙ୍କ ମାଧ୍ୟମରେ ଗୋଟିଏ ବୋତଲ ଲୁଚେଇ କରି ଆଣିବାର ଯୋଗାଡ଼ କଲେ । ବୋତଲଟି ଗୋଟିଏ ଆଇରନ୍-ଟନିକ୍ ପରି ଦିଶୁଥିଲା । ତାହା ଥିଲା ବ୍ରାଣ୍ଡି । ସେସବୁ କେମିତି ପିଆହୁଏ ମୁଁ ଜାଣି ନ ଥିଲି । ମୋର ବୁଢ଼ୀ-ମା ଉଷ୍ମ ପାଣିରେ ସେଥିରୁ କେଇ ଚାମୁଚ ମିଶେଇ ମୋତେ ଶୋଇବା ପୂର୍ବରୁ ପିଇବାକୁ ଦେଲେ । ସେଇ ରାତିସାରା ମୁଁ କବିତା ଲେଖି ବିତାଇଦେଲି । ମୋର ମୁହଁ ସାମାନ୍ୟ ଫୁଲିଲା ଭଳି ଜଣାଗଲା । ମୋ ଭିତରେ ଉଷ୍ଣତା ହେଲା ସଂଚାଳିତ ଓ ମୋର ସ୍ନାୟୁସବୁ ଶାନ୍ତ ହୋଇପଡ଼ିଲେ ।

ମୁଁ ସେତେବେଳେ ନଲିପତ ଭବନର ନିକଟରେ ନବ-ନିର୍ମିତ ଘର—'ସର୍ବୋଦୟ'—ରେ ରହୁଥିଲି । ଦଶମ ମାସ ବେଳକୁ ଆୟୁର୍ବେଦ ରୀତିରେ ପ୍ରସ୍ତୁତ 'ଦ୍ରାକ୍ଷାରିଷ୍ଟ' ସେବନ କରିବା ମୋର ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ସେଇ ପାନୀୟଟି ମୋତେ ଉତ୍କଟ କରୁଥିଲା, ମୋ ଭିତରୁ କାଢି ନେଉଥିଲା ସମସ୍ତ ରକ୍ତ-ଅନୁଭୂତିର ବ୍ୟଥା ଓ ମୁଁ ଏକ ଆନନ୍ଦମୟୀ ନାରୀରେ ରୂପାନ୍ତରିତ ହେଉଥିଲି । ଦିନେ ପାନୀୟର ପ୍ରଭାବରେ ମୁଁ ଶୋଇଥିବା ଅବସ୍ଥାରେ ଚିତ୍କାର କରିବାରୁ ସାଙ୍ଗେ ସାଙ୍ଗେ ମୋର ବାପା—ମା ମୋ ନିକଟକୁ ଦଉଡ଼ି ଆସିଥିଲେ ।

ମୋ ଭିତରେ ଏକ ପ୍ରଚଣ୍ଡ ବେଦନାର ସଂଚାଳନ ଅନୁଭବ କଲି । ସମୁଦ୍ର ମଧ୍ୟରେ ସହସା ଚିଡ଼୍‌ହୋଇ ଘୂରି ବୁଲୁଥିଲା ଯେପରି ତିମି ମାଛଟିଏ । ବାପା ପଚାରିଲେ—"ଆମି, କଣ୍ ହେଲା ? କାହିଁ କଷ୍ଟ ଲାଗୁଚି । ତୁ ନିଦରେ ଚିତ୍କାର କରିବା ଆମେ ଶୁଣିଲୁ ।"

ମାତ୍ର ଅଧଘଣ୍ଟାକ ପରେ ପିଲାଟିଏ ଜନ୍ମହେଲା । ମୁଁ ସମସ୍ତ ଶାଳୀନତା ପରିହାର କରି ପ୍ରସୂତି ବେଦନାର ଚରମ ଅବସ୍ଥାରେ ଜୋର୍‌ରେ ଚିତ୍କାର

କରଉଠିଲି । ଧାଇ ମୋତେ ଶାନ୍ତ କରିବାକୁ ଆଶ୍ୱାସନା ଦେଇ ଚାଲିଥାନ୍ତି । ତଳ ମହଲାର ପୋର୍ଟିକୋରେ ଉଦ୍‌ବେଗର ସହିତ ବାପା ଅସ୍ଥିର ଭାବରେ ପଦଚାରଣା କରୁଥା'ନ୍ତି । ନବ-ଜାତର କାନ୍ଦଣା ଶୁଣିବା ମାତ୍ରେ ସେ ଉପରକୁ ପାହାଚ ଦେଇ ଉଠିଆସିଲେ । ଶିଶୁଟି ଥିଲା ପୁଅ । ତାର ବାଳ ଥିଲା କୁଞ୍ଚ-କୁଞ୍ଚିଆ । ଆମେ ତା'ର ନାମ ରଖିଲୁ ପ୍ରିୟଦର୍ଶୀ ।

ମୋର ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବୁଢ଼ୀ-ମା ଓ ଶାଶୁ ଯତ୍ନକଲେ । କୁକୁଡ଼ା ମାଂସ, କଲିଜା ଓ ଅଣ୍ଡାକେଶର ପ୍ରଭୃତି ଖାଦ୍ୟ; ସକାଳେ ଉନମାସ୍ୱାନ୍ଧ୍ୟା ବୋଲି ଚାକରାଣୀର ତେଲ—ହଳଦି ଯୋଗେ ଯତ୍ନ ଘଷା—ମୋଡ଼ା ଫଳରେ ମୁଁ ସୁସ୍ଥ-ସବଳ ଓ ରକ୍ତାଭ ହୋଇଗଲି ।

କିନ୍ତୁ କାନ୍ଥର ବିଭିନ୍ନ ବିନ୍ଦୁକୁ ଲକ୍ଷ୍ୟକରି ଘଣ୍ଟା ଘଣ୍ଟା ବସି ରହିବାର ଅଭ୍ୟାସ ଦୂରେଇ ଗଲାନାହିଁ ।

ବମ୍ବେକୁ ଫେରିବା ପରେ ମୁଁ ଦେଖିଲି ମୋର ଅଶାନ୍ତି ବଢ଼ୁଚି । ଘରୁ ବାହାରି ପୃଥିବୀର ଶେଷ ପର୍ଯ୍ୟନ୍ତ ଚାଲି ଚାଲି ଯିବାକୁ ମୋର ଇଚ୍ଛା ହେଲା । ଯେଉଁ ଜାଗାରୁ ବାହାରିବି ଚାଲି ଚାଲି ପୁଣି ସେଇ ଜାଗାରେ ପହଞ୍ଚିଯିବି, ସେ ଭାବନା ମୋତେ ସ୍ପର୍ଶ କରି ନ ଥିଲା । ଆମର ଶେଷ, ଆମର ଲକ୍ଷ୍ୟସ୍ଥଳ ଆମର ପ୍ରାରମ୍ଭ ବ୍ୟତୀତ ଅନ୍ୟ କିଛି ନୁହେଁ ।

ବାହାରର ଦୃଶ୍ୟମାନ 'ଜଗତ ଯଥାର୍ଥରେ ଜଣଙ୍କର ବାସ୍ତବ ଜଗତ ନୁହେଁ । ଅନ୍ତର୍ଗତ ଅମାପ ଜଗତ ହିଁ ବାସ୍ତବ । ଯାହାଙ୍କର ସକଳ ଭ୍ରମଣ ଅନ୍ତରାଭିମୁଖୀ ହୋଇପାରିଚି, ସେଇ କେବଳ ଉପଲବ୍ଧି କରିପାରିବେ ଯେ ପଥର ଶେଷ ନାହିଁ । କିନ୍ତୁ ମୋର କୋଡ଼ିଏ ବର୍ଷ ବୟସ ହୋଇସାରିଥିଲେହେଁ ଏ ଜ୍ଞାନ ମୋର ହୋଇ ନ ଥିଲା । ତେଣୁ ମୁଁ ନାଲିଫିତା ପରି ଦଣ୍ଡାର ସମୁଦ୍ର-କୂଳ ଯାଏଁ ଲମ୍ବିଥିବା ରାସ୍ତାରେ ଚାଲିଲି । କେଉଟମାନେ ଭାଙ୍ଗିଭୁଙ୍ଗି ରଖିଥିବା ଜାଲ ଉପରେ ବସି ଲକ୍ଷ୍ୟ କଲି ସମୁଦ୍ରକୁ । କିନ୍ତୁ ସମୁଦ୍ରର ଅଶାନ୍ତ-ତା ମୋର ମାନସିକ ଅସ୍ଥିରତାକୁ ବଢ଼ାଇଲା ଯିନା କମାଇପାରିଲା ନାହିଁ ।

ଜଣେ ମନ-ରୋଗ-ଚିକିତ୍ସକଙ୍କୁ ଡାକି ଦେଖେଇବାପାଇଁ ଅନେକେ ସ୍ୱାମୀଙ୍କୁ ପରାମର୍ଶ ଦେଲେ । ମୁଁ ବସ୍ତ୍ର ପରିତ୍ୟାଗ କରିବା ଆରମ୍ଭ କରିଦେଇଥିଲି । ମୋତେ ସେଗୁଡ଼ିକ ଜାଲପରି ବୋଧ ହେଉଥିଲା । ମୋର ଦୁରବସ୍ଥା ଓ ଆଚରଣ ଦେଖିଲେ ବୁଢ଼ୀ-ଆୟା ଜଣକ ଆତ୍ମ-ଗ୍ଲାନି ବଶତଃ କାନ୍ଦି ଉଠୁଥିଲା । ଦିନେ ମନରୋଗ-ଚିକିତ୍ସକ ଆସିଲେ । ସେଇ ସପ୍ତାହ ଭିତରେ ଦୁଇଟି ଚିତ୍ର ଆଙ୍କିଥିଲି ମୁଁ

ସାପଙ୍କ ସହିତ ରାକ୍ଷସମାନଙ୍କର ଶୃଙ୍ଗାର ସେଥିରେ ପ୍ରଦର୍ଶିତ ହୋଇଥିଲା । ମୋତେ ପରୀକ୍ଷା କରିବା ପୂର୍ବରୁ ସେ ପ୍ରଥମେ ମୋର ଅଙ୍କିତ ଛବିଗୁଡ଼ିକୁ ପରୀକ୍ଷା କରିନେଲେ । ଜୀବନର ଦୈନନ୍ଦିନ ଲିପି ହିସାବରେ ମୁଁ ଯେଉଁ କବିତାଗୁଡ଼ିକ ଲେଖିଥିଲି, ସେଗୁଡ଼ିକ ମଧ୍ୟ ପଢ଼ିନେଲେ । ସେ ମୋପାଇଁ ବ୍ରୋମାଇଡ୍ ସେବନର ନିର୍ଦ୍ଦେଶ ଦେଇ ବିଦାୟ ନେଲେ । ଯିବା ପୂର୍ବରୁ ସେ କହିଗଲେ—"ତାଙ୍କର ଦରକାର ବିଶ୍ରାମ ଓ ପ୍ରଚୁର···ପ୍ରଚୁର ନିଦ ।"

ଦିନେ ଦୁଇଦିନ ପରେ ପରିବର୍ତ୍ତନ ଉଦ୍ଦେଶ୍ୟରେ ସ୍ୱାମୀ ମୋତେ ଲୋନାଭାଲାକୁ ନେଇଗଲେ । ଆମେ ରହୁଥିବା ଶ୍ରେଷ୍ଠ ହୋଟେଲ୍ଟିକୁ ସିକ୍ତକରି ସେଠାରେ ପ୍ରବଳ ଓ ଶୀତଳ ବର୍ଷା ହେଲା । ସ୍ୱାମୀ ମୋତେ ପଶମ କନାର ଟାଉଜର୍ ଓ ନୀଳ ସ୍ୱେଟର୍ ପିନ୍ଧାଇ ସଜ୍ଜିତ କରିଦେଲେ । ଗରମ କୁକୁଡ଼ା ମାଂସର ସୁପ୍ ଖୁଆଇଲେ । ମୁଁ ତାଙ୍କର ବକ୍ଷ ଉପରେ ମୁଣ୍ଡ ଥାପି ଘଣ୍ଟା ଘଣ୍ଟା ଧରି ଶୋଇରହି ବର୍ଷାର ଲକ୍ଷଣ-ରହିତ ଛନ୍ଦ ଶୁଣୁଥିଲି ।

## ସତେଇଶି

## ଜୀବନରେ ପ୍ରଥମକରି ମୁଁ ସଂପୂର୍ଣ୍ଣ ଆତ୍ମସମର୍ପଣ ଶିଖିଲି···

ପାଗଳାମି ଗୋଟିଏ ଦେଶ
ଦିଗନ୍ତର କୌଣସି କୋଣର ଲାଗାଲଗି
ଯାହାର ତଟଭୂମି କେବେ ବି ହୁଏନା ଆଲୋକିତ

ନିରାଶାର ନୌକାରେ
ତୁମେ ଯଦି ଯାଅ ସେଠାକୁ
ପ୍ରହରୀମାନେ ତୁମକୁ ଖୋଲିବାକୁ କହିବେ
ପ୍ରଥମେ ବସ୍ତ୍ର, ତା'ପରେ ମାଂସ
ଓ ତା'ପରେ ଅବଶ୍ୟ ତୁମର ହାଡ଼

ସ୍ୱାଧୀନତା ହିଁ ସେମାନଙ୍କର ଏକମାତ୍ର ଆଇନ୍
କାହିଁକି, ସେମାନେ ଖାଇଯାଆନ୍ତି ଝଣ୍ଡି ଆକାର ଆତ୍ମାକୁ ବି

କ୍ଷୁଧାରେ ଥିଲେ,
କିନ୍ତୁ ତୁମେ ଯେବେ ପଡ଼ିଯିବ ସେଇ କୂଳରେ
ସେଇ ଅନ୍ଧାରଘେରା କୂଳରେ
ଫେରିବ ନାହିଁ, ଆଉ ଫେରିବ ନାହିଁ ଦୟାକରି......

ମୋର ସ୍ନାୟବିକ ଦୁରବସ୍ଥା କାଳରେ ସ୍ୱାମୀ ଓ ମୋ ଭିତରେ ଏକ ନିବିଡ଼ ସମ୍ପର୍କ ଗଢ଼ି ଉଠିଥିଲା । ଅବଶ୍ୟ ସମ୍ପର୍କଟି ଥିଲା ସମ୍ପୂର୍ଣ୍ଣ ଦେହକେନ୍ଦ୍ରିକ, ଯାହାର ଆରମ୍ଭ ଘଟିଥିଲା ଲୋନାଭାଲାର ସେଣ୍ଟ୍ରାଲ୍ ହୋଟେଲରେ । ମୋତେ ବ୍ରୋମାଇଡ୍‌ରେ ପ୍ରସ୍ତୁତ ଔଷଧ ଖାଇବାକୁ ଦିଆଯିବା ଫଳରେ ମୋର ଚୈତନ୍ୟ ଉପରେ ପାର୍ବତ୍ୟ ଉପତ୍ୟକାରେ ଭାସି ବୁଲୁଥିବା ସକାଳୁଆ କୁହୁଡ଼ି ଭଳି ଏକ କଳାସିଆ ପରଦା ଟାଙ୍ଗି ହୋଇ ରହିଥିଲା । ମୋର ଇନ୍ଦ୍ରିୟଗତ ପ୍ରବୃତ୍ତି ଓ ପ୍ରବଣତା ସବୁ ସୂର୍ଯ୍ୟାସ୍ତ ସମୟରେ ଆପେ ଆପେ ମୁଦହୋଇ କଠିନ କଢ଼ ହୋଇଯାଉଥିବା ପଦ୍ମଫୁଲ ସଦୃଶ ଥିଲା । ମୋ ଜଗତର ସୀମାରେଖା କ୍ରମଶଃ ହୋଇଗଲା କଳଙ୍କମୟ ।

ଉଷୁମ ପାଣିରେ ସ୍ନାନ କରାଇ ଓ ପୁରୁଷ ପୋଷାକରେ ସଜ୍ଜିତ କରି ସ୍ୱାମୀ ମୋତେ ତାଙ୍କ କୋଳରେ ବସାଉଥିଲେ, ମୋତେ ତାଙ୍କର ପ୍ରିୟ ବାଳକ ନାମରେ ଶ୍ରଦ୍ଧାରେ ଡାକ ମୋ ସହିତ ପରିହାସ କରୁଥିଲେ । କୃତଜ୍ଞତା ସହକାରେ ମୁଁ ତାହାସବୁ ଗ୍ରହଣ କରି ନେଉଥିଲି । ତାଙ୍କର ସେଇ କୋମଳ ଆଚରଣ ପ୍ରେମର ଅନ୍ୟ-ରୂପ ପରି ବୋଧ ହେଉଥିଲା, ଯଦିଓ ତାହା ଥିଲା ବର୍ବରୋଚିତ ଓ କାମପୂର୍ଣ୍ଣ । ମୁଁ ସ୍ୱଭାବତଃ ଥିଲି ଲଜ୍ଜାଶୀଳା ।

ଯେତେବେଳେ ସେ ମୋତେ ନିରାଭରଣ କରୁଥିଲେ ଲଜ୍ଜାଶୀଳତା ମୋ ଦେହ ଉପରେ ଦ୍ୱିତୀୟ ଚର୍ମର କାର୍ଯ୍ୟ କରୁଥିଲା ଓ ମୋର ଗଢ ହୋଇ ଉଠୁଥିଲା କୁଣ୍ଠିତ । ମୋର ପ୍ରତ୍ୟେକ ଲୋମକୂପ ହୋଇ ଯାଉଥିଲେ ଗୋଟିଏ ଗୋଟିଏ ଚକ୍ଷୁ, ଯେଉଁ ଚକ୍ଷୁସବୁର ଦୃଷ୍ଟିରେ ମୋର ଦେହ ଦିଶୁଥିଲା ବଡ଼ କଦାକାର । କିନ୍ତୁ, ଅସୁସ୍ଥ ଥିଲା ସମୟରେ ମୁଁ ସକଳ ଲଜ୍ଜା ପରିତ୍ୟାଗ କଲି । ପ୍ରଥମ କରି ସଂପୂର୍ଣ୍ଣ ସମର୍ପଣ କରି ଶିଖିଲି ଶଯ୍ୟାରେ ଅନାହିତ ଗର୍ବ ଓ ଉଚ୍ଛଳତାର ସହିତ ।

କିନ୍ତୁ ସେଇ ଅନୁଭୂତ ଥିଲା ଅଳ୍ପଦିନ ପାଇଁ । ପରେ ମୋତେ ମାଲବାରକୁ ନିଆଗଲା ଓ ସେଠାରେ ଜଣେ ଆୟୁର୍ବେଦୀ ଚିକିତ୍ସକଙ୍କ ତତ୍ତ୍ୱାବଧାନରେ ମୁଁ ରହିଲି । ସେ ମୁଣ୍ଡ ଥଣ୍ଡା କରିବା ପାଇଁ ଗୋଟିଏ ତରଳ ଔଷଧ ମାଲିସ୍ କରିବାକୁ ଦେଲେ । ସର୍ବୋଦୟରେ ରହିଲି । ଅବିବାହିତ ଓ ବେପରୁଆ

ବାନ୍ଧବୀମାନଙ୍କ ସହିତ ଗପରେ ମୋର ଜାଗରଣ ବେଳତକ ଅତିବାହିତ ହେଲା । ଦିନେ, ବୁଢ଼ୀ-ମା ତାଙ୍କ ସହିତ ଗୋଟିଏ ରାତି କାଟିବାକୁ ମୋତେ ନଲାପତ ଭବନକୁ ଡାକିଲେ ।

କହିଲେ—"ଆସିବୁ ଆମେ ସେଠି ବହୁତ ରାତିଯାଏଁ ଗପିବା, ଆଗପରି ।"

ଝରକା ନିକଟରେ ସେ ଗୋଟିଏ ଲ୍ୟାମ୍ପ୍ ଜାଳି ରଖି ମୁଁ ଖାଇସାରି ସେଠାକୁ ଯିବି ବୋଲି ଅପେକ୍ଷା କରି ବସିଲେ । କିନ୍ତୁ ରାତିଟି ଝଡ଼ାଝାଞ୍ଜି ଥିବାରୁ ବାପା ମୋତେ ଯିବାକୁ ବାରଣ କଲେ । କାରଣ, ନଲାପତ ଭବନ ଗୃହଟି ବର୍ମାର ପୁରାତନ ଘର । ଝଡ଼ହେଲେ ଘରର ଉପର ସବୁ ଦୋହଲି ଯାଏ । ଏପରି ଏକ ଦୋହଲାଳୀମାନ ଘରେ ଝଡ଼ ସମୟରେ ରହିବା ଉଚିତ ନୁହେଁ ବୋଲି ବାପା କହିଲେ ।

ଭୋର୍ ପ୍ରହରାରେ ମୁଁ ଉଠି ବାରଣ୍ଡାକୁ ଗଲି ଅବସ୍ଥା ଦେଖିବା ପାଇଁ । ଝଡ଼ ଥମିଯାଇଥିଲା । କିନ୍ତୁ ତଥାପି ଜଳୁଥିଲା ବୁଢ଼ୀ-ମାଙ୍କ ଲ୍ୟାମ୍ପ୍ ଟି । ତାହା ଥିଲା ନିଃସଙ୍ଗ ବାର୍ଦ୍ଧକ୍ୟର ପ୍ରତୀକ । ବୁଢ଼ୀ-ମା ମୋତେ ଅପେକ୍ଷା କରି କରି ନିରାଶ ହେବା ବିଷୟ କିଛିହେଲେ କହିଲେ ନାହିଁ । ପାଖରେ ଜାକ ନ ହେଲେ ଏକଦା ଯେଉଁ ନାତୁଣୀକୁ ନିଦ ହେଉ ନ ଥିଲା ରାତିରେ ସେ ଏବେ ବେଶ୍ ବଡ଼, ବୁଢ଼ା-ବୁଢ଼ୀମାନଙ୍କଠାରୁ ତାର ଆଉ ସେଇ ପ୍ରକାରର ସ୍ନେହ ଆବଶ୍ୟକ ନାହିଁ ସମ୍ଭବତଃ ସେ ଉପଲବ୍ଧି କରିଥିଲେ ।

ମୃତ୍ୟୁ ନୁହେଁ ବୟସର ବୃଦ୍ଧିରେ ଆସେ ଦୁଃଖ । ମଣିଷ ନିଜେ ଅନ୍ୟ ପାଇଁ ଅନାବଶ୍ୟକ ହୋଇ ପଡ଼ିଲେ ଦୁଃଖ ଘନେଇ ଉଠେ । ମୁଁ ତ ବୁଢ଼ୀ-ମାଙ୍କ ପକ୍ଷରେ ଅପରିଚିତ ବିଦେଶୀ ସଦୃଶ ହୋଇ ପଡ଼ିଥିଲି । ମୋର ଗୁପ୍ତକଥା ଲୁଚି ରହିଥିଲା ମୋଠି । କିନ୍ତୁ ସଂପୂର୍ଣ୍ଣ ସୁସ୍ଥ ହେବା ପରେ ବିଦାୟ ଅବସରରେ ମୁଁ ଯେତେବେଳେ ଷ୍ଟେସନ୍ ଅଭିମୁଖେ ଯାତ୍ରା କରିବା ଲାଗି କାର୍‌ରେ ବସିବାକୁ ଗଲି, ବୁଢ଼ୀ-ମା ଆସିଲେ ମୋ ନିକଟକୁ । ଆଖି ତାଙ୍କର ଦୁଃଖରେ ଭରି ପଡ଼ି-ଯାଇଥିଲା । ସେ କହିଲେ—"ଆଲୋ, ତୁ ବର୍ଷୁ ଉତ୍ସବକୁ ଆସିବୁ ତ; ଆସିବୁ କି ନାହିଁ···?" ମୁଁ ତ ମିଛ କହିବାରେ ଅଭ୍ୟସ୍ତ ହୋଇ ଯାଇଥିଲି । ତାର ନମ ଧୁଡ଼ୁ ଧିଡ଼ୁ ହାତ ଦୁଇଟିକୁ ଧରି ମୁଁ କହିଲି—'ଆସିବି ଲୋ, ନିଶ୍ଚୟ ଆସିବି···।"

କିନ୍ତୁ ଏପ୍ରିଲ୍‌ର ଦ୍ୱିତୀୟ ସପ୍ତାହ ଆସିବା ପୂର୍ବରୁ ସେ ଆମକୁ ଛାଡ଼ି ଚାଲିଗଲେ । ସେ ଥିଲେ ରକ୍ଷଣଶୀଳ ଓ ନିତାନ୍ତ ପବିତ୍ର ସ୍ୱଭାବର ମହିଳା । ମୋର ନବୀନ କ୍ରିୟାକଳାପ ଓ ଚିନ୍ତାଧାରା ଦ୍ୱାରା ମୁଁ ତାଙ୍କ ମନରେ କେବେ ବି କଷ୍ଟ ଦେବାକୁ ଇଚ୍ଛାକରି ନ ଥିଲି । ଏଣୁ ତାଙ୍କର ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ମୋର ହୃଦୟର ଗୋଟିଏ ଭାଗ ନବ-ଲବ୍‌ଧ ସ୍ୱାଧୀନତାର ଆନନ୍ଦରେ କୁରୁଳି ଉଠିଲା, କିନ୍ତୁ ଅନ୍ୟ ଗୋଟିଏ ଭାଗ ଗଭୀର ଦୁଃଖରେ ଓ ନିତାନ୍ତ ଏକୁଟିଆ-ବୋଧରେ ହୋଇ ଉଠିଲା ଅଶ୍ରୁ ଛଳ ଛଳ ।

ମୋ ବୁଢ଼ୀ-ମାଙ୍କ ତୁଳନାରେ ଏତେ ବେଶୀ ଗଭୀର ଭଲ ପାଇବା ମୁଁ ଅନ୍ୟ କାହାରଠାରୁ ପାଇ ନ ଥିଲି । କିନ୍ତୁ, ତାଙ୍କ ମରିବାର ସପ୍ତାହକ ଭିତରେ ମୁଁ ଜଣେ ଅତ୍ୟନ୍ତ ସୁନ୍ଦର ଯୁବକଙ୍କ ପ୍ରେମରେ ପଡ଼ିଗଲି, ଯିଏ ସନ୍ଧ୍ୟାରେ ଖରାର ଟେନିସ୍-ଖେଳ ପଡ଼ିଆରୁ ମୋ ସହିତ ଚାଲି ଚାଲି ଆସିଥିଲେ । ତାଙ୍କର ଧୂସର ଆଖି ଉପରେ ପଡ଼ିଥିଲା ସୂର୍ଯ୍ୟାସ୍ତର ଆଭା । ତାଙ୍କ ଚର୍ମର ଶୋଭା ଓ ହସର ସୌନ୍ଦର୍ଯ୍ୟ ମୋତେ କ୍ଷଣକରେ ମୁଗ୍‌ଧ ଓ ଉଦାର କରିଦେଲା ।

ସମୁଦ୍ର କୂଳ ନିକଟରେ ଥିବା ଗୋଟିଏ କୁଟୀରକୁ ଆମେ ଚାଲି ଚାଲି ଗଲୁ । ସେଇ କୁଟୀରଟିର ସମ୍ମୁଖରେ ଥିଲା 'କ୍ୟୁଫେ ପାରେଡ଼୍' । ଜୁନ୍‌ମାସ । ଗଛଗୁଡ଼ିକ ଭରି ଯାଇଥିଲେ ଫୁଲରେ । ପଡ଼ିଆ ସାରା ଉଡ଼ି ବୁଲୁଥିଲେ ହଳଦିଆ ପ୍ରଜାପତିମାନେ ।

ଏକା ପ୍ରକାରର ଦୁଇଟି କୁଟୀର ସେଠି ଥିଲା । ତା'ର ପଛ ପଟକୁ ଠିଆ ହୋଇଥିଲା ଗୋଟିଏ ଛ' ମହଲା ବିଶିଷ୍ଟ ବିରାଟ ପ୍ରାସାଦ 'ଧୂନାକ୍ଷ୍ମି' । ତାହା ଥିଲା ପୁରାତନ ଓ ଜନଶୂନ୍ୟ । ସେଇ ସମୁଦାୟ ଇଲାକାଟି ମୋ ସ୍ୱାମୀଙ୍କ ନିଯୁକ୍ତି କର୍ତ୍ତା 'ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆ'ର ସମ୍ପତ୍ତି ଥିଲା । ଜନାକାର୍ଣ୍ଣ ଓଡ଼୍‌ହାଉସ୍ ରୋଡ଼୍‌ଠାରୁ ତାହା କ୍ୟୁଫେ ପାରେଡ଼ ପର୍ଯ୍ୟନ୍ତ ବ୍ୟାପିଥିଲା । ତା'ର ପରେ ଥିଲା ସେତେବେଳେ ଅବ୍ୟବହୃତ ସ୍ଥାନ ଓ ଗର୍ଜମାନ ସମୁଦ୍ର । ଗୋଟିଏ ଧୂଳିଆ ରାସ୍ତା ଲମ୍ବିଥିଲା ସମୁଦ୍ର ତଟ ଯାଏଁ, କିନ୍ତୁ ଆମେ କ୍ୱଚିତ୍ ସେଆଡ଼େ ଯାଉଥିଲୁଁ । ଉତ୍ତାଳ ତରଙ୍ଗରୁ ଜାତ ହେଉଥିବା ପ୍ରଚଣ୍ଡ ପବନ ପ୍ରତି ମୋର ଥିଲା ଭୟ ।

ଆମର ନୂଆ ଘରଟିର ସମ୍ମୁଖ ଭାଗଟି ନାନା ପ୍ରକାରର ଲତା ଦ୍ୱାରା ପୂର୍ଣ୍ଣ ଥିଲା । ବୈଠକଖାନାରେ ଭରି ରହିଥିଲା ନାନା ବିଷୟର ପୁସ୍ତକ । କେହି ପରିଦର୍ଶକ ଆସିଲେ ଶୋଇବା ଘର ଭିତରୁ ମୁଁ ଲୁହା ଫାଟକ ଖୋଲିବାର ଶବ୍ଦ ଶୁଣିପାରୁଥିଲି । ଠିକ୍ ଆମ ଶୋଇବା ଘରର

ଝରକା କଡ଼କୁ ଚମେଲି ଲଗାଯାଇଥିଲି । ଆମର ବନ୍ଧୁ ଥିଲେ ବହୁତ କମ୍ । ଖୋଲିବା ଘର ଭିତରୁ ମୁଁ ଦେଖି ପାରୁଥିଲି । ମୋ ପିଲାମାନଙ୍କ ଖେଳ ସେମାନେ ଲନ୍ ଉପରେ ପ୍ରଜାପତି ଧରିବାର ଦୃଶ୍ୟ ମୁଁ ଉପଭୋଗ କରୁଥିଲି ।

ଦିନ ଗୁଡ଼ିକ ମୋ ପକ୍ଷରେ ସେତେବେଳେ ଥିଲା ମଧୁର । ସମ୍ମୁଖ ଭାଗରେ ଥିବା ରାଙ୍ଗୁନ୍ ଲତାରେ ଫୁଲ ଫୁଟୁଥିଲା, ଓ ସନ୍ଧ୍ୟାଲୋକର ସ୍ପର୍ଶରେ ସେ ସବୁ ଇସପତ୍ ଖଇରିଆ ପରିବର୍ତ୍ତେ ଦିଶୁଥିଲେ ଶୁଭ୍ର । ପିତ୍ତଳ ଲ୍ୟାମ୍ପଟିଏ ଜାଳି ମୁଁ ସେଇ ଲତାଗୁଡ଼ିକୁ ପ୍ରତି ସନ୍ଧ୍ୟାରେ ଆଲୋକିତ କରୁଥିଲି ।

ଦିନେ ସନ୍ଧ୍ୟାରେ ମୁଁ ଗୃହ ସମ୍ମୁଖ ଭାଗର ଉପର ପାହାଚରେ ବସିଥିବା ବେଳେ ମୋର ସେଇ ଧୂସର-ଚକ୍ଷୁ ସମ୍ପନ୍ନ ବନ୍ଧୁ ଆସିଲେ ଓ ବସିଲେ ମୋର ପାଦ ନିକଟରେ । ତାଙ୍କ ଓଷ୍ଠର କମ୍ପନ ଦେଖି ମୁଁ ଉତ୍‌ଫୁଲ୍ଲ ଓ ପୁଲକିତ ହୋଇ ଯାଇଥିଲି । ମୁଁ ତାଙ୍କ ମୁହଁକୁ ଚାହିଁ ହସି ହସି କହିଲି "ମୁଁ ଭାବୁଚି ତୁମେ ମୋତେ ଭଲ ପାଇବାକୁ ଆରମ୍ଭ କରିନାହଁ ।" ସେ ମୋର ପଣତର ଉଢ଼ାଳରେ ତାଙ୍କର ମୁହଁଟି ଲୁଚାଇ ଦେଲେ । ପ୍ରତିବେଶୀ ଘରର ପିଲାମାନଙ୍କ ସହିତ ବାହାରେ ମୋର ପୁଅମାନେ ସେତେବେଳେ ଖେଳୁଥା'ନ୍ତି । ବୈଠକଖାନା ଭିତରେ ମୋର ସ୍ୱାମୀ ଅଫିସର ଫାଇଲ୍ କାମରେ ବୁଡ଼ି ରହିଥା'ନ୍ତି ।

ଆମେ ଘର ବଦଳେଇବା ପରେ ମୋର ପୁଅ ମନୁ ପୋଲିଓ ରୋଗରେ ଆକ୍ରାନ୍ତ ହୋଇଥିଲା ଓ ତାକୁ ଭାଇଲ୍ ପାର୍ଲେରେ ଥିବା ଡାକ୍ତର ପଟେଲଙ୍କ ପୋଲିଓ କ୍ଲିନିକ୍‌କୁ ନେବାକୁ ପଡ଼ୁଥିଲା । ଉଦ୍‌ବେଗ ବଶତଃ ମୁଁ ଆଁତଙ୍କିତ ରହୁଥିଲି । ଗରମ ସେକ ଦେବା ଫଳରେ ସେ କ୍ରମଶଃ ସୁସ୍ଥ ହେଉଥିଲା, କିନ୍ତୁ କୋଲାବା ଓ ଭାଇଲ୍ ପାର୍ଲେ ମଧ୍ୟରେ ଦୌଡ଼ା ଦୌଡ଼ି କରି କରି ମୁଁ ବଡ଼ କ୍ଳାନ୍ତ ହୋଇ ପଡ଼ିଲି ଓ ମୋର ଚେହେରା ଖରାପ ହୋଇଗଲା । ଅନେକ ସମୟରେ କୌଣସି କାରଣ ନ ଥାଇ ମୋ ଆଖିରୁ ଲୁହ ଗଡ଼ି ଆସୁଥିଲା ।

ମୋର କାନ୍ଦିବା ଦେଖି ମନୁ ପଚାରୁଥିଲା—"ମା, କାହିଁକି କାନ୍ଦୁଚୁ ? ମୁଁ କଣ ମରିଯିବି ?" ମୁଁ ତାକୁ କୋଳେଇ ନେଇ ମୁଣ୍ଡ ହଲାଉଥିଲି ଓ କହୁଥିଲି—"ନା, ନା, ନା ।"

ଦିନେ ମୋର ସେଇ ସୁନ୍ଦର ବନ୍ଧୁ ଆମକୁ ହସ୍‌ପିଟାଲରେ ଭେଟିଥିଲେ । ସେତେବେଳେ ପୁଅକୁ ନିଦ ଲାଗି ଯାଇଥାଏ । ମୁଁ ତାଙ୍କୁ କିଛି କହି ପାରି ନ ଥିଲି । କେବଳ କାନ୍ଦି ଉଠିଥିଲି । ସେ ମୋତେ ତାଙ୍କ ଛାତିରେ ନିବିଡ଼

ଭାବରେ ତାଙ୍କ ଧରି ଚମ୍ବନ କରିଥିଲେ ମୋର ଓଦା ଆଖି ପତାକୁ । ସେ କହୁଥିଲେ—"ଆମି, ମୁଁ ତୁମକୁ ଭଲପାଏ । ପ୍ରିୟତମା, ସବୁ କିଛି ଠିକ୍ ହୋଇଯିବ ।"

ସେ ବାପ୍ତବିକ ମୋର କିଏ ଥିଲେ ? କିଏ ଥିଲେ ସେ ?

ସେଇ ଗ୍ରୀଷ୍ମଋତୁରେ ଆକାଶର ଧାର ସବୁରେ ନିଆଁ ଲାଗି ଯାଇଥାଏ ପୁଷ୍ପିତ କୃଷ୍ଣଚୂଡ଼ାର ସ୍ପର୍ଶରେ । ସେ ଆସିଲେ । ମୋ ଝରକା କଡ଼ର ଗଛରେ ଫୁଟିଥିବା ସୁବାସିତ ଧଳା ଫୁଲ ତୋଳି ଆଣି ସଜାଇଦେଲେ ମୋର କବରୀ ।

କିନ୍ତୁ କିଏ ସେ ଆଶା କରୁଥିଲେ ମୋଠାରୁ ?

ହଁ, ଥରେ ହଥର ମୁଁ ଯେତେବେଳେ ତାଙ୍କ ନିକଟକୁ ଲାଗି ଠିଆ ହୋଇଥିଲି ଓ ସେ ମୋ କାନ୍ଧ ଉପରେ ହାତ ରଖିଥିଲେ—ସେତେବେଳେ ମୁଁ ଅନୁଚ ସ୍ୱରରେ ତାଙ୍କୁ କହୁଥିଲି—"ମୁଁ ତୁମର । ତୁମର ଯେପରି ଇଚ୍ଛା ମୋ ସହିତ ସେପରି ବ୍ୟବହାର କରିପାର । ମୋତେ ପ୍ରେମ କର ।" କିନ୍ତୁ ସେ କହୁଥିଲେ—"ନା, ନା । ତା' ନୁହେଁ । ମୋ ଦୃଷ୍ଟିରେ ତୁମେ ଜଣେ ଦେବୀ । ମୁଁ ତୁମ ଦେହର ଅବମାନନା କରିବ ନାହିଁ ।"

ଏବେ ନରିମାନ୍ ପଏଣ୍ଟ୍ ଅନେକ ଉଚ୍ଚ ଅଟ୍ଟାଳିକାରେ ପୂର୍ଣ୍ଣ ହୋଇଗଲାଣି । କିନ୍ତୁ ମୁଁ ଯେତେବେଳେ ତରୁଣୀ ଥିଲି ଓ ପ୍ରେମ କରୁଥିଲି ସେଇ ଧୂସର-ଚକ୍ଷୁ ଯୁବକଙ୍କୁ ସେତେବେଳେ ସେଇ ଜାଗାଟା ଥିଲା ନିହାତି ଶୂନ୍ୟ ଓ ଅବହେଳିତ । ଆମେ ଦୁହେଁ ଲକ୍ଷ୍ୟହୀନ ଭାବରେ ନିର୍ଜନ ପାଣ୍ଡେ ରୋଡ଼ରେ ଚାଲୁଥିଲୁ, ଅଥବା କେବେ କ୍ୟୁଫେ ପାରେଡ୍ ଅତିକ୍ରମ କରି ଚାଲୁଥିଲୁ ସୂର୍ଯ୍ୟ ମୁହାଁ । ବାଟରେ ବିଶ୍ରାମ ପାଇଁ ସ୍ଥାନ ନ ଥିଲା । କିନ୍ତୁ ସାୟାହ୍ନ ସୂର୍ଯ୍ୟଙ୍କର ବର୍ଣ୍ଣାଢ଼୍ୟ ପ୍ରଭାର ଅନୁଭବରେ, ଆମର ମନେ ହେଉଥିଲା—ସତେ ଯେମିତିକି ଆମେ ଦୁଇଜଣ ଦେବତା,—ଦୈବାତ୍ ପଥଭ୍ରାନ୍ତ ହୋଇ ଘାଣ୍ଟି ହେଉଛୁ ଏକ ନିର୍ଦ୍ଦୟ ଗ୍ରହରେ ।

# ଅଠେଇଶି

## ପ୍ରୀତି ଭିକାରୁଣୀ...

ଦ୍ୱି-ପହର ସ୍ୱପ୍ନର ପାରାମାନେ
ଥାକ ଉପରେ
ବସନ୍ତ ବିଚନ୍ଧ ନୀରବତାରେ

ଉତ୍ତପ୍ତ ଧୂଳି ଉଠେ ଉପରକୁ
ଜମିଯାଏ
କ୍ଷୀରାକ୍ରାନ୍ତ ଗଳି ଭରା ନଗରଶିଖିର
ସୂର୍ଯ୍ୟ ସ୍ନାତ ଅଣ୍ଡଗୁଡ଼ିକ ଉପରେ ।

କ୍ରମେ ସୂର୍ଯ୍ୟ ହୁଏ ଶୀତ;
ଫଳ ପର ଶୀତ ହେବା ପରେ
ମୋ ଦ୍ୱିପହର ସ୍ୱପ୍ନ ଉପରେ
ସେ ଲମ୍ବେଇ ଦିଅନ୍ତି
ଅନେକ ଅନେକ କର୍କଶ ରୂପେଲି ସୂତାସବୁ ।

ଯେଉଁ ପୁରାତନ ଅଟ୍ଟାଳିକାଟି ଯୋଗୁ ଆମକୁ ଦିଶୁ ନ ଥିଲା ଜନାକୀର୍ଣ୍ଣ ଓଡ଼୍‌ହାଉସ୍ ରୋଡ଼, ତାହା ଧୂନାଙ୍କ୍ସ ନାମରେ ପରିଚିତ ଥିଲା । ମ୍ୟୁନିସିପାଲିଟି ତରଫରୁ କୋଠାଟିକୁ ଜୀର୍ଣ୍ଣ ଓ ବସବାସ ପାଇଁ ଅନୁପଯୁକ୍ତ ବୋଲି ଘୋଷଣା କରାଯାଇଥିଲା ।

ତା' କାନ୍ଥର ବଡ଼ ବଡ଼ ଫାଟ ସନ୍ଧିରେ ବର୍ଷାଦିନେ ଓସ୍ତଗଛ ସବୁ ଉଠିଥିଲା । ସୂର୍ଯ୍ୟ କିରଣରେ ବିବର୍ଣ୍ଣ ଦିଶୁଥିଲା ତାର ଝରକାଗୁଡ଼ିକ । ତାର ଥାକ ଉପରେ ବସବାସ କରୁଥିବା ପାରାମାନଙ୍କ ଘୁମୁ ଘୁମୁ ଶବ୍ଦ ମୋର ଦ୍ୱି-ପ୍ରହରର ନିଦରେ ବ୍ୟାଘାତ ସୃଷ୍ଟି କରୁଥିଲା ।

କୌଣସି କୌଣସି ଅପରାହ୍ଣରେ ଅସ୍ଥିରତା ବଶତଃ ମୁଁ ହେଇ କୋଠାଯାଏଁ ଚାଲିଯାଉଥିଲି ଓ ଅଟ୍ଟାଳିକାର ବଙ୍କା ମେରୁଦଣ୍ଡ ସଦୃଶ ଥିବା ଭଗ୍ନ ପାହାଚ ଦେଇ ଉଠୁଥିଲି ଉପରକୁ, ବିଭିନ୍ନ କୋଠରୀର ଦରଜା ଖୋଲି ଲକ୍ଷ୍ୟ କରୁଥିଲି ଭିତରେ ଜମାଟ ବାନ୍ଧିଥିବା ଅନ୍ଧାରକୁ ।

ସବୁବେଳେ ଭିତରକି ଥିଲା ଅଦୃଶ୍ୟ ଘୁଣ୍ଡୁ ଚମ୍ପୁଷାଙ୍କ ଝୁଣ୍ଟ୍ ଝୁଣ୍ଟ୍ ଶବ୍ଦରେ ମୁଖରିତ ଚଟାଣରେ ସବୁବେଳେ ଜମି ରହିଥିଲା ଧୂଳି ।

ଧୂନାକ୍ଷ୍ଣ ମୋ କଳ୍ପନାରେ ଥିଲା ଏକ ଅସୁରଙ୍କ ପ୍ରାସାଦ । ରାତି ହେଲେ ଅଦୃଶ୍ୟ ଅଧିବାସୀମାନେ ସାଧାରଣ ରୂପ ପରିଗ୍ରହ କରି ଗାଉଥିଲେ ଓ ନାଚୁଥିଲେ ସେଠାରେ । ହଁ, ସେପରି ଭାବିବାକୁ ମୋତେ ଭଲଲାଗୁଥିଲା ଓ ସେଇ ସମ୍ପର୍କୀୟ ନାନା ଗପ ମୁଁ ମୋ ପିଲାମାନଙ୍କୁ କହୁଥିଲି । ସେଇ କାଳ୍ପନିକ ଅଧିବାସୀଙ୍କ ବିଷୟରେ ମୋ ନିଜର ବି ଅଧାଅଧି ବିଶ୍ୱାସ ଆସି ଯାଇଥିଲା ।

ଜହ୍ନ ରାତିର ବିଳମ୍ବ ପ୍ରହରରେ ବାହାରର ରାସ୍ତା ସବୁ ସେତେବେଳେ ଏକାନ୍ତ ନିର୍ଜନ ଓ ନୀରବ ହୋଇ ଯାଉଥିଲା, ଏପରିକି ନିକଟସ୍ଥ ପେଟ୍ରୋଲ ପମ୍ପ୍ ଆଡ଼କୁ ଖଣ୍ଡିଏ ବି କାର୍ ମୁହାଁଇବାର ଶବ୍ଦ ଶୁଣାଯାଉ ନ ଥିଲା, ସେତେବେଳେ ଅନେକ ସମୟରେ ଧୂନାକ୍ଷ୍ଣ ଭିତରୁ ଭାସିଆସୁଥିଲା ଝଣ୍ ଝାଣ୍ ଶବ୍ଦ ଓ ଅଶରୀରୀ ମାନଙ୍କର ଉଚ୍ଚ ହାସ୍ୟର ଲହରୀ । ମୁଁ କିଣ୍ ସେସବୁ ଶୁଣିପାରି ନ ଥିଲି ?

ଇଚ୍ଛାହେଲା କିଛି ଗୋଟାଏ ସାହସିକ କାର୍ଯ୍ୟ କରିବାକୁ । ବିପଦ ଭିତରକୁ ପାଦ ବଢ଼ାଇବାକୁ ମୋର ଅସୀମ ଅଭିଳାଷ ଜାଗ୍ରତ ହେଲା । ଦିନେ, ତାହାର ଗୋଟିଏ ଦ୍ୱାର ମୁହଁରେ ଠିଆ ହୋଇ ଦୃଷ୍ଟି ପକେଇଲି ଭିତରକୁ । କାନରେ ବାଜିଲା ପୁରୁଷ କଣ୍ଠର ଶବ୍ଦ, କଙ୍କଣି ଭାଷାରେ କଥାବାର୍ତ୍ତା । ଗୋଟିଏ ବିରାଟ କଡ଼େଇର ଝାପ୍‌ସା ଆକୃତି, କିଛି ଧାତୁ ନିର୍ମିତ ନଳ ମୁଁ ଅସ୍ପଷ୍ଟ ଭାବରେ ଦେଖିପାରିଲି । ବାମ୍ପ ବାହାରିବାର ସାଁ-ସାଁ ଶବ୍ଦ ବି ଶୁଣିପାରିଲି ।

ତାଙ୍କ ଭିତରୁ ସୁନା-ଦାନ୍ତ ଲଗାଇଥିବା ବ୍ୟକ୍ତି ଜଣକ ମୋ ଆଡ଼କୁ ବୁଲି ଗ୍ଲହିଁଲା ଓ ମୋତେ ଦେଖିପାରିଲା । ସେ ଥିଲା ଗୋଟିଏ ଚମତ୍କାର ସନ୍ଧିଗ୍ଧ ମୁହୂର୍ତ୍ତ । ସେମାନେ ମୋତେ ମାଡ଼ଦେବାକୁ ଉଦ୍ୟମ କରୁଥିଲେ ନା କଣ ? ପର ମୁହୂର୍ତ୍ତରେ ମୁଁ ଦଉଡ଼ି ଦଉଡ଼ି ପାହାଚ ଦେଇ ଗ୍ଲଲିଆସିଲି ତଳକୁ । ମୋ ଛାତି ଧକ ଧକ ହେଉଥିଲା ଜୋର୍‌ରେ ।

ପରେ ଦୁଧବାଲାଠାରୁ ଜାଣିଲି ଯେ ସେଇ ନିର୍ଜନ ପ୍ରାସାଦଟିକୁ ଚୋରି ମଦ ବେପାରୀମାନେ ବ୍ୟବହାର କରୁଥିଲେ ଓ ମୋର ସେଠାକୁ ଯିବା ଏକାନ୍ତ ଅନୁଚିତ । ତା' ମତରେ, ସେମାନେ ସବୁ ଖୁନୀ ଥିଲେ ।

ମୋ ବନ୍ଧୁ ଦିଲ୍ଲୀରୁ ମୋତେ ଚିଠି ଦେଇଥିଲେ । କିନ୍ତୁ ତାଙ୍କର ଚିଠିଟି ଏପରି ବିବେଚନାଶୂନ୍ୟ ଥିଲା ଯେ ମୁଁ ଏକରକମ ବିରକ୍ତ ହୋଇଗଲି । ଚିଠିଟି ମୋ ସ୍ୱାମୀଙ୍କ ହାତରେ ପଡ଼ିଲା ଓ ସେ ବଡ଼ପାଟିରେ ମୋତେ ପଢ଼ି ଶୁଣାଇ-

ଦେଲେ, ମୋ ମନର ପ୍ରତିକ୍ରିୟା ଲକ୍ଷ୍ୟ କରିବାପାଇଁ । ସେଥିରେ ଯୁବକ ବନ୍ଧୁ ଲେଖିଥିଲେ—'ମୁଁ ତୁମକୁ କେତେ ଭଲପାଏଁ ଯଦି ଜାଣିବାକୁ ଚାହଁ, ତେବେ ଆକାଶର ତାରାଙ୍କୁ ଗଣି ଚାଲ ।' ତାଙ୍କ ପାଇଁ ମୁଁ ସେଦିନ ବଡ଼ ଲଜ୍ଜାଜନକ ପରିସ୍ଥିତିରେ ପଡ଼ିଯାଇଥିଲି ।

ସ୍ୱାମୀ ସେଥିରେ ବେଶ୍ ଚଡ଼ିଯାଇଥିଲେ । ସେ କହିଲେ—"ଆମି, ମୁଁ ଭାବିଥିଲି ତୁମେ ବେଶ୍ ବୁଦ୍ଧିମତୀ । କିନ୍ତୁ ତୁମେ ଏପରି ଜଣେ ନିର୍ବୋଧକୁ ଉତ୍ସାହିତ କରିବାର କାରଣ କଣ ?"

ବନ୍ଧୁଙ୍କର ଧୂସର ଚକ୍ଷୁ ଯାହା ଅପରାହ୍ଣର ଖରା ସ୍ପର୍ଶରେ ମଧୁପୂର୍ଣ୍ଣ ହୋଇଯାଏ, ତାଙ୍କର ସେଇ ମନଲୋଭା ହସ ଅଥବା ତାଙ୍କର କୁଞ୍ଚିତ ଚିବୁକ ବିଷୟରେ ମୁଁ କହିବାକୁ ଇଚ୍ଛାହେଲେ କହିପାରିଲି ନାହିଁ । ମୋତେ ଅଧିକ ଲଜ୍ଜାରୁ ରକ୍ଷିତ କରିବାପାଇଁ ସ୍ୱାମୀ ଚଷମା ଖୋଲି ରଖିଦେଲେ ।

କିନ୍ତୁ ସେଇ ଗୋଟିଏ ପ୍ରଶ୍ନର ପଛରେ ଲୁଚି ରହିଥିଲା ଆଉରି ଅନେକ, ଯାହା ସେ ପଚାରି ନ ଥିଲେ । ସେସବୁ ଅଦୃଶ୍ୟ ତୀରଭଳି ମୋତେ ଆଘାତ କରିବାକୁ ପ୍ରସ୍ତୁତ ଥିଲା । ସତେ ଯେମିତି ସ୍ୱାମୀ ପଚାରି ଚାଲିଥିଲେ—"ମୁଁ କଣ ତୁମକୁ ଖାଇବାକୁ ଦେଉନି, ଲୁଗାପଟା ଦେଉନି ନା ରହିବାକୁ ନିରାପଦ ଉଷୁମତା ଦେଇନି ? ତୁମେ ପ୍ରେମ ମାଗିବା ନ ମାଗିବା ନିର୍ବିଶେଷରେ ମୁଁ କଣ ଦକ୍ଷତା ସହକାରେ ମୋର ନିର୍ଦ୍ଦିଷ୍ଟ ଦାମ୍ପତ୍ୟ ଦାୟିତ୍ୱ ସମାପନ କରି ଆସିନାହିଁ ?"

ମୁଁ ଯେତେବେଳେ ବନ୍ଧୁଙ୍କୁ ଏଇ ଘଟଣାଟିର ସୂଚନା ଦେଲି, ସେ ଅତି ପ୍ରଫୁଲ୍ଲ ଚିତ୍ତରେ ମୋଠାରୁ ବିଦାୟ ନେଇଗଲେ । ସେତେବେଳେ ମୋ ହୃଦୟରେ ଆବେଗ ଉଛୁଳି ପଡ଼ୁଥିଲା । ତେଣୁ, ସେ ସମୟରେ ତାଙ୍କର ପୃଷ୍ଠଦେଶ ଓ ମସ୍ତକର ଖଣ୍ଡିତ କେଶରାଶି ଦେଖି ମୁଁ ତାଙ୍କୁ ଜଣେ ଭୀରୁ ମନେକଲି । ଏହା ସତ ଯେ, ସେତେବେଳେ ବିତରଣ କରିବାପାଇଁ ମୋଠାରେ ସଞ୍ଚିତ ହୋଇ ରହିଥିଲା ଯଥେଷ୍ଟ ପ୍ରେମ ।

ଭିକ୍ଷା ଯେପରି ଖୋଜେ ଭିକ୍ଷୁକର ଥାଳି, ମୋର ଉଦ୍‌ବେଳିତ ପ୍ରେମ ସେଇପରି ଆବଶ୍ୟକକରୁଥିଲା ଜଣେ ଗ୍ରହୀତା । ପୂଜାବେଳେ ପଥର ବି ଠାକୁର ପାଲଟିଯାଏ । ସମ୍ଭବତଃ ମୋ ସ୍ୱପ୍ନର ସରୋବରରେ ଫୁଟିଥିବା ନୀଳ ପଦ୍ମର ସାଦୃଶ୍ୟ ବହନ କରିଥିବା ମୁହଁଟିଏ ମୁଁ ସନ୍ଧାନ କରୁଥିଲି ଓ ସେଇ ଅ-ତନୁଙ୍କର ନିବିଡ଼ ସ୍ପର୍ଶ ପାଇବା ଲୋଭରେ ମୁଁ ଆଉରି ଅନେକ ଆକୃତିର ସଂସର୍ଗରେ ଆସି ପଥଭ୍ରାନ୍ତ

ହୋଇଥିଲି । ସମ୍ପୂର୍ଣ୍ଣ ଭ୍ରଷ୍ଟ ଓ ଭ୍ରାନ୍ତ ହେବା ମୋ ପକ୍ଷରେ ଅସମ୍ଭବ ନ ଥିଲା, କିନ୍ତୁ ମୁଁ କେବେହେଲେ ମୋର ଲକ୍ଷ୍ୟ ଭୁଲିଯାଇ ନ ଥିଲି ।

ଏଇ ଅଳ୍ପଦିନ ତଳେ ଆମ ପରିବାରର ଅନ୍ୟତମ ବନ୍ଧୁ ଗ୍ରମ ଦେଶମୁଖ ବିଶ୍ୱବିଦ୍ୟାଳୟ ବଗିଚାରେ ଥିବା ଗୋଟିଏ ଗଛ ବିଷୟରେ କହିଲେ, ସେଉଁଗଛରେ ଦିନେ ସକାଳେ ଫୁଲ ଲଦି ହୋଇ ପଡ଼ିଲା, ମହକ ପ୍ରସରିଗଲା । ପ୍ରାତଃଭ୍ରମଣ ଅବକାଶରେ ଗଛଟିର ରୂପ ଦେଖି ସେ ଦଣ୍ଡେ ଠିଆହେଲେ, ଫୁଲସବୁକୁ ଘେରି ରହିଥିବା ମହୁମାଛିଙ୍କର ଗୁଞ୍ଜରଣ ଶୁଣିଲେ । ସେ କହିଲେ ଯେ ସେଇ ଦୃଶ୍ୟଟି ଥିଲା ଅନେକାଂଶରେ ଏକ ଭୋଜନୋତ୍ସବ ସଦୃଶ । କିନ୍ତୁ ବସନ୍ତର ଉତ୍ସବଗୁଡ଼ିକ ବଡ଼ ସଂକ୍ଷିପ୍ତ ।

ପରଦିନ ପ୍ରଭାତରେ ସେ ଯେତେବେଳେ ପୁଣି ଗଲେ ସେଠାକୁ ନା ଫୁଲ ନା ଆକୁଳ ମହୁମାଛି କାହାକୁ ହେଲେ ଦେଖିପାରିଲେ ନାହିଁ । ଗଛଟି ପୂର୍ବର ନିଃସଙ୍ଗ ଅବସ୍ଥାରେ ଠିଆ ହୋଇଥିଲା ଓ ତା' ତଳେ ଲୋଟୁଥିଲେ ମୃତ ଫୁଲଗୁଡ଼ିକ । ସେହି ଅନୁଭୂତି ଦେଶମୁଖଙ୍କୁ ଦୁଃଖିତ କରିଥିଲା ।

ସେ ଘଟଣାଟି ମୋ ଆଗରେ ବ୍ୟକ୍ତ କଲେ । ସୌନ୍ଦର୍ଯ୍ୟ ଏପରି ଏକ କ୍ଷଣକାଳସ୍ଥାୟୀ ଋତୁ ବୋଲି ଉପଲବ୍ଧି କରିବା ମାତ୍ରେ ମୋତେ କାନ୍ଦ ମାଡ଼ି ଆସୁଥିଲା । ହଁ, କ୍ଷଣକ ପାଇଁ ମୁଁ ଭାବିଲି, ମୁଁ ସେଇ ଗଛ ଏବଂ କ୍ୟାଫେ ପ୍ୟାରେଡ଼ର ସାମ୍ନାରେ ଥିବା ଆମ କୁଟୀରର ସମ୍ମୁଖରେ ମାତ୍ର ଥରୁଟିଏ ପାଇଁ ସଂକ୍ଷିପ୍ତ ଭାବରେ ବସନ୍ତର ପୁଷ୍ପ ଫୁଟି ଉଠିଥିଲା ମୋ ଅଙ୍ଗରେ । କିନ୍ତୁ ଖୁବ୍ ଶୀଘ୍ର ପହଞ୍ଚିଗଲା ଶରତଋତୁ ଓ ଖୁବ୍ ଶୀଘ୍ର ଫେରିଗଲେ ମହୁମାଛିମାନେ ।

ଦିନେ ମୁଁ ଦୁଆର ଖୋଲିବା ମାତ୍ରେ ଜଣେ ଅନୁଚ୍ଚ ଦେବତା ସଦୃଶ ବିଦେଶୀଙ୍କୁ ଦେଖିବାକୁ ପାଇଲି । ସେ ଇଟାଲୀୟ ଖଦିର ପୋଷାକ ପିନ୍ଧିଥିଲେ । ସେ କହିଲେ—"ମୁଁ କାର୍ଲୋ । ତୁମର ପତ୍ରବନ୍ଧୁ ।"

ବିବାହ ପରେ ମୁଁ ସମସ୍ତ ବନ୍ଧୁଙ୍କୁ ଚିଠି ଲେଖିଥିବା ବନ୍ଦ କରି ଦେଇଥିଲି । ଏଣୁ ମୁଁ ଆଚମ୍ବିତ ହୋଇଗଲି ତାଙ୍କୁ ଦେଖି । ତାଙ୍କ ମୁଣ୍ଡର ବାଳ ଠିଆଠିଆ ଓ ଚକ୍‌ଚକ୍ ଥିଲା, ଓଠ ଥିଲା ମୋଟା ଓ ଲାଲ୍ ।

ତାଙ୍କର ପତା-ନମିତ ଚକ୍ଷୁ ଦୁଇଟି ବେଶ୍ ଯୌନ-ଦ୍ୟୋତକ ହୋଇଥିଲେ ମଧ୍ୟ ତାଙ୍କ ଶରୀର ପ୍ରତି ମୁଁ ଆକୃଷ୍ଟ ହୋଇପାରି ନ ଥିଲି । ଗୋଟିଏ ହାତରେ ମୋର ଖୋଲା କେଶକୁ ଧରି ସେ ମୋର ଗାଲରେ ଚୁମ୍ବନ ଦେଇଥିଲେ ।

ସେ ଚକ୍କାର କଲଭଳି କହି ଉଠିଲେ—"ଶୀଘ୍ର ତୁମର ବାଳ ବାନ୍ଧିନିଅ, ମୁଁ ତୁମର ମୁହଁଟିକୁ ପରିଷ୍କାର ଭାବରେ ଦେଖିବାକୁ ଚାହେଁ ।" ଆମେ ଭିତରକୁ ଗଲୁ, ହାତ ଧରାଧରି ହୋଇ । ଆମ ପ୍ରତି କଟାକ୍ଷ ପାତକରି ଚାକରାଣୀ ଚାଲି ଗଲା । ସବୁ ବିଦେଶୀଙ୍କ ପ୍ରତି ତା' ମନରେ ଥିଲା ଅବିଶ୍ବାସ । କେବଳ ଆମ ଫାଟକ ସାମ୍ନା ରାସ୍ତାଦେଇ ଯେଉଁଦିନ ନିକଟା କ୍ରୁଷ୍ଟେଭ୍ ଗାଡ଼ିରେ ଯାଉଥିଲେ, ସେ ଆନନ୍ଦ ପ୍ରକାଶ କରି ମନ୍ତବ୍ୟ ଦେଇଥିଲା—"ଇଏ ତ ବିଦେଶୀଙ୍କ ପରି ଦିଶୁ ନାହାନ୍ତି, ଦିଶୁଛନ୍ତି ବେଶ୍ ଚମତ୍କାର । ଏଙ୍କୁ ଦେଖିଲେ କିଏ କହିପାରିବ ଜଣେ ନାସ୍ତିକ୍ ନୁହନ୍ତି ବୋଲି ।"

କାର୍ଲୋ ମୋ ଜୀବନରେ ଦେଖାଦେବା ବେଳକୁ ବିଶ୍ବବିଦ୍ୟାଳୟ ନାଗେଚ୍ଚିର ସବୁ ଫୁଲ ଝଡ଼ି ସାରିଥିଲେ । ମୁଁ ମଧ୍ୟ ଆଉ ଭଲପାଇବାର ପ୍ରେମରେ ପଡ଼ିବାଭଳି ରହସ୍ୟ-ନାୟିକା ହୋଇ ରହି ନ ଥିଲି ।

## ଅଣତିରିଶି

### ତଥାପି ଝୁରି ହେଉଛି ବନ୍ଧୁଙ୍କୁ...

ବର୍ଷାଭରା ଆଷାଢ଼ ଓ ଅନ୍ଧକାର
ଶୂନ୍ୟ ଭିତରେ ରୁକ୍ଷ ଧୂଆଁ ସଦୃଶ ଆକାଶ, ଏବଂ
ଆଇଁଷିଣା, ପଚାଗନ୍ଧ ଉଠେ ପୃଥିବୀରୁ ।

ମୋ ଆଗକୁ ଏକପାଦ ସେ ଯେ ଗଲେ ଚାଲି,
ପଶ୍ଚିମାପବନ ତାଙ୍କ ବାଳସବୁ କଲା କେଉଁ କେଉଁ
ମୁଁ ଭାବିଲି, ମୁଁ କେବଳ କରନ୍ତି କାମନା
କାମନା କରନ୍ତି ଖାଲି ତାଙ୍କ ପ୍ରେମ,
ସୁଖ ଆରୋହଣ
ବେଶ୍ ବଡ଼ ଧଳା ରାଜକୀୟ ଘୋଡ଼ାର ଉପରେ

ସବୁତକ ଅପବିତ୍ର ମାଡ-ନିସ୍ଵମକୁ
ପଦପାତେ ଦଳି,
ଯଦି ମୁଁ ପାରନ୍ତି ଖାଲି ଦୂରକରି ମୋ ମନରୁ
ପୁରାତନ ସ୍ବର୍ଣ୍ଣଟିର ସ୍ମୃତିସବୁ, ତା'ହେଲେ ମୋ

ଶମ୍ଭୁନ କକ୍ଷର ଦର୍ପଣରେ ଦଶନ୍ତା ମୋ ଛବି
ମୁଁ ନିଜକୁ ଅକାଡରେ ଠେଲି ଦେଉଥିଲେ,
ରୂପାର ଥାଳୀ ଉପରେ କଳା ଫଳ;

ଯେତେବେଳେ ଲକ୍ଷ୍ୟ କରୁଥିବେ ସେ ଯେ ଶୋଇ ଶୋଇ
ଅପରର ରାଜ୍ୟ ଯିଏ କରନ୍ତି ବିଜୟ ।
ତାଙ୍କର ଭାବାକ୍ରାନ୍ତ ଆଖିପତା ସବୁକୁ ମୁଁ ଉଜ୍ଜ୍ୱଳ କରିଦେବି
ଓ ଈର୍ଷାରେ, କିଛି ତକ୍ତ ଗାଳି ଏବଂ କ୍ରୋଧ ପରେ ପରେ
କାନ୍ଦି କାନ୍ଦି ବିଚଳିତ କରିଦେବି ତାଙ୍କର ସ୍ନାୟୁକୁ
କୌଣସି ଧୂଳିଝଡ଼ରୁ ରକ୍ଷା
ପାଇ ଯେପରି କାନ୍ଦଇ ଏକ
ବାସ-ସ୍ଥାନ କୌଣସି ବଳେଇ ।

କାର୍ଲେ ଥିଲା ସମ୍ପଦଶାଳୀ ବାପା-ମାଙ୍କର ଏକମାତ୍ର ପୁଅ । ପକ୍ଷାନ୍ତରେ ମୁଁ ଥିଲି ଜଣେ ସରକାରୀ କର୍ମଚାରୀଙ୍କ ସ୍ତ୍ରୀ, ଯାହାଙ୍କୁ ପ୍ରତି ମାସର ଆରମ୍ଭରେ ଅପ୍ରାପ୍ତ ପ୍ରାପ୍ୟ ପାଇଁ ସଂଗ୍ରାମ କରିବାକୁ ପଡ଼ୁଥିଲା ।

ସେ ଥିଲା ସହରବାସୀ ଓ ଆଧୁନିକ ବିଚାରର ବୁଦ୍ଧି ସମ୍ପନ୍ନ । ଅଥଚ, ନଖର ମଳି ସଦୃଶ ମୋତେ ଜାବୁଡ଼ି ଧରିଥିଲା ପଛରେ ଛାଡ଼ି ଆସିଥିବା ମୋ ଗାଁ,—ପୁନ୍ନୟୁର୍‌କୁଲମ୍ । ଲୋକାଚାର ଓ କୁସଂସ୍କାର ମୋର ରକ୍ତଗତ ଥିଲା । ବେକରେ ଝୁଲୁଥିଲା କଳା ସୂତାରେ ବନ୍ଧା ତେଉଁରିଆଟିଏ, କ୍ରୂର ଦେବତାଙ୍କର ଅଶୁଭ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ । ମୋର ସମୁଦାୟ ଚାରିଖଣ୍ଡି ଶାଢ଼ୀ ଓ ଅଳ୍ପ କେଇଖଣ୍ଡି ସୂତା ବ୍ଲାଉସ୍ ଥିଲା, ସୂଚୀ-ଶିଳ୍ପ ଯୋଗେ ମୁଁ ଯାହାକୁ ନିଜ ହାତରେ ସୁନ୍ଦର କରିଥିଲି ।

କାର୍ଲେ ମୋତେ ଯେଉଁ ବଡ଼ ଧରଣର ହୋଟେଲ୍‌ ଗୁଡ଼ିକୁ ମଧ୍ୟାହ୍ନ ଭୋଜନ ପାଇଁ ନେଇଯାଇଥିଲେ, ସେଠାରେ କଣ୍ଟା-ଚାମୁଚ ଆଦି ବ୍ୟବହାର କରିବା ବେଳେ ମୋତେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । କେବଳ ଅପଦସ୍ଥ ହେବା ବ୍ୟତୀତ ମୋର ଆଉ କିଛି ପ୍ରତିକାର ନଥିଲା ସେତେବେଳେ । କିନ୍ତୁ କାର୍ଲେ ମୋର ହାତକୁ ତାଙ୍କ ହାତରେ ଚାପିଧରି କହିଲେ—"ନା, ନା, ବଦଳିଯିବା ଆବଶ୍ୟକ ନାହିଁ । ହଁ, ଦୟାକରି ତୁମେ ଜଣେ ସାଧାରଣ-ବମ୍ବେ ରମଣୀକୁ ବଦଳି ଯାଅନା ।"

ଦିନେ ଆମେ ଷ୍ଟ୍ରାଣ୍ଡ୍ ବନ୍ଧ ଦୋକାନ ଆଡ଼କୁ ଚାଲି ଚାଲି ଯାଉଥିଲୁ ବେଳେ ସେ କହିଲେ ଯେ ଆମ ବୁଦ୍ଧିଙ୍କର ଧର୍ମ-ପିତା ସମାନ । ଚେଖଭ୍, ଫ୍ଲୋବର୍ଟ୍, ମାତାର୍ଲିଙ୍କ୍, ମାନ୍ସ୍‌ଫିଲ୍ଡ୍ ଓ ଭର୍ଜିନଆ ଉଲ୍ଫ୍ ପ୍ରଭୃତିଙ୍କ ଗମ୍ଭୀର ପ୍ରତ୍ୟୟପୂର୍ଣ୍ଣ ସ୍ୱର ଶୁଣି ଶୁଣି ଆମେ କଣ ବଢ଼ି ନ ଥିଲେ ? ଆମର ପ୍ରକୃତ ବାପ-ମା ଆମ ସମ୍ମୁଖରେ ଯାହା ସବୁ ଉଚ୍ଚାରଣ କରୁଥିଲେ ସେ ସବୁ ଥିଲା ଅସ୍ପଷ୍ଟ; ପକ୍ଷାନ୍ତରେ ଏଇ ସବୁ ମୃତବ୍ୟକ୍ତି ମାନେ ସେମାନଙ୍କ ଦର୍ଶନ ଦ୍ୱାରା ଆମର ଜ୍ଞାନକୁ ପୂର୍ଣ୍ଣ କରିଥିଲେ । ଇସାବେଲା ଡନ୍‌କାନ୍ ଆମକୁ କହିଥିଲେ ଯେ ସ୍ୱାଧୀନ ଅବସ୍ଥାରେ ହିଁ ପ୍ରେମର ଶ୍ରେଷ୍ଠ ଅନୁଭବ ଆସେ । ଆମେ ପରସ୍ପରକୁ କାତର ଅବସ୍ଥାରେ ଲକ୍ଷ୍ୟ କରିଥିଲୁ । ଆମେ ସେଇ ନାୟି-କାଙ୍କର ଆଦର୍ଶ ଅନୁସରଣ କରିପାରିଥାନ୍ତୁ କି ? ତା'ପରେ ମୋର ମୁହଁ ଲାଲ ପଡ଼ିଗଲା । କାର୍ଲୋ କହିଲେ—"ତୁମେ ମୋତେ ବିବାହ କରିପାର । ତୁମେ ତୁମର ଧୂସର-ଚକ୍ଷୁ ବନ୍ଧୁଙ୍କୁ ଭୁଲିପାର, ତୁମର ଉଦାସୀନ ସ୍ୱାମୀଙ୍କୁ ପରିତ୍ୟାଗ କରିପାର ଓ ମୋ ସହିତ ଆସିପାର ମୋ ଦେଶକୁ ।"

ଅନେକ ଶାନ୍ତ ରଜନୀ କଥା ଓ ସୁପ୍ତ ପୁଅର ମୁଦ୍ରିତ ନୟନ କଥା ମୋର ମନେ ପଡ଼ିଲା । ମୁଁ କହିଲି—"ଆମ ଭିତରେ ସମ୍ଭବତଃ ପ୍ରେମ ଘଟିପାରେ, ଗ୍ରୁଡ଼ପନ ଦେବାଭଳି ସ୍ୱଭାବ ମୋର ନାହିଁ ।"

ହସି ହସି କାର୍ଲୋ ଉତ୍ତର ଦେଲେ—"ମୁଁ ମଧ୍ୟ ବ୍ରୋନ୍‌ସ୍କି ନୁହେଁ ।"

ଦୋକାନଗୁଡ଼ିକ ଆଗରେ ଚାଲିବା ପାଇଁ ମୋତେ ଓଡ଼୍‌ହାଉସ୍ ରୋଡ୍ ଅତିକ୍ରମ କରିବାକୁ ଭଲ ଲାଗୁଥିଲା ଏବଂ ମୋର ନିୟମିତ ଖଦଡ଼ ଶାଢ଼ୀ ଦେଖି ଦୋକାନମାନେ ଓ ସେଠାରେ ବୁଲାବୁଲି କରୁଥିବା ମୋଟରଚାଳକମାନେ ମୋତେ ଜଣେ ଆୟା ବୋଲି ମନେ କରୁଥିଲେ ଓ ସୁସୁରି ମାରୁଥିଲେ । ମୋର ସୁନ୍ଦର ପୁଅ ଝିଅମାନେ ମୋର ବୋଲି ମନେ ହେଉନଥିଲେ, ଯଦି ଓ ମୁଁ ତାଙ୍କର କୁନି କୁନି ଆଙ୍ଗୁଳିଗୁଡ଼ିକ ହାତରେ ଧରି ଚାଲୁଥିଲି ।

ବାମ ପାର୍ଶ୍ୱରେ ଥିବା ଜନ୍‌ଙ୍କ 'ପିଏରେଷ୍ଟିସ' ଦୋକାନରେ କେତେବେଳେ ଟିକିଏ ଖାଇବା, କେତେବେଳେ ରେଡ଼ିଓ ଦୋକାନରେ ମିଃ ସ୍ପ୍ରଫଙ୍କ ହାଲ୍ଲୋ ଜ୍ଞାପନ କରିବା, ଅଥବା ଆମ ପରିଚିତ ଡାକ୍ତରଙ୍କ ଚିକିତ୍ସା-ସଦନରେ ମୁହଁ ମାରିବା ଥିଲା ଆମର ଭ୍ରମଣକାଳୀନ କାର୍ଯ୍ୟକ୍ରମ । କେତେବେଳେ ବା ଅଟକି ଯାଉଥିଲୁ ସୁନ୍ଦର ଚେହେରା ସମ୍ପନ୍ନ ଜାପାନୀଙ୍କ ଷ୍ଟୁଡ଼ିଓରେ; ଯିଏ କି

ବାରମ୍ବାର ଆମର ଫଟୋଉଠାଇଥିଲେ ଓ ତାଙ୍କ ପ୍ରେମିକା ନର୍ସିଙ୍କ ବିଷୟରେ ନାନା ଗପ ଶୁଣାଇଥିଲେ ।

ଠିକ୍ ତାଙ୍କର ଷ୍ଟୁଡ଼ିଓ ସମ୍ମୁଖରେ ରହୁଥିଲେ ଗୋଟିଏ ଦମ୍ପତି । ପ୍ରେମ-ଜନିତ କାରଣରୁ ଅସବର୍ଣ୍ଣ ବିବାହ କରିବା ଫଳରେ ସେମାନଙ୍କୁ ପାଦ-ପଥରେ କାଳ କାଟିବାକୁ ପଡୁଥିଲା । ପୁରୁଷଟି ଥିଲା ମାନ୍ଦ୍ରାଜ ଦେଶୀୟ ଓ ପତଳା । ସେ କାର୍ ସଫାକରି ଯେଉଁ ଅର୍ଥ ଉପାର୍ଜନ କରୁଥିଲା, ସେତିକରେ ସେ ଓ ତାର ମୋଟୀ ମହାରାଷ୍ଟ୍ରୀୟାଣୀ ସ୍ତ୍ରୀଟି ଚଳୁଥିଲେ ।

ସେଇ ଷ୍ଟୁଡ଼ିଓ ସାମ୍ନା ରାସ୍ତାର ଅପର ପଟରେ ଥିଲା ଶିଶୁମାନଙ୍କର ସ୍କୁଲ୍, ଯେଉଁଠିକି ମୋ ପିଲାମାନେ ପାଠ ପଢିବାକୁ ବଡ଼ ବାଧ୍ୟବାଧକତାରେ ଯାଉଥିଲେ ପ୍ରତିଦିନ ସକାଳରେ ।

ପାଖ ଘରଟିରେ ମୋ ବାପାଙ୍କର ବନ୍ଧୁ ମି. ବର୍ମା ରହୁଥିଲେ । ବାପା ଆମ ଘରକୁ ଆସିଲେ ସେ ଆମକୁ ଗ୍ୟାଁପାଇଁ ତାଙ୍କର ଛ' ମହଲା ଘରକୁ ଡାକୁଥିଲେ । ଯାହାର ଗୋଟିଏ ଚନ୍ଦ୍ରଶାଳାଥିଲା ଓ ଯାହାର ବାଡ଼ ସବୁ ମୁଗୁନି-ପଥରରେ ନିର୍ମିତ ହୋଇଥିଲା । ସେଠାରୁ ଆମେ ଦୂରରେ ଖଜୁରିଗଛ ଓ ନୀଳ ସମୁଦ୍ରର ଶୋଭା ଲକ୍ଷ୍ୟ କରିପାରୁଥିଲୁ ।

ବର୍ମାଙ୍କର ସ୍ତ୍ରୀ ଥିଲେ ସୁନ୍ଦରୀ । ତାଙ୍କର କେଶ ଥିଲା ବେଶ୍ ଦୀର୍ଘ, ଆଖି ଥିଲା କଳାବର୍ଣ୍ଣର । ଘରଟି ପୁରୁଣା ଓ ଅସୁନ୍ଦର ହେଲେ କଣ ହେବ, ତାଙ୍କର ସୌନ୍ଦର୍ଯ୍ୟ ତାହାର ସମସ୍ତ ଅଭାବକୁ ପୂରଣ କରିବାକୁ ସକ୍ଷମ ଥିଲା । ଗ୍ୟାଁ ଭୋଜିଦିନ ଶ୍ରୀମତୀ ବର୍ମା ଟିକିଏ ଚଢ଼ଚଢ଼ ହେଲାଭଳି ମନେ ହେଉଥିଲେ । ସେ ଆମକୁ ବିରକ୍ତି-ଜନକ ଓ ତାଙ୍କର ଅସମକକ୍ଷ ଭାବିବା ସ୍ୱାଭାବିକ ଥିଲା ।

ସେତେବେଳେ ଗୌର-ବର୍ଣ୍ଣର ଲୋକମାନେ ନିଜକୁ ବଡ଼ ମନେ କରୁଥିଲେ । ସୌନ୍ଦର୍ଯ୍ୟ ଓ ପରିଚ୍ଛନ୍ନତା ଯେଜି ବ୍ରିଟିଶ୍ ଲୋକେ ଆମ ମନଭିତରେ ଏକପ୍ରକାରର ଭ୍ରାନ୍ତ ଧାରଣା ସୃଷ୍ଟିକରି ଯାଇଥିଲେ । ଉତ୍ସବ-ଅନୁଷ୍ଠାନରେ ରଙ୍ଗୀନ୍ ପୋଷାକ ପିନ୍ଧିବା ଏକ ଅଭଦ୍ରତା ରୂପେ ବିବେଚିତ ହେଉଥିଲା । ମୂଷା-ରଙ୍ଗର ପୋଷାକ ପ୍ରତି ଥିଲା ସମସ୍ତଙ୍କର ବିଶେଷ ଆଗ୍ରହ । ଉଚ୍ଚସ୍ତରର ମହିଳା-ମାନେ ଅଳ୍ପ ଧୂସର କିମ୍ବା ଧଳାସିଆ ରଙ୍ଗକୁ ପସନ୍ଦ କରୁଥିଲେ ଯେହେତୁ ତାହା ଥିଲା ବ୍ରିଟିଶ୍ ରୁଚିଦ୍ୱାରା ସମର୍ଥିତ ।

କିନ୍ତୁ ନିମ୍ନ-ମଧ୍ୟବିତ୍ତ ଘରର ପୁରୁଷମାନେ ସେମାନଙ୍କ ସ୍ତ୍ରୀ-ଲୋକଙ୍କୁ ଗାଢ଼ ନୀଳ ଓ ଗାଢ଼ ସବୁଜ ରଙ୍ଗର ଲୁଗା ପିନ୍ଧାଇବା ଦିଗରେ ଆଗ୍ରହୀ ଥିଲେ,

ଯେମିତିକ ସେମାନେ ସବୁ ଅପରାହ୍ଣର ଖରାରେ ମୁକ୍ତାପରି ଉଜ୍ଜ୍ୱଳ ଦେଖାସିବେ । ମୂଲିଆଣୀମାନେ ମଧ୍ୟ ଗାଢ଼ ରଙ୍ଗଗୁଡ଼ିକୁ ପସନ୍ଦ କରୁଥିଲେ । ସେମାନେ କାଦୁଅ ଅଥବା ଗୋଳା ସିମେଣ୍ଟର ପାତ୍ର ବହନ କରି ଗୃହଲବେଳେ ତାଙ୍କର ନିତମ୍ବ ସବୁ ଦୋହଲୁଥିଲା ଓ ସେଇ ଗତିରେ ସେମାନେ ସବୁ ତେଲୁଗୁରେ ଗୀତ ଗାଉଥିଲେ । ମୋର ପୂର୍ବ ପରିଚିତ କୁଟୀରଟିର ପଛରେ ଥିବା ପୁରୁଣା ଘରଟିକୁ ଭାଙ୍ଗି ଦିଆଯାଉଥିଲା ଓ ତା' ସ୍ଥାନରେ ଗଢ଼ି ଉଠୁଥିଲା ନୂଆଟିଏ ।

ପ୍ରାୟ ବର୍ଷେ ପର୍ଯ୍ୟନ୍ତ ଆମ ଘରର ପଛପଟ ଅଗଣା ଘର-ଭଙ୍ଗା ଓ ଘର ତିଆରିର ନାନାପ୍ରକାର ଜିନିଷପତ୍ରରେ ପୂର୍ଣ୍ଣ ହୋଇ ରହିଥିଲା ଓ ଅନବରତ କୋଳାହଳରେ ମୁଖରିତ ହୋଇ ରହିଥିଲା । ମୁଁ ନୂତନ ଧୂନାଷ୍ଟ୍ର ନିର୍ମାଣ କାର୍ଯ୍ୟ ଦେଖି ଆନନ୍ଦଲାଭ କରୁଥିଲି; ଯେଉଁ ଶ୍ରମିକ ଓ ଓଭର୍‌ସିଅର୍‌ମାନେ ପାଣି ପିଇବାପାଇଁ ବା ଆସ୍ଥାର ବାକ୍ସରୁ ପାନ ଖଣ୍ଡେ ଖାଇବାପାଇଁ ଆମ ଘରକୁ ଆସୁଥିଲେ, ମୁଁ ସେମାନଙ୍କ ସହିତ ବନ୍ଧୁତା ସ୍ଥାପନ କରୁଥିଲି ।

ନିର୍ମାଣ କାର୍ଯ୍ୟରେ ଲାଗିଥିବା ଲୋକମାନେ ସବୁ ଆସିଥିଲେ ଆନ୍ଧ୍ର-ପ୍ରଦେଶରୁ । ସନ୍ଧ୍ୟା ଛ'ଟାରେ ଓଭର ସିଅର୍ ସେମାନଙ୍କୁ ମଜୁରି ଦେଉଥିଲେ । ତା'ପରେ ସ୍ତ୍ରୀ-ଲୋକମାନେ ଜମାହୋଇ ପଡ଼ୁଥିଲେ ପାଣି-କଳ ପାଖରେ, ହସି ହସି, ଗାଧୋଇବାପାଇଁ । ପୁରୁଷମାନେ ସେମାନଙ୍କର ସ୍ନାନଦୃଶ୍ୟ ଟିକିଏ ଦୂରରେ ବସି ଉପଭୋଗ କରୁଥିଲେ । ତା'ପରେ ସେମାନେ ରୁଟି ସେକ ପିଆଜ ଓ ଲଙ୍କା ଚଟଣି ଲଗାଇ ଖାଉଥିଲେ ।

ତାଙ୍କ ପିଲାମାନଙ୍କ ଉପରେ ସାରାଦିନ ଧୂଳି ପଡ଼ିବା ଫଳରେ ସେମାନେ ସବୁ ଛାଇ ଓ କାଦୁଅର କଣ୍ଢେଇ ସଦୃଶ ଦିଶୁଥିଲେ । କିନ୍ତୁ ଗାଧୁଆ ପରେ ସେମାନଙ୍କର ଦେହ ନୀଳ ପାନପତ୍ର ପରି ଉଜ୍ଜ୍ୱଳ ଦିଶୁଥିଲା । ସେମାନେ ମାଆମାନଙ୍କ କୋଳକୁ ଡେଇଁପଡ଼ି ଦୁଧ ଖାଉଥିଲେ, ଯଦିଓ ସେମାନଙ୍କ ମଧ୍ୟରୁ ଅନେକ ଥିଲେ ପାଞ୍ଚ-ଛ'ବର୍ଷର ।

ଟିଣ ତିଆରି ଅସ୍ଥାୟୀ ଘର ଗୁଡ଼ିକରେ ସେମାନେ ଶୋଉଥିଲେ ।

ରବିବାର ଦିନ ଗୁଡ଼ିକରେ ପୁରୁଷମାନେ ଦେଶୀ ମଦ ପିଉଥିଲେ ଓ ଘରକୁ ଫେରି ବଡ଼ ପାଟିରେ କଳି ଆରମ୍ଭ କରି ଦେଉଥିଲେ ସ୍ତ୍ରୀ-ମାନଙ୍କ ସହିତ । ତା'ପରେ ଆମେ କାନ୍ଦଣା ଶୁଣି ପାରୁଥିଲୁଁ ଓ ସେମାନଙ୍କୁ ଲଜ୍ଜାରୁ ବଞ୍ଚିତ କରିବା ପାଇଁ ଝରକା ବନ୍ଦ୍ କରି ଦେଉଥିଲୁ ।

ଜଳୁଲାଇ ଗଲା । ଆସିଲା ଅଗଷ୍ଟ । କିନ୍ତୁ ମୁଁ ତଥାପି ଧୂସର—ଚକ୍ଷୁ ବନ୍ଧୁଙ୍କ ପାଇଁ ଝୁରି ମରୁଥିଲି । କାର୍ଲୋଙ୍କୁ ପଚାରିଲି—"ମୁଁ କଣ ଅସୁନ୍ଦର ?"

"ନା, ତୁମେ ବେଶ୍ ସୁନ୍ଦରୀ"—ସେ ଉତ୍ତର ଦେଲେ—"କିନ୍ତୁ ସେଇଟା ଗୋଟାଏ ନିହାତି ନିର୍ବୋଧ..."

ଆମେ ଦୁହେଁ ଚାଲି ଚାଲି ଯାଇଥିଲୁ ସମୁଦ୍ର ଧାରଯାଏଁ ଲମ୍ବିଥିବା ସଂକୀର୍ଣ୍ଣ ଧୂଳିଆ ରାସ୍ତାରେ । ଗୋଟିଏ ହାତରେ ମୋର କଟୀ ବେଷ୍ଟନ କରି କାର୍ଲୋ ମୋତେ ନିବିଡ଼ରେ ଜାକି ଧରିଥିଲେ ।

କାର୍ଲୋ ପଚାରିଲେ—"ମୋର ଭବିଷ୍ୟତ କଣ୍ ହେବ ?"

ମୁଁ କହିଲି—"ମୋର ସତରେ କଣ୍ କିଛି ଭବିଷ୍ୟତ ଅଛି ?"

# ତିରିଶି

## ଯୌନ ଓ ସମବାୟ ଆନ୍ଦୋଳନ...

ଅନେକ ବିଳମ୍ବରେ ମୁଁ ଅନୁଭବ କଲି କ୍ଷୁଧା
ଅରଣ୍ୟର ଅଗ୍ନି ପରି ସବୁକିଛି ଖାଇବାକୁ ଚାହେଁ
ଯାହା ଆସେ ପଥେ ମୋର
ଏବଂ ପ୍ରତିଟି ନିଧନ
ମୋତେ ଦିଏ ଅଧିକ ବନ୍ୟତା ଓ ମୋତେ କରେ
ଅଧିକ ସୁନ୍ଦର ।

ଖୋଲା ପେରାମ୍ବୁଲେଟର୍‌ରେ ବସିଥିବା ଶିଶୁ,
ତୁମେ ଭାବୁଚ ମୁଁ କେବଳ ଦେଖୁଚି,
ତୁମେ ହେ ଗଛର ଅନ୍ତରାଳରେ ଠିଆ ହୋଇଥିବା
ପ୍ରେମିକ-ପ୍ରେମିକା, ତୁମେ ବି !
ହାତରେ ଖବର କାଗଜ ଓ
ମୁଣ୍ଡବାଲ ଉପରେ ଖରା ପକାଇ ବସିଥିବା ହେ ବୃଦ୍ଧ !
ମୋର ନିଆଁ ପରି ଦୃଷ୍ଟି ତୁମକୁ ଲୋଭ କରେ,

ମୋର ସ୍ନାୟୁମାନେ ଉଦଗ୍ର;
ଏବଂ ପେରାମ୍ବୁଲେଟର୍‌ରେ, ଗଛ ତଳେ ଓ
ପାର୍କ୍‌ର ବେଞ୍ଚ୍ ଉପରେ ତୁମକୁ ଶେଷ କରିବା ପରେ
ମୁଁ କେବଳ କେବଳ ପକାଇ ଦିଏଁ କୁଢ଼ କୁଢ଼
ପାଉଁଶ, ଆଉ କିଛି ନୁହଁ ।

କିନ୍ତୁ ମୋ ଭିତରେ—ସେଇ ଦୃଶ୍ୟ, ସେଇ
ବାସ୍ନା ଓ ସେଇ ଶବ୍ଦ ରହିଥିବ ଓ ରହିଥିବ ।
ମୋ ଭିତରେ ଶୋଇ ପଡ଼ିବ ସେଇ
ପେରାମ୍ବୁଲେଟର୍‌ର ଶିଶୁଟି, ସେ ଶୋଇବ ଓ
ଉଠିପଡ଼ିବ ଓ ଦେଖିବ ତାର ଦାନ୍ତ ଉଠି ନ ଥିବା
ମୁହଁର ହସ ।
ମୋ ଭିତରେ ହାତ ଧରାଧରି ହୋଇ ଚାଲିବେ
ପ୍ରେମିକ-ପ୍ରେମିକା ।
ଏବଂ ମୋ ଭିତର ଛଡ଼ା ଅନ୍ୟ କେଉଁଠି ଆଉ
ବସିବ ସେଇ ବୁଢ଼ାଟି ଓ ପାଇବ ଖରାର ସ୍ପର୍ଶ !
ମୋ ଭିତରେ ଜଳିଉଠିବେ ରାସ୍ତାର ବତୀସବୁ,
କାହାରେ ନର୍ତ୍ତକୀମାନେ ନାଚିବେ, ବୁଲିବେ
ନପୁଂସକମାନେ ରଙ୍ଗୀନ୍ ହୋଇ ଓ ବିଷାଦ ପ୍ରେମର
ଗୀତ ଗାଇବେ, ଆହତ କାନ୍ଦଣାର ଧ୍ୱନିରେ ।
ଏବଂ ମୋ ଭିତରେ ମୁମୂର୍ଷୁ ମାଆଟି ଆଶାର ଚକ୍ଷୁରେ
ଚାହିଁବ ଗୃହଦ୍ୱାର, ଖୋଜି ଖୋଜି ତାର ଶିଶୁ, ବର୍ତ୍ତମାନ
ଯେଉଁମାନେ ବଢ଼ିଗଲେଣି ଓ ଚାଲିଗଲେଣି
ଅନ୍ୟ ସହରକୁ, ଅନ୍ୟ କାହାର କାଖକୁ ।

୧୯୫୭ରେ କ୍ୟୁଫେପାରେଡ୍ ଏକ ବିଚ୍ଛିନ୍ନ ମାର୍ଗ ଥିଲା । ସେଠାରେ ଥିବା ସମସ୍ତ ଘରଗୁଡ଼ିକର ମୁହଁ ଥିଲା ସମୁଦ୍ର ଆଡ଼କୁ ।

ଏସ୍‌ପ୍ଲାନେଡ୍‌ର ଲୌହ ବେଞ୍ଚ୍‌ଗୁଡ଼ିକ ଉପରେ ପାର୍ସି ସାନାଟୋରିଅମ୍‌ର ବୟସ୍କ ଅନ୍ତେବାସୀମାନେ ନିଶ୍ଚଳ ଭାବରେ ବସି ଖରା ଉପଭୋଗ କରୁଥିଲେ । ସାନାଟୋରିଅମ୍‌ଟି ଗୋଟିଏ ଦାତବ୍ୟ ଅନୁଷ୍ଠାନ ଥିଲା । ମାତ୍ର ପାଞ୍ଚଟଙ୍କା ଦେଇ ସେଠାରେ ଗରିବମାନେ ନିଜ ପାଇଁ ବଖରାଟିଏ ପାଇ ପାରୁଥିଲେ । ସେମାନଙ୍କ ଭିତରୁ ଅଧିକାଂଶ ଥିଲେ ପେନସନ୍‌ଭୋଗୀ । ତାଙ୍କର ସନ୍ତାନମାନେ ନବୀନ

ଧରଣର ଫ୍ଲାଟ୍‌ରେ ସେମାନଙ୍କୁ ରଖିବାକୁ ଚାହିଁ ନଥିଲେ । ପ୍ରାୟ ପ୍ରତ୍ୟେକ ବୃଦ୍ଧ ଲୋକର ମୁହଁଟିରେ ନିଃସଙ୍ଗତାର ଯନ୍ତ୍ରଣା ମୁଁ ଲକ୍ଷ୍ୟକରିପାରିଥିଲି । ବେଳେବେଳେ ମୁଁ ବସୁଥିଲି ସେମାନଙ୍କ ନିକଟରେ । ଭାବୁଥିଲି, ଏକାନ୍ତ ଏକୁଟିଆ ଅବସ୍ଥାରେ ଛଟପଟ ହେଉଥିବା ଲୋକମାନେ ମୋ ସହିତ କଥାବାର୍ତ୍ତା ଆରମ୍ଭ କରିବେ; କିନ୍ତୁ କେହି କିଛି ହେଲେ ଉଚ୍ଚାରଣ କରି ନ ଥିଲେ ।

ବୃଲବକାଲୀଙ୍କ ପାଖରୁ ବେଲନ୍ ଇତ୍ୟାଦି କିଣିବା ପାଇଁ ପିଲାମାନେ ମା'ମାନଙ୍କ ସାଙ୍ଗରେ ପଇସା ପାଇଁ କଳି କରିବାର ଦୃଶ୍ୟ ବାରମ୍ବାର ଶୁଣା-ଯାଉଥିଲା । ବେଳେ ବେଳେ ମା'ମାନେ ଖୁବ୍‌ଜୋର୍‌ରେ ପାଟିକରି ଉଠିବା ଓ ଉଚ୍ଚସ୍ୱରରେ କାନ୍ଦୁଥିବା ପିଲାର ଗାଲରେ ଗୃପୁଡ଼ା ଦେବା ବି ପରିଲକ୍ଷିତ ହେଉଥିଲା । ସ୍ତ୍ରୀ-ଲୋକ ଲମ୍ବା ଛୁଟକନାରେ ତଆରି ଫ୍ରକ୍ ପିନ୍ଧୁଥିଲେ ଓ ଡାଲି ଗୁଡ଼ିଳ ଇତ୍ୟାଦି କିଣିବାକୁ ଥିଲେ ବଡ଼ ବଡ଼ ଅଖାମୁଣି ଧରି ବଜାର ଯାଉଥିଲେ । ସମସ୍ତେ ତାଙ୍କଭିତରୁ ଦିଶୁଥିଲେ ରକ୍ତହୀନ ଓ ଦୁର୍ବଳ । ମାଲୟାଲମ୍ ଭାଷାରେ ସେମାନଙ୍କୁ ଉପଜୀବ୍ୟ କରି ମୁଁ ଅନେକ ଗଳ୍ପ ଲେଖିଥିଲି । ତାଙ୍କର ଜାଲି ପର୍ଦ୍ଦା ଲଗା ଘର ଓ ତା' ମଧ୍ୟରେ ଟଙ୍ଗା ହୋଇ ଥିବା ଫଟୋଗୁଡ଼ିକୁ ଦେଖିପାରିଥିଲି ମୁଁ, କଳ୍ପନାରେ ସେମାନଙ୍କୁ ଅନୁସରଣ କରି ।

ସେଇ ଗପଗୁଡ଼ିକ ମାତୃଭୂମିରେ ପ୍ରକାଶ ପାଇଲା ପରେ ମୁଁ ବମ୍ବେର ପାଠକମାନଙ୍କଠାରୁ ଅନେକ ଚିଠି ପାଇଥିଲି । ସେମାନେ ଗପଗୁଡ଼ିକର ପ୍ରଶଂସା କରିଥିଲେ । ପ୍ରତ୍ୟେକ ଚିଠି ଥିଲା ମୋ ପାଇଁ ରୋମାଞ୍ଚକର । ଚରିତ୍ରମାନଙ୍କୁ ଘଣ୍ଟାଏକାଳ ଅନୁସରଣ କରି ସେମାନଙ୍କର ଚିନ୍ତାକୁ ରୂପ ଦେବା ଥିଲା ମୋର ରଚନା କୌଶଳ । ମୁଁ ଲୋକମାନଙ୍କୁ ଅଧ୍ୟୟନ କରିବାକୁ ଭଲପାଉଥିଲି, କାରଣ ମୋର ସେମାନଙ୍କ ପ୍ରତି ପ୍ରେମ ଥିଲା ଅସୀମ ।

ଅନେକ ସମୟରେ ଆମର ପାର୍ସି ଡାକ୍ତର ମୁଁ ସେମାନଙ୍କ ଜାତି ବିଷୟରେ ଖୁବ୍ ବେଶୀ ଗଳ୍ପ ଲେଖୁଚି କହି ହସୁଥିଲେ । ଡାକ୍ତର ମାସାନି ମୋତେ ସତର୍କ କରିଦେଉଥିଲେ ଯେ ପାର୍ସି ପଞ୍ଚାୟତ ଏ ବିଷୟ ଖୁବ୍ ଶୀଘ୍ର ଜାଣିବେ ଓ ମୋ ଉପରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । ମୁଁ ଯେ କେତେ କୋମଳତା ଓ ସ୍ନେହର ସହିତ ମୋ ଚରିତ୍ରମାନଙ୍କର ଚିତ୍ରଣ କରିଥିଲି, ସେ ବିଷୟରେ ସେ କେତେ କମ୍ ଜାଣିଥିଲେ, ତାହାହିଁ ଭାବୁଥିଲି ।

ପ୍ରାୟ ସେଇ ସମୟରେ ମୋର ଭାଇ ଡାକ୍ତର ମୋହନ ଦାସ ଆମର ଜଣେ ସୁନ୍ଦରୀ ସମ୍ପର୍କୀୟାଙ୍କୁ ବିବାହ କରିବାକୁ ସ୍ଥିର କଲେ । ମୁଁ ବିବାହ

ଉତ୍ସବରେ ଯୋଗ ଦେବା ଲାଗି ଉଡ଼ାଜାହାଜରେ କୋଚିନ ଯିବା ପୂର୍ବରୁ ପ୍ରଥମେ ଧୁର୍ନ୍-ଭଲ୍‌ପୋଦଓ୍ୱାଲାଙ୍କ ନୂଆକରି ଖୋଲିଥିବା ସୌନ୍ଦର୍ଯ୍ୟ-ସଦନକୁ ଗଲି, ମୋର ବ୍ରଣଗୁଡ଼ିକୁ ନିରାମୟ କରିବା ଆଶାରେ । ସେଠି ଜଣେ ବିଦେଶୀ ଥିଲେ,—ସମ୍ଭବତଃ ପୋଲାଣ୍ଡ ଦେଶୀୟ, ସେ ଉଷୁମ ବାମ୍ଫ ଦେଇ ମୋର ମୁହଁର ବ୍ରଣଗୁଡ଼ିକ ଚିପିଦେଲେ । ସେ ମୁହଁକୁ ପରିଷ୍କାର କରିସାରି ମୋତେ ଉପରମହଲାକୁ ପଠାଇ ଦେଲେ । ସେଠାରେ ଅପେକ୍ଷା କରିଥିଲେ ମିସ୍ ମାଷ୍ଟର । ସେ ମୋର ବାଳଗୁଡ଼ିକୁ ସୁନ୍ଦର କରି କାଟିଲେ । ସବୁ ସରିବା ପରେ ମୋର ପରିବର୍ତ୍ତିତ ରୂପ ଦେଖି ମୁଁ ବିସ୍ମିତ ହୋଇ ଯାଇଥିଲି । ମୋର ନବୀନ ରୂପକୁ ସୁହାଇବା ଭଳି ଓ ଅଧିକ ପରିସ୍ଫୁଟ କରିବା ପାଇଁ ମୁଁ ଲାଲ୍ ଓ ସୁନେଲି ଧଡ଼ିଥିବା ଗୋଟିଏ ନୀଳ ସିଲ୍କ୍ ଶାଢ଼ୀ ମଧ୍ୟ କିଣିଲି ।

ବେଶ୍ ଗର୍ବର ସହିତ ମୁଁ ଚଢ଼ିଥିଲି ଉଡ଼ାଜାହାଜ ନିକଟକୁ । ମୋର ମୁଣ୍ଡର ବାଳ ଏପଟ ସେପଟ ହୋଇ ଝୁଲୁଥିଲା । ପେରକ୍ସାଇଡ୍ ଦ୍ୱାରା ପରିଛନ୍ନ ହୋଇଥିବା ମୋର ଉପର ଓଠ ସକାଳର ସୂର୍ଯ୍ୟକିରଣର ସ୍ପର୍ଶରେ ଦିଶୁଥିଲା ସ୍ୱର୍ଣ୍ଣାଭ । ମୋ ଭାଗ୍ୟକୁ ଯେଉଁ ଭଦ୍ରଲୋକ ମୋ ପାଖ ସିଟ୍‌ରେ ବସିଥିଲେ, ସେ ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆରେ ପ୍ରକାଶିତ ମୋର କବିତାଟିଏ ହିଁ ପଢ଼ୁଥିଲେ । କଥା ପ୍ରସଙ୍ଗରେ ଯେତେବେଳେ ତାଙ୍କୁ କହିଲି ଯେ ମୁଁ ସେଇ କବିତାର ଲେଖିକା କେ· ଦାସ, ସେ ଏତେ ଖୁସି ହୋଇଗଲେ ଯେ ମୋତେ ଗୋଟିଏ ଟାଇପ୍ ରାଇଟର୍ ଉପହାର ଦେବାକୁ ଇଚ୍ଛାପ୍ରକାଶ କଲେ । ଅବଶ୍ୟ ଅତ୍ୟନ୍ତ କୃତଜ୍ଞତାର ସହିତ ତାହା ଗ୍ରହଣ କରିବାକୁ ମୁଁ ମନାକଲି । ମୁଁ କହିଲି— "ଆପଣ ଜଣେ ଅପରିଚିତ ।"

ସେ ଉତ୍ତର ଦେଲେ—"ପ୍ରତ୍ୟେକ ବନ୍ଧୁ ତ ଦିନେ ଅପରିଚିତ ହିଁ ଥିଲେ ।" ସେ ହସିଲେ ଓ ତାଙ୍କର ହଳଦିଆ ଓ ଅସମାନ ଦାନ୍ତସବୁ ଦେଖାଗଲା ।

ଭାଇଙ୍କ ବିବାହର ଦିନକ ପରେ ମୁଁ ଫେରିଲି ବମ୍ବେ । ସେତେବେଳେ ବର୍ଷା ହେଉଥିଲା ପ୍ରବଳ । ରାତି ବି ଯଥେଷ୍ଟ ଗଭୀର ହୋଇଯାଇଥିଲା । ମୋତେ ପାଛୋଟି ନେବାକୁ ସ୍ୱାମୀ ମଧ୍ୟ ବିମାନଘାଟୀକୁ ଆସି ନ ଥିଲେ । ମୁଁ ନିଜକୁ ହିକଲା ଭଳି ମନେ କଲି । ଲାଗିଲା ଯେମିତି କି ମୁଁ ଅବାଞ୍ଛିତ । ସେଇ ସମୟରେ ସହସା ଜଣେ ଭଦ୍ରମହିଳାଙ୍କୁ ଠାବ କରିପାରିଲି, ଯାହାଙ୍କ ସହିତ କଲିକତାରେ ଆମ ପରିବାରର ବନ୍ଧୁତ୍ୱ ଥିଲା । ତାଙ୍କ କାର୍‌ରେ ସେ ମୋତେ ଆମ ଘରେ

ପହଞ୍ଚାଇ ଦେଲେ । ମୁଁ ଘରେ ପାଦ ଦେଲାବେଳକୁ—ପିଲାମାନେ ସବୁ ଗାଢ଼ ନିଦରେ ଶୋଇ ସାରିଥିଲେ । ସ୍ୱାମୀ ଅତ୍ୟନ୍ତ ଉଦାସୀନ ଭାବରେ ମୋର ବହୁତ ବିଳମ୍ବ ହୋଇଛି ବୋଲି ମନ୍ତବ୍ୟ କଲେ ।

ମୁଁ ପଚାରିଲି—"ତୁମେ କାହିଁକି ଉଡ଼ାଜାହାଜ ନିକଟକୁ ଆସିଲ ନାହିଁ ? ତୁମେ କଣ୍ ମୋତେ ଏତେ ଟିକିଏ ବି ଭଲ ପାଅନା ।" ମୁଁ ସ୍ୱାମୀଙ୍କ ଜାବୁଡ଼ି ଧରି କାନ୍ଦିଲି । ସେ କହିଲେ—"ମୁଁ ବଡ଼ କ୍ଳାନ୍ତ । ନିଦ ଲାଗୁଛି । ଆମେ କାଲି ସକାଳେ କଥାବାର୍ତ୍ତା ହେବା ।"

ଠିକ୍ ସେଇ ବର୍ଷ ମୋ ପୁଅ ମନୁ ହେଲା ଏକ ପ୍ରକାରର ଫୁସ୍‌ଫୁସ୍ ରୋଗରେ ପୀଡ଼ିତ । ତା' ପାଟିରୁ ଖାଲି ଖଣ୍ଡ ଖଣ୍ଡ ନାଲିସିଆ କଫ ପଡ଼ିଲା । ମୁଁ ସେସବୁକୁ ତଉଲିଆରେ ପୋଛି ନେଇ ପରେ ଗରମ ପାଣିରେ ଭିଜେଇ ତଉଲିଆକୁ ପରିଷ୍କାର କରୁଥିଲି । ସେସବୁ ଅଠାଳିଆ ଥିଲା, ଚୁଇଁଙ୍ଗମ୍ ପରି । ଆମର ଡାକ୍ତର ତାକୁ ପ୍ରତ୍ୟହ ଷ୍ଟ୍ରେପ୍‌ଟୋମାଇସିନ୍ ଇଞ୍ଜେକ୍‌ସନ୍ ଦେଲେ । ସେ ଯେତେବେଳେ କାଶୁଥିଲା, ମନେ ହେଉଥିଲା ଆଉ ଶେଷ ହେବ ନାହିଁ । ସେ ଶୋଇଥିଲା ବେଳେ ବି ମୋତେ ତା' କାଶ ଶୁଣିଲାଭଳି ଲାଗୁଥିଲା ।

ଦିନେ ଦିନେ ରାତିରେ ସେ ନିଦରୁ ଉଠି ପଡ଼ୁଥିଲା । ନିଃଶ୍ୱାସ ନେଇ ନ ପାରି ଛଟପଟ ହୋଇଯାଉଥିଲା । ତାର ମୁହଁ ପଡ଼ିଯାଉଥିଲା ଶେତା ଓ ଶୁଖିଆରେ ତାର ଆଖି ଡିମା ଡିମା ହୋଇ ଯାଉଥିଲା । କିନ୍ତୁ ମୁଁ ପ୍ରତି ସନ୍ଧ୍ୟାରେ କୋଲାବା ବହି ଦୋକାନରୁ ତା' ପାଇଁ ହାସ୍ୟ-ବ୍ୟଙ୍ଗର ବହି ଆଣି ଦେଉଥିଲି, ଯେଉଁଗୁଡ଼ିକ ପଢ଼ିଲେ ସେ ତାର କଷ୍ଟ ହୁଏତ ଭୁଲିଯାଇ ପାରିବ ବୋଲି । ସବୁବେଳେ ଆକ୍‌ସିଜେନ୍ ସିଲିଣ୍ଡର୍ ଟି ତା' ବିଛଣା ନିକଟରେ ସଜ ହୋଇ ରହିଥିଲା ଏବଂ ନିଃଶ୍ୱାସ-ଜନିତ କଷ୍ଟ ହେବା ମାତ୍ରେ ମୁଁ ନିଜେ ତାହା ସଞ୍ଚାଳନ କରୁଥିଲି । ମୁଁ ଖାଲି ଭାବୁଥିଲି, କେଉଁଦିନ ସେ ଆରୋଗ୍ୟ ହେବ ଓ ମୋତେ ଜାକି ଧରିବ । ମଝିରେ ମଝିରେ ସେ ପଚାରୁଥିଲା—"ମା, ମୁଁ କଣ୍ ମରିଯିବି ?" ମୁଁ ତାକୁ ଖୁବ୍ ଜୋର୍‌ରେ ଜାକିଧରି ମୁଣ୍ଡ ହଲାଇ କହୁଥିଲି "ନା—ନା—ନା"

ମନୁ ଆରୋଗ୍ୟ ହେବା ପରେ—

ମୁଁ ପୁଣି ପ୍ରେମ, କଳା ଓ ସାହିତ୍ୟ ରାଜ୍ୟକୁ ଫେରିଗଲି । ପଢ଼ିଲି ପ୍ରଚୁର । ସକାଳେ ନ ଗାଧୋଇ, ବାଳ ନ କୁଣ୍ଡାଇ ପଢ଼ୁଥିଲି । କେବଳ ଯାହା

ସନ୍ଧ୍ୟାବେଳେ ଟିକେ ସୁନ୍ଦର ଦିଶିବାକୁ ଯତ୍ନ କରୁଥିଲି । ମୋତେ ତେଲ ଲଗାଇ ଗାଧୋଇବାକୁ ଭଲ ଲାଗୁଥିଲା, କିନ୍ତୁ ନିଜ ହାତରେ ନିଜେ ସେଇକାମ କରିବାକୁ କୁଣ୍ଠିତ ଥିଲି । ଅନେକ ସମୟରେ ମୁଁ ଗାଧୁଆ ଘରର କାଠ ଚଉକି ଉପରେ ବସି କୌଣସି ଉପନ୍ୟାସ ପଢ଼ୁଥିଲି ଓ ବୃଦ୍ଧା ଆୟା ମୋ ପିଠିରେ କୌଣସି ଆୟୁର୍ବେଦୀ ତେଲ ଲେପି ଘସୁଥିଲା । ପିଲାମାନେ ମୋର ଗାଧୁଆ ଦେଖି ଖୁସି ହେଉଥିଲେ ।

ଧନେଶବାଲ୍ୟାଦି ଥିଲା ମୋର ପ୍ରିୟ ଆୟୁର୍ବେଦୀ ତେଲ । ତାହା ମୁଁ କୋଟ୍‌ଟାକେଲ୍‌ରୁ ବିଖ୍ୟାତ ଆୟୁର୍ବେଦ୍ୟଶାଳାରୁ ଡାକ ଯୋଗେ ମଗାଉଥିଲି । ମୋ ସ୍ୱାମୀଙ୍କ ମତରେ ସେଇ ତେଲଟିର ବାସ୍ନା ଥିଲା ସବୁଠାରୁ ବେଶୀ ଯୌନ-ଉତ୍ତେଜକ । ତାଙ୍କର ଅବଚେତନରେ ପୂର୍ଣ୍ଣ ହୋଇ ରହିଥିଲା ଯୌନ-କାମନା ଅଥବା, ଭାରତର ସମବାୟ ଆନ୍ଦୋଳନ । ସେଇ ଦୁଇଟିଯାକ ମୋ ପକ୍ଷରେ ଥିଲା ବିରକ୍ତିକର । କିନ୍ତୁ ଉଭୟକୁ ମାନିନେବା ଛଡ଼ା ମୋର ଗତ୍ୟନ୍ତର ନ ଥିଲା । ତା'ଛଡ଼ା ସେସବୁ ବିଷୟରେ ମୁଁ ଛଳନା-ପୂର୍ଣ୍ଣ ଆଗ୍ରହ ପ୍ରକାଶ କରି ଶିଖିଲି । ଯଦିଓ କେବେ ବି ସେସବୁ ପ୍ରତି ମୋଠାରେ କୌତୁହଳ ଜାଗ୍ରତ ହୋଇ ନ ଥିଲା ।

ଦିନେ ସ୍ୱାମୀ କହିଲେ—"ମୋ ଉପରିକ ଆଫିସର୍‌ଙ୍କ କହିବା ଅନୁସାରେ ସମବାୟ ଆନ୍ଦୋଳନ ବିଫଳ ହୋଇଛି; କିନ୍ତୁ ସମବାୟ ଆନ୍ଦୋଳନ ନିଶ୍ଚୟ ସଫଳ ହେବ ।"

ମୋର ଜୋର୍‌ରେ ହସିବାକୁ ଇଚ୍ଛା ହେଉଥିଲା ।

"ତୁମର ଉପରିକ କିଏ ?" ମୁଁ ପଚାରିଲି ।

"ଭେଙ୍କଟପ୍‌ପାୟା, ଜଣେ ପୁରାତନ ଆଇ. ସି. ଏସ୍. ଅଫିସର । ତୁମେ ତାଙ୍କ ନାମ ଶୁଣିନ ?"—ସେ କହିଲେ ।

ତା'ପରେ ମୋର ସ୍ୱାମୀ ଏକରକମ ରାଗିଗଲେ । ସେ ଭାବିଲେ ସମବାୟ ସମ୍ପର୍କରେ ସାଂପ୍ରତିକ ଘଟଣା ବିଷୟରେ ମୁଁ କୌଣସି ଖବର ରଖି ନାହିଁ ।

ସେ କହିଲେ —"ତୁମେ ରୁରାଲକ୍ରେଡ଼ିଟ୍ ସର୍ଭେ କମିଟି ବା ଗ୍ରାମ୍ୟ ଋଣ ଅନୁଧ୍ୟାନ ସମିତିର ସମ୍ମାନିତ ବିବରଣୀଟିକୁ ଦିନେ ବି ସ୍ପର୍ଶ କରିନ ।"

ମୁଁ କହିଲି—"କିନ୍ତୁ ମୁଁ ତୁମକୁ ପ୍ରତ୍ୟେକ ରଜନୀରେ ପ୍ରେମଦାନ କରୁଛି । ସେତିକି କଣ୍ ଯଥେଷ୍ଟ ଭଲ ନୁହଁ ?"

# ଏକଟିରଶ୍ମି

## ସେ ମୋର ଆଗେ ଆଗେ ନୀରବରେ ଚାଲୁଥିଲେ···

ଆମର କାମନାସବୁ ଥିଲା ଯେମିତି
ଅନିର୍ଦ୍ଦିଷ୍ଟ କୌଣସି ଦେଶର
ବହୁରଙ୍ଗୀ ପତାକା ସଦୃଶ ।

ମୃତ ଶିଶୁମାନେ ଛାଡ଼ି ଯାଇଥିବା ଖେଳନା ପରି
ଆମେ ସବୁ କ୍ଲାନ୍ତ ଶ୍ରାନ୍ତ, ତନ୍ଦ୍ରାଳ ଭାବରେ
ପଡ଼ି ରହୁଥିଲୁ ବାଲିଛଣାରେ ।
ଏବଂ ପଚାରିଲୁ ପରସ୍ପରକୁ—
କଣ୍ ଆମର ପ୍ରୟୋଜନ ?
ପରସ୍ପର ଅବୟବକୁ ଖଣ୍ଡ ଖଣ୍ଡ କରିବା
ଥିଲା ଏକମାତ୍ର ପ୍ରେମ,
ଯେପରି ଆସାମୀମାନେ ଖଣ୍ଡ ଖଣ୍ଡ କରନ୍ତି
ମାଟି ପିଣ୍ଡସବୁ ମଧ୍ୟାହ୍ନରେ ।

ଉତ୍ତପ୍ତ ସୂର୍ଯ୍ୟର ତଳେ ଆମେ ଥିଲୁ ମାଟି ।
ଆମ ଶିରା ପ୍ରଶିରାରେ ଥିଲା ପ୍ରଚଣ୍ଡ ଜ୍ୱଳନ
ଏବଂ ପାର୍ବତ୍ୟ ଶୀତଳ ରାତି ପାରି ନ ଥିଲା
ଉପଶମ କରି ସେ ଉତ୍ତାପ ।
ଯେତେବେଳେ ସେ ଓ ମୁଁ
ହୋଇଥିଲୁ ଏକ ଓ ଏକାତ୍ମ
ଆମେ କେହି ପୁରୁଷ କମ୍ବା ନାରୀ ନ ଥିଲୁ ।
ଆଉ କିଛି କଥା ନ ଥିଲା; ସବୁ ଶବ୍ଦ
ବନ୍ଦୀହୋଇ ରହୁଥିଲା ବୟସ୍କ ରାତିର ବାହୁ ଆଲିଙ୍ଗନରେ ।

ଆମେ ବଢ଼ିଲୁ ଅନ୍ଧାରରେ, ଯେପରି ଆମେ
ଗାଇଲୁ ନୀରବରେ ଓ ତାର ପ୍ରତିଟି ଧ୍ୱନି
ପ୍ରକାଶିତ ହେଲା ସମୁଦ୍ରରୁ, ପବନରୁ, ମାଟିରୁ
ଏବଂ ଅର୍ଦ୍ଧବୃତ୍ତାକାର ବିଷାଦ ରାତିରୁ ।

ନଭେମ୍ବର ମାସ । ଅତିଥିମାନଙ୍କ ସଂଖ୍ୟା ସେତେବେଳେ ବହୁତ କମ୍ । ହୋଟେଲ୍‌ଭଡ଼ା ମଧ୍ୟ ଅ-ଋତୁ ଥିବାରୁ କମିଯାଇଥିଲା । ସେଇ ସମୟରେ ସ୍ୱାମୀ ମୋତେ ଓ ପିଲାଙ୍କୁ ନେଇ ପଞ୍ଚଗାନି ଗଲେ, ଛୁଟି ଉପଭୋଗ କରିବାକୁ । ସେଠାରେ ଆମେ ସମସ୍ତେ ରହିଲୁ ଗୋଟିଏ ହୋଟେଲ୍‌ରେ । ବଙ୍ଗଳାଟି ଥିଲା ବୁଲି ଦେଖିବାପାଇଁ ପ୍ରଶସ୍ତ । ତାର କାନ୍ଥରେ ପୁରୁଣା ଓ ଲବ୍ଧ ଆୟୁଥିବା ଘୋଟକ, ଘୋଡ଼ାଚଢ଼ାରେ ଅଭ୍ୟସ୍ତ, ନିଶୁଆ କ୍ଷୁଦ୍ରାକୃତିର ମଣିଷଙ୍କର ଛବିଟଙ୍ଗା ହୋଇଥିଲା ।

ହୋଟେଲ୍‌ଟି ଥିଲା ପାହାଡ଼ର ଠିକ୍ ଉପରେ । ଆମେ ଟାକ୍‌ସିରେ ବୁଲି ବୁଲି ଯାଇଥିବା ନାଲିଆ ଓ ସଂକୀର୍ଣ୍ଣ ରାସ୍ତାରେ ଉପରକୁ ଉଠୁଥିଲୁ । ବାଟରେ ଏକାଧିକ ପାର୍ବତ୍ୟ ଉପତ୍ୟକା ପଡ଼ିଲା । ସେଠାରୁ ପିଲାଙ୍କ ହର୍ଷର ଶବ୍ଦ ଶୁଣା ଯାଉଥିଲା ଆମକୁ । ଦୁଇ ପାର୍ଶ୍ୱର ଗହନ ଅରଣ୍ୟରେ ଭରି ରହିଥିଲା ଲାଲ୍‌ବେରି ଫଳର ଗଛ । ସାୟନ୍ତନ ସୂର୍ଯ୍ୟକିରଣର ସ୍ପର୍ଶରେ ସେସବୁ ଦିଶୁଥିଲା ମଣିମାଣିକ୍ୟ-ପରି ଉଜ୍ଜ୍ୱଳ । ଆମର ହୋଟେଲ୍‌ଟିର ଚାରିପାଖ ମଧ୍ୟ ନାନାବିଧ ଗଛଲତାରେ ପରିବେଷ୍ଟିତ ହୋଇ ରହିଥିଲା ।

ଆମକୁ ଦୁଇଟି କୋଠରି, ଗୋଟିଏ ବଡ଼ ଆକାରର ସ୍ନାନଘର ଓ ଗୋଟିଏ ବାରଣ୍ଡା ମିଳିଥିଲା ହୋଟେଲ୍‌ରେ । ବାରଣ୍ଡାଟିରେ ଆମେ ସକାଳେ ବସି ପ୍ରଥମ ଚା' କପ୍ ଖାଉଥିଲୁ । ପିଲାମାନେ ବଟର୍‌ଲଗା ଟୋଷ୍ଟ୍ ଓ ବ୍ରିଟାନିଆ ବିସ୍କୁଟ୍ ଖାଉଥିଲେ । ପବନ ବହିବା ମାତ୍ରେ ଉପତ୍ୟକାରୁ ଭାସି ଆସୁଥିଲା ନାନାପ୍ରକାର ଶବ୍ଦ । ଶଗଡ଼ ଗାଡ଼ିର ଘଣ୍ଟି ଓ ଚକ ଶବ୍ଦ ମଧ୍ୟ ଆମକୁ ଶୁଣାଯାଉଥିଲା ।

ପହଞ୍ଚିବା ପରେ—ସ୍ୱାମୀ କହିଲେ—ବହୁତ ବିଳମ୍ବ ହେଲାଣି, ଆଉ ସେଇ ପାର୍ବତ୍ୟ ଉପତ୍ୟକା ଆଡ଼େ ଯାଇ ହେବ ନାହିଁ । ତାଙ୍କୁ ବେଶ୍ ଭୋକ ହୋଇ ସାରିଥିଲା, କ୍ଲାନ୍ତି ବି ଆସି ଯାଇଥିଲା । ହୋଟେଲର ପରିଚାରକ—ଆମକୁ ନିର୍ଦ୍ଧାରିତ ସମୟ ପୂର୍ବରୁ ରାତିର ଖାଦ୍ୟ ଆଣି ପରିବେଷଣ କଲା । ପିଲାମାନଙ୍କୁ ସାଙ୍ଗରେ ଧରି ଆମେ ଖୁବ୍ ଶୀଘ୍ର ଗାଢ଼ ନିଦରେ ଶୋଇପଡ଼ିଲୁ ସେଦିନ । ଦେହରେ ହୋଟେଲ୍ ପ୍ରଦତ୍ତ ଲାଲ୍‌ରଙ୍ଗର କମ୍ବଳ ଟାଣି ହେବାକୁ ପଡ଼ିଥିଲା ଆମକୁ । ଠିକ୍ ଗାଢ଼ ନିଦ ଘୋଟି ଆସିବା ପୂର୍ବରୁ ମୁଁ ପେଚାର ରବ ଓ ଜଙ୍ଗଲରେ ସଂଚାଳିତ ପବନର ସୁ-ସୁ ଶବ୍ଦ ଶୁଣିପାରିଥିଲି ।

ସକାଳ ହେବାମାତ୍ରେ ହୋଟେଲ୍‌ର ପରିଚାରକ ଆସି ଆମ ଦରଜା ଠକ୍ ଠକ୍ କଲାରୁ ଆମ ନିଦ ଭାଙ୍ଗିଲା । ଆମେ ତା'ଫଳରେ ପାର୍ବତ୍ୟ ପ୍ରଭାତର

ସୁଷମା ସନ୍ଦର୍ଶନ କରିପାରିଲୁ । କୁହୁଡ଼ିର ଜାଲ ଭିତରେ ବନ୍ଦୀ ହୋଇ ରହିଥିଲି ପ୍ରଭାତ ଆଲୋକ । ପ୍ରାତଃ ଭୋଜନ ପରେ ପରେ ମୋଟା ପଶମ ପୋଷାକ ପିନ୍ଧି ଆମେ ପାଦଦେଶରେ ଥିବା ବଜାର ଦେଖିବାକୁ ଯାଇଥିଲୁ । ପିଲାମାନେ ଟଟ୍ଟୁଘୋଡ଼ାରେ ବସିଲେ, ତାଙ୍କ ପଛରେ ଚାଲିଲୁ ଆମେ । ମୁଁ ସ୍ୱାମୀଙ୍କ ସହିତ ତାଳ ଦେଇ ଚାଲିପାରୁ ନ ଥିଲି, କାରଣ ପଥପାର୍ଶ୍ୱର ବେରି ଫଳ କମ୍ବା ଫର୍ନ ତାଙ୍କୁ ଆକର୍ଷଣ କରୁ ନ ଥିଲା । ପକ୍ଷାନ୍ତରେ ମୁଁ ସୁନ୍ଦର ଫର୍ନ ଦେଖିଲେ ଅଟକି ଯାଉଥିଲି, ଗୋଟେଇ ନେଇ ଶୁଙ୍ଘି ପକାଉଥିଲି; ବେରି ଫଳଟିଏ ପାଇଲେ ସାଉଁଟି ନେଇ ଥରେ ଅଧେ କାମୁଡ଼ି ଦେଉଥିଲି । ତେଣୁ ସେ ସବୁବେଳେ ଥିଲେ ମୋଠାରୁ କେଇପାଦ ଆଗରେ । ବଜାରରେ ଦୋକାନ ସବୁ ଧାଡ଼ି ଧାଡ଼ି ହୋଇ ବସିଥିଲା । ବାଙ୍କ୍‌କାଠରେ ତିଆରି ହୋଇଥିବା ବାଡ଼ି ବିକା ଯାଉଥିଲା । ବାଡ଼ିଗୁଡ଼ିକର ମୁଣ୍ଡି ଗୁଡ଼ିକ ଶ୍ୱାନ-ମୁଣ୍ଡପରି ଦେଖାଯାଉ ଥିଲା ।

ସେଠାରେ ଥିବା ଜଣେ ମୋଚି ଆମ ପଛେ ପଛେ ହୋଟେଲକୁ ଆସି ସମ୍ବର ଚମଡ଼ାରେ ଜୋତା କରିଦେବା ପାଇଁ ଆମ ପିଲାମାନଙ୍କ ପାଦର ମାପ ନେଇଥିଲା ।

ଖରାବେଳେ ସମସ୍ତେ ଶୋଇଲେ, ଏପରିକି ହୋଟେଲ୍‌ର ପରିଚାରକମାନେ ମଧ୍ୟ । ମୁଁ ତାହାକୁ ପ୍ରକୃଷ୍ଟ ସମୟ ମନେକରି ବାହାରିଗଲି ପଦାକୁ । ଚାଲି ଚାଲି ଅରଣ୍ୟକୁ । ଅନେକ ଅନେକ ଅଚିହ୍ନା ଫୁଲ ମୁଁ ଦେଖିପାରିଲି ଅରଣ୍ୟରେ । ଫଗୁଣ୍ଡ କଳି କଣ୍ଟା । ଅନେକ ଦିନ ପର୍ଯ୍ୟନ୍ତ ଫୁଲ ସବୁ ସତେଜ ରହିଥିଲା । ମୁଁ ଶୁଖିଲା ପତ୍ର ଉପରେ ପାଦ ଥାପି ଥାପି ଚାଲିଥିଲା ବେଳେ ଗଛ ସନ୍ଧିରୁ ଗୁଣ୍ଡୁଚି ମୂଷାମାନେ ମୋତେ ଦେଖି ଟୁକ୍-ଟୁକ୍ ଶବ୍ଦ କରୁଥିଲେ ଓ ପକ୍ଷୀମାନେ କିଚିରି ମିଚିରି ହେଉଥିଲେ ।

ହୋଟେଲ୍‌କୁ ଫେରିଆସି ମୁଁ ଗୋଟିଏ ମଜା କଲି । ଶନିବାର ଦିନ ହୋଟେଲ୍‌ର କାନ୍ଥ ପାଖରେ ଥିବା ସବୁଠାରୁ ବଡ଼ ଗଛଟି ନିକଟରେ ଅନୁଷ୍ଠିତ ହେବାକୁ ଯାଉଥିବା ଏକ ଟୀ' ଭୋଜି ପାଇଁ ନିମନ୍ତ୍ରଣ କରି ମୁଁ ମୋ ଦୁଇପୁଅ—ମନୁ ଓ ଚନ୍ଦନଙ୍କୁ ଏକଚିଠି ଲେଖିଲି । ଚିଠି ଶେଷରେ ମୁଁ ଲେଖିଲି ଇତି ତୁମର ଗୁଣ୍ଡୁଚି ମୂଷା । ଚିଠିଟି ଡାକରେ ପକାଇଦେଲି । ପିଲାମାନେ ଚିଠି ପାଇଲା ମାତ୍ରେ ଖୁସିରେ ତାଳିମାରି ନାଚି ଉଠିଲେ । ଶନିବାର ଦିନ ଆସିଲା । ମଧ୍ୟାହ୍ନ ଭୋଜନ ଶେଷ ହେବାପରେ ମୁଁ ତାଙ୍କୁ ଶୁଆଇ ପକାଇଲି ଏବଂ ଗଛମୂଳେ ସେଇ ଅବସରରେ କାଗଜ ପ୍ଲେଟ୍ ସଜାଇ ଭୋଜିର ବ୍ୟବସ୍ଥା କରିଦେଲି । ଠିକ୍ ଚାରିଟା

କେତେ ପିଲାଙ୍କୁ କନ୍ଧରୁ ଉଠାଇ, ସେମାନଙ୍କୁ ନାଲି ରଙ୍ଗର ସ୍ୱେଟର୍ ପିନ୍ଧାଇ ସ୍କୁଲକୁ ନେଇଗଲି ।

ସେମାନେ ଗଛ ମୂଳେ ପହଞ୍ଚି ଗୁଣ୍ଡୁଚିକୁ ଖୋଜିଲେ । କାହିଁ ସେ ? ମୁ କହିଲି—"ବୋଧହୁଏ ସେମାନେ ତୁମକୁ ବିଶ୍ୱାସ କରୁନାହାନ୍ତି ।" କାଗଜ ପ୍ଲେଟରେ ପରିବେଷିତ କେକ୍ ଓ ବାଦାମ ବେଶ୍ ରୁଚିକର ଥିଲା । କିନ୍ତୁ ମନୁ କିଛି ପରିମାଣରେ ନିରାଶ ହୋଇ ଯାଇଥିଲା । ସେ କହିଲା—"ମା, ଖୁବ୍ ଶୀଘ୍ର ମୋତେ ଗୁଣ୍ଡୁଚି ମୂଷାଙ୍କର ଓ ପକ୍ଷୀଙ୍କର ଭାଷା ଶିଖାଇ ଦେବ ନିଶ୍ଚୟ ।" ଭଲ ଭାବରେ ପଶୁ ଓ ପକ୍ଷୀଙ୍କ ସହିତ ମୁଁ କଥାବାର୍ତ୍ତା କରିପାରେ ବୋଲି ପିଲାମାନେ ବିଶ୍ୱାସ କରୁଥିଲେ । ବେଳେ ବେଳେ ସ୍ୱାମୀଙ୍କଠାରୁ ମଧ୍ୟ ଅନୁରୂପ ଧାରଣାର ସୂଚନା ମିଳୁଥିଲା । ଯେତେବେଳେ ବୁଲା କୁକୁରଟିଏ ଆସି ଲାଞ୍ଜ ହଲାଇ ଠିଆ ହେଉଥିଲା, ସେ କହୁଥିଲେ ମୋତେ, —"ତୁମର ବନ୍ଧୁଟିକୁ ଏଠାରୁ ଚାଲିଯିବାକୁ କହିଦିଅ । କୁକୁରମାନଙ୍କୁ ମୁଁ ବଡ଼ ଘୃଣାକରେ ।"

ସେଇ ସମୟରେ ମୋର ରୋଗ ଥିଲା ନିତାନ୍ତ ଅନିୟମିତ ଓ ଯନ୍ତ୍ରଣା-ଦାୟକ । ସେଇ କଷ୍ଟରୁ ମୁଁ ଅନ୍ୟମାନଙ୍କ ସହିତ ଉପତ୍ୟକାକୁ ବୁଲିଯାଇ ପାରୁ ନ ଥିଲି ସବୁଦିନେ । ହୋଟେଲ୍‌ର ସମ୍ମୁଖ ପାହାଚରେ ବସି ରହୁଥିଲି । ଗୋଡ଼ ଦୁଇଟିକୁ ଯନ୍ତ୍ରଣା ହେଉଥିଲା ସିନା, କିନ୍ତୁ ମୋ ଆଖି ପଞ୍ଚଗାନର ପ୍ରାକୃତିକ ମନୋହର ଦୃଶ୍ୟ ଉପଭୋଗ କରିବାରେ ଲାଗି ରହୁଥିଲେ ।

ସେଇ ହୋଟେଲ୍‌ର ଅନ୍ୟ ଏକ କୋଠରିରେ ରହୁଥିଲେ ଜଣେ ଯୁବକ ! ତାଙ୍କ ସହିତ ତାଙ୍କର ଭଲମନ୍ଦ ବୁଝିବା ପାଇଁ ପରିଚାରକଟିଏ ବି ଥିଲା । ସାଙ୍ଘାତିକ ସ୍ନାୟୁ-ଦୌର୍ବଲ୍ୟ ରୋଗରେ ପୀଡ଼ିତ ହେବା ଫଳରେ ଯୁବକ ଜଣକ ସେଠାକୁ ବିଶ୍ରାମ ପାଇଁ ଆସିଥିଲେ । ଦିନେ ସନ୍ଧ୍ୟାରେ ସେ ଆସିଲେ ମୋ ନିକଟକୁ । ସେତେବେଳେ ମୁଁ ଏକା । ସେ ପଚାରିଲେ—"ଦୟାକରି ମୋ ନଖ ଗୁଡ଼ିକୁ କାଟିଦେବେକି ? ଯଦି ଏସବୁକୁ ସାଇଜ୍ କରିଦିଆ ନଯାଏ ତେବେ ହୁଏତ ସମସ୍ତ ଲୋକଙ୍କୁ ମୁଁ ଖଣ୍ଡିଆ କରିଦେବାର ଆଶଙ୍କା ରହିଛି ।" ମୁଁ ଉଠି ମୋର କଇଁଚି ଆଣି ତାଙ୍କ ନଖ ସବୁକୁ କାଟିଦେଲି । ସେ ହାତ ଯୋଡ଼ି ମୋତେ ଅଭିବାଦନ ଜ୍ଞାପନ କରି ଚାଲିଯାଇଥିଲେ ।

ଆଉ ଗୋଟିଏ କୋଠରିରେ ରହୁଥିଲେ ଜଣେ ବୁଢ଼ା ଲୋକ । ବୟସ ତାଙ୍କର ନୌଷଠିବେ ହେବ । ସେ ମୁଣ୍ଡିଶକୁ ହରାଇ ବସିଥିଲେ । ତାଙ୍କ ପୁଅ

ମାନେ ସବୁ ସିଙ୍ଗାପୁରରେ କୌଣସି ବ୍ୟବସାୟରେ ମାତିଥିଲେ । ନିରାପତ୍ତା ପାଇଁ ସେମାନେ ବୁଢ଼ାଟିକୁ ଆଣି ଛାଡ଼ି ଯାଇଥିଲେ ହୋଟେଲ୍‌ରେ । ଅନ୍ୟମାନଙ୍କର ସୁବିଧା ପାଇଁ ବୁଢ଼ାଟିର ଦରଜାରେ ସେମାନେ ଗୋଟିଏ ବିଜ୍ଞାପନ ଟଙ୍ଗାଇ ଦେଇଥିଲେ, ଯେଉଁଥିରେ—ବୁଢ଼ାର ନାମ, ତାର ସଂକ୍ଷିପ୍ତ-ଜୀବନ-ବୃତ୍ତାନ୍ତ, ତାର ଡାକ ଠିକଣା, ତାର ରୋଗର ପରିଚୟ ଓ ତାର ନିକଟତମ ବନ୍ଧୁ-ବାନ୍ଧବଙ୍କ ଠିକଣା ଲିପିବଦ୍ଧ ହୋଇଥିଲା । ହୋଟେଲ୍‌ର ଜଣେ ପରିଚାରକଙ୍କୁ ବୁଢ଼ାଟିର ଖବର ବୁଝାବୁଝି କରିବାର ଦାୟିତ୍ୱ ଅର୍ପଣ କରାଯାଇଥିଲା । କିନ୍ତୁ ସବୁବେଳେ ସେ ଥିଲେ ଏକା । କୁସନ୍‌ଲଗା ଗୋଟିଏ ଆରାମ ଚୌକିରେ ବସି ରହି ସେ କେବଳ ତାଙ୍କର ଜାଲଜାଲୁଆ ଦୃଷ୍ଟିରେ ବାର୍ଚ୍ଚ୍ ଗଛଗୁଡ଼ିକର ଶୋଭା ଦେଖି ଯାଉଥିଲେ—ସାରା ଦିନ ।

ଯେଉଁ ସନ୍ଧ୍ୟାରେ ମୁଁ ଏକୁଟିଆ ରହୁଥିଲି, ଯାଉଥିଲି ତାଙ୍କ ପାଖକୁ । ବସୁଥିଲି । ତାଙ୍କର ହାତଟିକୁ ଧରୁଥିଲି ମୋ ହାତରେ । ତାଙ୍କର ହାତ ମଲାଲୋକର ହାତ ପରି ମୋର ହାତ ଭିତରେ ପଡ଼ିରହୁଥିଲା । ସେ ସମ୍ପୂର୍ଣ୍ଣ ମାନସ-ହୀନ ଥିଲେ, ଅନେକ ମନ-ହୀନ ପ୍ରାଣୀଙ୍କ ସଦୃଶ । ତାଙ୍କ ଅନ୍ଧାରୁଆ ଓ କୁହୁଡ଼ିଆ ମନର ବନ୍ଦୀଶାଳାର ବାହାରେ ଥିବା ବିଶ୍ୱ ସହିତ କୌଣସି ଯୋଗସୂତ୍ର ରଖିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ଦିନେ ତାଙ୍କୁ ମୁଁ ଚକୋଲେଟ୍‌ଟିଏ ଦେଲି । କିନ୍ତୁ ସେ ତାଙ୍କ ଆଙ୍ଗୁଳିରେ ସେଇଟିକୁ ମକଚି ଫୋପାଡ଼ି ଦେଲେ । ତାଙ୍କର ନେପାଳି ପରିଚାରକ ଜଣକ ମୋର ବୋକାମି ଦେଖି ହସିଲା । ପରିଶେଷରେ ହୋଟେଲ୍ ଛାଡ଼ିଲା ବେଳେ ଆମେ କେତେକ ଶୁଖିଲା ବଣ ଫୁଲ ଓ ସମ୍ବରର ଚମଡ଼ାର ହଳେ ଜୋତା ବାପାଙ୍କ ପାଇଁ ଆଣିଥିଲୁ । ଅବଶ୍ୟ ଜୋତା ହଳକ ବାପାଙ୍କ ପାଦକୁ ଖାପ ଖାଇ ନ ଥିଲା । ମୋଚି ଆମକୁ ତା'ର ଠିକଣା ଖଣ୍ଡିଏ କାଗଜରେ ହିନ୍ଦିରେ ଲେଖିଦେଇଥିଲା । କିନ୍ତୁ ଠିକଣା ଭୁଲ୍ ଥିଲା । ଯାହା ଫଳରେ ଆମର ବମ୍ବେର କୌଣସି ବନ୍ଧୁ ସାଲୁଙ୍କେଠାରୁ ଜୋତା ମଗାଇ ପାରିଲେ ନାହିଁ ।

ପାହାଡଗାଁରେ ଛୁଟି ଉପଭୋଗ କରିବା ପରେ ଆମ ହାତରେ ଆହୁରି ପ୍ରାୟ ପନ୍ଦର ଦିନ ଛୁଟି ଥିଲା । ତେଣୁ ଆମେ ବାପ-ମା'ଙ୍କ ପାଖକୁ ମାଲବାର ଗଲୁ । ଆମକୁ ଦେଖି ସେମାନେ ଖୁସି ହେଲେ । ଯଦିଓ ପାର୍ବତ୍ୟ ସୂର୍ଯ୍ୟ କିରଣର ସ୍ପର୍ଶରେ ଆମେ ବିବର୍ଣ୍ଣ ହୋଇଯାଇଥିଲୁ । ମୋ ବାପା ବାଉଁଶ ବତାରେ ଗୋଟିଏ ତୋରଣ କରିଥିଲେ, ତା'ଉପରେ ମାଡ଼ିଯାଇଥିଲା ଲାଲ୍‌ବୁଗେନ୍‌ଭିଲା । ତାହା ଥିଲା ତାଙ୍କ ସୁନ୍ଦର ବଗିଚାର ପ୍ରବେଶ ଦ୍ୱାର । ନାନା ଜାତିର ଫୁଲରେ ବଗିଚାଟି

ଥିଲା ମନୋହର ଓ ଉଲ୍ଲେଖନୀୟ । ସେତେବେଳେ ଡିସେମ୍ବର ମାସ । ଏଣୁ ହେଜ୍‌ବାଡ଼ରେ ବ ଫେଣ୍ଟା ଫେଣ୍ଟା ଫୁଲ ଲଦ ହୋଇଥିଲା । ଏଇ ସମୟରେ ଥିରୁବାଥିରା ଉତ୍ସବ ପଡ଼େ । ଏହା ଏକ ଜଳୋତ୍ସବ । କୁମାରୀ ଓ ବିବାହିତାମାନେ ଏଇ ଉତ୍ସବ କାଳରେ ପ୍ରଭାତର ଯଥେଷ୍ଟ ପୂର୍ବରୁ ଉଠି ଶୀତଳ ସରୋବରରେ ବୁଡ଼ି ବୁଡ଼ି ସ୍ନାନ କରନ୍ତି ଓ ଗୀତ ଗାଆନ୍ତି ।

ଜଳର ଶୀତଳତା ତାଙ୍କର ମଧୁର କଣ୍ଠକୁ ଅଧିକ ମଧୁର କରିଦିଏ । ତାଙ୍କର ଗୀତ ଶୁଣି ପୁରୁଷମାନେ ପ୍ରେମର ମଧୁର କଳ୍ପନାରେ ନିଦରୁ ଉଠିପଡ଼ନ୍ତି । ସ୍ନାନ ଓ ଜଳ-ଖେଳ ପରେ ସ୍ତ୍ରୀ-ଲୋକମାନେ ବସନ୍ତି ନିଆଁର ଧୁନି ପାଖରେ । ଆଖିରେ କଜଳ, କପାଳରେ ଚନ୍ଦନ, ଓ ପୋଡ଼ା ଗୁଡ଼ଳରେ ପ୍ରସ୍ତୁତ ଓ 'ଚନ୍ଥୁର' ବିନ୍ଦୁ ତାଙ୍କ ଭାଲ ଦେଶ ମଣ୍ଡନ କରେ । ତା'ପରେ ସେମାନେ ଦୋଳି ଖେଳନ୍ତି । ବାଉଁଶର ଦୋଳି ଝୁଲୁଥାଏ ପ୍ରତି ଗଛର ଶାଖାରୁ । ଦୋଳି ଖେଳିବା ଫଳରେ ସେମାନେ ଉଷ୍ଣତ୍ୱ ଅନୁଭବ କରନ୍ତି । ଘରକୁ ଫେରି ସେମାନେ କଦଳୀ, ଓ ନାଲି ନଡ଼ିଆ ପ୍ରଭୃତି ଖାଆନ୍ତି ।

ଥିରୁବାଥିରା ଉତ୍ସବଟି ନାରୀମାନଙ୍କୁ ଅଧିକ ସୁନ୍ଦର କରିବା ଉଦ୍ଦେଶ୍ୟରେ ପାଳିତ ହୋଇଥାଏ । ଇନ୍ଦ୍ରିୟ-ପ୍ରୀତିର ଦେବତା କାମଦେବଙ୍କ ପୂଜା ଏଇ ଉତ୍ସବର ପ୍ରଧାନ କଥା ।

# କବିତା

## ଏକ ପ୍ରଫୁଲ୍ଲ ମୃତ୍ୟୁର ଅପେକ୍ଷାରେ...

ମୁଁ ଶୋଇଲେ
ଖଣ୍ଡ ଖଣ୍ଡ ହୋଇଯାଏ ବାହାରଜଗତ
ଛିନ୍ନ ହୋଇଯାଏ ସବୁ ସମ୍ପର୍କ ।

ଏଣୁ ଏକ ଦୀର୍ଘ ଶୋଇବାରେ
ମରିଯିବ ଜଗତ, ଏବଂ ମୁଁ
ରହିଯିବ ଅସ୍ତିତ୍ୱରେ
ଅବଶିଷ୍ଟ ରୂପେ ।

ଘରୁ ବାହାରିବା ପରେ ମୁଁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଲି । ଜବା ଫୁଲର ପାଖୁଡ଼ା ଝଡ଼ିପଡ଼ିଲା ଭଳି ଗାଧୁଆ ଘରର ଚଟାଣରେ ମୋର ଅସୁସ୍ଥ ଶରୀରରୁ ଝଡ଼ିପଡ଼ିଲା ଛେଦା ଛେଦା ରକ୍ତ । ଯେତେ ବିଶ୍ରାମ ନେଲେ ବି ମୁଁ ଏଇ ଅସୁସ୍ଥିରୁ ମୁକ୍ତ ହୋଇପାରିଲି ନାହିଁ ।

ସ୍ୱାମୀ ମୋତେ ପରୀକ୍ଷା କରିବା ପାଇଁ ଜଣେ ଡାକ୍ତରାଣୀଙ୍କୁ ଡାକି ଆଣିଲେ । ଡାକ୍ତରାଣୀଙ୍କ ହସ ହସ ମୁହଁଟି ମୋତେ ଭଲଲାଗିଲା ବୋଲି ମୁଁ ଲାଜ ଛାଡ଼ି ତାଙ୍କ ସାମ୍ନାରେ ନିଜକୁ ଅନାବୃତ କରିଦେଲି । ସେ ମୋତେ ଗୋଟିଏ ସାମାନ୍ୟ ଧରଣର ଅସ୍ତ୍ରୋପଚାର ପାଇଁ ଡାକ୍ତର ପିଗ୍ରେକାରଙ୍କ ନିକଟକୁ ପ୍ରଥମେ ନେଇଗଲେ । ତା'ପରେ ମୋତେ ମାଟୁଙ୍ଗାଠାରେ ଥିବା ତାଙ୍କର ନର୍ସିଂହୋମ୍‌କୁ ଯିବାକୁ ପଡ଼ିଲା, ଚିକିତ୍ସା ପାଇଁ ।

ଜାଗାଟି ଥିଲା ସାନ । ମାତ୍ର ତିନୋଟି କୋଠରି, ଗୋଟିଏ ବାରଣ୍ଡା ଓ ପ୍ରସବ ପାଇଁ ଉଦ୍ଦିଷ୍ଟ ହଲ୍‌ଟିଏ । ଡାକ୍ତରାଣୀଙ୍କ ନାମ ଥିଲା ପଙ୍କଜମ୍ କରୁଣା-କରନ୍ । ସେ ରହୁଥିଲେ ଉପର ମହଲାରେ । କେବଳ ରବିବାର ଦିନ ସେ ନିଜେ ଗାଡ଼ି ଚଲାଇ ଯାଉଥିଲେ ଅନ୍ଧେରୀକୁ, ଯେଉଁଠି ତାଙ୍କର ପ୍ରାସାଦୋପମ ବଙ୍ଗଳା ଥିଲା । ତାଙ୍କୁ କାମରେ ସାହାଯ୍ୟ କରିବା ପାଇଁ ଶାନ୍ତାବାଈ ନାମରେ ଜଣେ ସହକାରିଣୀ ଓ ଅଳ୍ପ କେଇଜଣ ସେବିକା ଥିଲେ । ସେମାନେ ସମସ୍ତେ ପ୍ରସୂତିରେ ସହାୟତା କରୁଥିଲେ ।

ମୋତେ ସବୁଠାରୁ ଭଲ କୋଠରିଟି ଦିଆଯାଇଥିଲା । ଠିକ୍ ପାହାଚ ତଳକୁ । କେତେକ ବନ୍ଧୁ ପଠାଇଥିବା ଫୁଲ ମୁଁ ଝରକା କଡ଼ରେ ରଖିଥିଲି, ଯାହା ଫଳରେ ଝରକା ବେଶ୍ ଆକର୍ଷଣୀୟ ହୋଇ ଉଠିଥିଲା । ମୋର ବିଛଣାରୁ ଦିଶୁଥିଲା ପ୍ରାଚୀର ଆରପଟରେ ଥିବା ଶାନ୍ତ ରାସ୍ତା ।

ଅସ୍ତ୍ର-ଚିକିତ୍ସାର ମାତ୍ର ଦିନକ ପରେ ମୁଁ ଜଙ୍ଘ ଖୋଲରେ ଉଷ୍ଣତା ଅନୁଭବ କଲି । ବୁଝିପାରିଲି କୌଣସି ହାମରେଜ୍‌ର ଏହା ଆରମ୍ଭ । ସେବିକା-ମାନେ ଉଠିଲେ । ରକ୍ତର ଧାରା ବନ୍ଦ କରିବାକୁ ଚେଷ୍ଟାକରି ସେମାନେ ବିଫଳ ଓ ହତାଶ ହେବାରୁ ଜଣେ ଦଉଡ଼ିଯାଇ ଡାକ୍ତରାଣୀଙ୍କୁ ଖବର ଦେଲା ।

ମୁଁ ଦୁଇଟି କାନରେ ଏକପ୍ରକାରର ନୀରବତାର ଧ୍ୱନି ଶୁଣିପାରିଲି ଓ କ୍ରମେ କ୍ରମେ ମୋର ଦେହ ଉଣ୍ଣାସ ହୋଇଯାଉଥିବା ଅନୁଭବ କଲି । ମୋତେ ଲାଗିଲା ଯେପରିକି ମୁଁ ପଡ଼ିଲା ଉତ୍ପତ୍ତିୟଟିଏ ଭଳି କୋଠରି ଭିତରେ ଉଡ଼ିବୁଲୁଚ

ଓ ଯେପରିକ ବିଛଣାରେ ନିଶ୍ଚଳ ହୋଇ ପଡ଼ିଥିବା ଶରୀର ଉପରେ ଭାସି ଭାସି ଯାଉଚି, ଯେଉଁଠୁ ରକ୍ତର ନଈ ଛୁଟି ଚାଲିଥିଲା । ତାହା ଥିଲା ଏକ ଆନନ୍ଦପୂର୍ଣ୍ଣ ସୁନ୍ଦର ମୃତ୍ୟୁର ପ୍ରାରମ୍ଭ ମାତ୍ର, ଯିଏ ଆପଣାକୁ ପ୍ରତିଷ୍ଠିତ କରିବା ପୂର୍ବରୁ ପ୍ରଥମେ ଜଗତ ସହିତ ସମ୍ପୃକ୍ତ ଆକାଂକ୍ଷାଗୁଡ଼ିକୁ ଦୂର କରିଦିଏ ।

ଡାକ୍ତରାଣୀ ଆସିଲେ । ଜରୁରୀକାଳୀନ ଚିକିତ୍ସା ଆରମ୍ଭ କରାଗଲା । ମୁଁ ତାଙ୍କର ଶବ୍ଦ ଶୁଣିପାରିଲି ଅତି ଅସ୍ପଷ୍ଟ ଭାବରେ, ଯେପରିକି ଖୁବ୍ ଦୂରର । ମୁଁ ତାଙ୍କୁ କହିବାକୁ ଚାହୁଁଥିଲି ଯେ ସବୁ ଭଲ, ମୋପାଇଁ ସବୁ କିଛି ଠିକ୍ ଏବଂ ଏପରି ଏକ ଅବସ୍ଥାରେ ପହଞ୍ଚିପାରିଚି ବୋଲି ମୁଁ ଖୁସି । କିନ୍ତୁ, ନା ମୁଁ ଖୋଲି-ପାରିଲି ମୁହଁ, ନା ଖୋଲିପାରିଲି ଓଠ । ମୁଁ ଅନୁଭବ କଲି ଯେ ମୃତ୍ୟୁ ସମ୍ଭବତଃ ସନ୍ଧ୍ୟାବେଳେ ପଦ୍ମଫୁଲର ପାଖୁଡ଼ା ମୁଦି ହୋଇଯିବା ଏବଂ ସମ୍ଭବତଃ ମୃତ୍ୟୁଟା ଅସ୍ଥାୟୀ ।

କିନ୍ତୁ ଡାକ୍ତରାଣୀଙ୍କର ଚିକିତ୍ସା କାମ ଦେଲା । ମୁଁ ପୁଣି ଫେରିଆସିଲି ଜୀବନକୁ । ଡାକ୍ତରାଣୀଙ୍କ ସ୍ପର୍ଶର ଉଷ୍ମତା ଓ ତାଙ୍କ ବଚନର କୋମଳତା ଅନୁଭବ କଲି । ଡାକ୍ତରାଣୀ କହିଲେ—"ତୁମେ ବଞ୍ଚିଯାଇଚ ।"

ଯଦି ମୃତ୍ୟୁକୁ ମୋ ପକ୍ଷରେ ଏକ ଉପହାର ବୋଲି ସ୍ୱୀକାର କରାଯାଏ, ତେବେ ସେ ସେଇ ଉପହାରକୁ ଫେରାଇଦେଲେ । ତାଙ୍କ ପ୍ରତି ମୋର ନୂଆ ମମତା ଜାଗି ଉଠିଲା । ମୁଁ ତାଙ୍କୁ ଆଗ୍ରହର ସହିତ ଚୁମ୍ବନ କଲି । ସେ ଆନନ୍ଦ ଓ ଆଶ୍ୱସ୍ତିର ସହିତ ହସୁଥିଲେ କେବଳ । ମୁଁ ଡାକ୍ତରାଣୀଙ୍କୁ ଜଳ ଜଳ ହୋଇ ଚାହିଁ ରହିଥିଲି, ଯେପରିକି ସେଇ ମୋର ତାଙ୍କୁ ପ୍ରଥମ ଦେଖିବା । ସେ ପଚାରିଲେ—"ଆମି ! କଣ ହେଲା ? ତୁମେ ମୋତେ ଏମିତି ଚାହିଁ ରହିଚ ଯେ ?"

ମୋର ଜଣା ପୃଥିବୀରେ ତାଙ୍କପରି ଦୟାଶୀଳା ରମଣୀ ମୁଁ ଅନ୍ୟ କେଉଁଠି ଦେଖିନାହିଁ । ତାଙ୍କର ଧୈର୍ଯ୍ୟ ଥିଲା ଅସୀମ ଓ ତାହାହିଁ ଥିଲା ତାଙ୍କର ଭୂଷଣ । ଟିକିଏ ଚାଲିବୁଲି କରିବାର ଶକ୍ତି ଅର୍ଜନ କରିବା ପରେ ମୁଁ ଯାଇଁ ହଲ୍‌ର ଝରକା ପାଖରେ ଠିଆହୋଇ ଦେଖୁଥିଲି ରୋଗୀମାନଙ୍କର ଲମ୍ବା ଧାଡ଼ି । କାଖରେ ଶିଶୁ ଓ ହାତରେ ଔଷଧ ନେବାପାଇଁ ବୋତଲ ଧରି ସେମାନେ ସବୁ ଧାଡ଼ି ବାନ୍ଧି ଠିଆ ହେଉଥିଲେ । ସେ ଗରିବଶ୍ରେଣୀର ଲୋକଙ୍କଠାରୁ ପଇସାପତ୍ର ନେଉ ନ ଥିଲେ । ମମତା ଓ ବନ୍ଧୁତ୍ୱହିଁ ଏକମାତ୍ର କୃତଜ୍ଞତା ବୋଲି ସେ ଜଣାଇ ଦେଉଥିଲେ ପରୋକ୍ଷରେ । ପ୍ରତି ରୋଗୀ ଆପଣାର ବିଶିଷ୍ଟତା ଅନୁଭବ କରିପାରୁଥିଲେ ।

କଂଜିଭରମ୍ ଶାଢ଼ୀ ଥିଲା ତାଙ୍କର ଆଚ୍ଛାଦନ । ମଝିରେ ମଝିରେ ମୁଁ କ୍ଲିନିକ୍‌କୁ ପଳିଯାଇ ତାଙ୍କୁ ଚୁମ୍ବନ କରୁଥିଲି ଓ ଆଘ୍ରାଣ କରୁଥିଲି ତାଙ୍କ ମୁଖରେ

ବୋଲା ଯାଇଥିବା ପାଉଡର୍‌ର ବାସ୍ନା । ମୁଁ ତାଙ୍କର ନର୍ସିଂହୋମ୍‌ରୁ ବିଦାୟ ନେଇ ଆନନ୍ଦିତ ହୋଇ ନ ଥିଲି । କିନ୍ତୁ ମୋତେ ପାଇ ମୋର ପିଲାମାନେ ଖୁସି ହୋଇଥିଲେ । ମୁଁ ତାଙ୍କୁ ସବୁ ରାତିରେ ଶୋଇଲାବେଳେ ଗପ କହୁଥିଲି ଓ ତାଙ୍କ ସହିତ ଲନ୍‌ରେ ନାନାପ୍ରକାରର ଖେଳ ଖେଳୁଥିଲି କି ନା !

କ୍ରମେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲି । ମୁହଁର ବ୍ରଣଗୁଡ଼ିକ ଯେମିତି ଆସିଥିଲେ ସହସା ଉଭାନ୍ ହୋଇଗଲେ ବି ସେମିତି । ମୁଁ ସ୍ୱାମୀଙ୍କୁ କହିଲି— "ଜାଣିଚ ମୁଁ ଡାକ୍ତରାଣୀଙ୍କ ପ୍ରେମରେ ପଡ଼ିଯାଇଚି ।" ସେ କହିଲେ—"ସେଥିରେ କିଛି ନାହିଁ । ସେ ଜଣେ ନାରୀ । ଭଲ ପାଇବାର ସୁଯୋଗ ନେଇ ସେ ତୁମର କ୍ଷତି କରିବାର ସମ୍ଭାବନା ନାହିଁ ।"

ନର୍ସିଂହୋମ୍‌ରେ ସାକ୍ଷାତ୍ ପାଇଥିବା ଅନେକ ଲୋକଙ୍କ ବିଷୟରେ ମୁଁ ମାଲୟାଲମ୍ ଭାଷାରେ ଗପ ସବୁ ଲେଖିଲି । ପତ୍ରିକାରେ ଗପଟିଏ ପ୍ରକାଶ ପାଇବା ମାତ୍ରେ ମୁଁ ଶୋଇବା ଘରକୁ ଯାଇ ପଢ଼ୁଥିଲି । ପଢ଼ିବା ବେଳେ ମୋ ଛାତି ଧକ ଧକ କରୁଥିଲା ଉତ୍ତେଜନାରେ, ଛପା ଅକ୍ଷରରେ ମୋର ନିଜ ନାମଟିକୁ ଦେଖିବା ପାଇଁ । ଇଲଷ୍ଟ୍ରେଟେଡ୍ ୱିକ୍ଲି-ପତ୍ରିକାରେ ମୁଁ ଲେଖୁଥିଲି, କିନ୍ତୁ ସେସବୁ କେ. ଦାସ ନାମରେ ପ୍ରକାଶ ପାଉଥିଲା । କାରଣ ନାରୀ ଲେଖିକାଙ୍କ ସମ୍ପର୍କରେ ସଂପାଦକଙ୍କର କିଛିଟା ଭ୍ରାନ୍ତ ଧାରଣା ଥିଲା ବୋଲି ମୁଁ ସନ୍ଦେହ କରୁଥିଲି । ସଂପାଦକ ଥିଲେ ଜଣେ ଆଇରିସ୍ । ତାଙ୍କର ନାମ ଥିଲା ସିନ ମାଣ୍ଡି । ଅତ୍ୟନ୍ତ ବିଗ୍ରହବନ୍ତ ଥିଲେ ସେ । ଯେତେବେଳେ ସେ କୌଣସି କବିତାକୁ ନାକଚ କରି ଫେରାଇ ଦେଉଥିଲେ, ସେ ତାହାର କାରଣ ମଧ୍ୟ ଦର୍ଶାଉଥିଲେ । ମୁଁ ତାଙ୍କୁ ସାକ୍ଷାତ୍ କରିବାର ଦିବା-ସ୍ୱପ୍ନ ଦେଖୁଥିଲି । ଭାବୁଥିଲି, ଦିନେ ନା ଦିନେ ତାଙ୍କ ସହିତ ଗ୍ଲୁଲ୍‌ମୋହର୍‌ଠାରେ ଦେଖା ହେବ, କାରଣ ସେ ସେଠାରେ ହିଁ ପ୍ରତ୍ୟହ ମଧ୍ୟାହ୍ନ ଭୋଜନ କରୁଥିଲେ । ମୋର ବିଶ୍ୱାସ ଥିଲା···ସାକ୍ଷାତ୍ ପରେ ପରେ ସେ ନିଶ୍ଚୟ ମୋତେ ଭଲ ପାଇ ବସିବେ···

ସେ ଯଦି ସତକୁ ସତ ମୋତେ ମଧ୍ୟାହ୍ନ ଭୋଜନ ପାଇଁ ଡାକିଥାନ୍ତେ ନା ତାଙ୍କର ନିମନ୍ତ୍ରଣ ରକ୍ଷା କରିବା ମୋ ପକ୍ଷରେ ବାସ୍ତବିକ କଷ୍ଟକର ହୋଇ ପଡ଼ିଥାନ୍ତା । କାରଣ ମାଲୟାଲମ୍ ପତ୍ରିକା ସବୁରୁ ମୁଁ ଯାହା କିଛି ପଇସା ପାଉଥିଲି ସେସବୁ ଅର୍ଥ ମୋର ଷ୍ଟାଣ୍ଡ ବୁକ୍‌ଷ୍ଟଲରୁ ବହି କିଣିବାରେ ଖର୍ଚ୍ଚ ହୋଇଯାଉଥିଲା । ଖଣ୍ଡିଏ ହେଲେ ବି ନୂଆ ଶାଢ଼ୀ ମୁଁ କିଣି ନ ଥିଲି । ମୋର ପୋଷାକପତ୍ର ମଧ୍ୟ ସେପରି ଆଧୁନିକ ଧରଣର ନଥିଲା । ମୋର ମାତ୍ର ଖଣ୍ଡେ ଦି-ଖଣ୍ଡ ବାଇଗଣି ରଙ୍ଗର ବ୍ଲାଉସ୍ ଥିଲା । ସେସବୁ ଘର ସିଲେଇ, ପୁଣି

କାଖଭଳି ଫମ୍ପା । ସ୍ଥାନେ ସ୍ଥାନେ ମୋର ଶାଢ଼ୀର ମଧ୍ୟ ତାଳି ପଡ଼ିଥିଲା, ପୁଣି ବାଜେ ଖଦଡରେ । ମାନେ, ଗୁଲ୍-ମୋହର୍‌ରେ ମଧ୍ୟାହ୍ନ ଭୋଜନକୁ ମଣ୍ଡନ କଲାଭଳି ନାଗ୍ଦ ମୁଁ ନ ଥିଲି ।

ଲେଖିବା ମୋର ଏକମାତ୍ର ମନ-ପସନ୍ଦ କାମ । ପ୍ରତି ସପ୍ତାହରେ ପ୍ରାୟ ଦୁଇଟି କରି ଗପ ଲେଖି ସ୍ୱାମୀଙ୍କଠାରୁ ଡାକ ଖର୍ଚ୍ଚ ଆଣି ପଠାଇ ଦେଉଥିଲି । 'ମାତୃଭୂମି'—ମୋତେ ଗପ ଗୋଟିକୁ ବାରଟଙ୍କା କରି ପଠାଉଥିଲେ । ଗୋଟିଏ ଗପ ଶେଷ କରିବାକୁ ମୋତେ ଗୋଟିଏ ପୂରା ଦିନ ଲାଗୁଥିଲା । କାରଣ, ଦିନବେଳେ ମୋତେ ପିଲାମାନେ ଲେଖାଇ ଦେଉ ନ ଥିଲେ ।

ଗପଟିକୁ ଶେଷକରିବା ବେଳକୁ ପ୍ରାୟ ଛ'ଟା ବାଜି ଯାଉଥିଲା, ଓ ସେତେବେଳକୁ ସାରା ପଣିଦାର ଉଠି ପଡ଼ୁଥିଲା ଯନ୍ତ୍ରଣାରୁ । ଦି-ପହରବେଳେ ମୁଁ ଘଣ୍ଟେ ଦି-ଘଣ୍ଟା ଶୋଇବାକୁ ଚେଷ୍ଟା କରୁଥିଲି । କିନ୍ତୁ ପ୍ରତିବେଶିନୀ ମହିଳାମାନେ ଥିଲେ ବଡ଼ ମେଳାପି ପ୍ରକୃତିର । ସେମାନେ ଦି-ପହରବେଳେ ଗପ ଜମେଇବାକୁ ଆସୁଥିଲେ । ସାଧାରଣତଃ ସେମାନେ ଲୁଗାପଟା ବିଷୟରେ ଆଲୋଚନା କରୁଥିଲେ । ମୋତେ ବିରକ୍ତ ଲାଗୁଥିଲା ବଡ଼ ।

ସକାଳେ । ପିଲାମାନେ ସ୍କୁଲ୍‌ରେ । ମୁଁ ସେତିକବେଳେ କିଛି ତୈଳ-ଚିତ୍ର କରିବାକୁ ସୁଖ ପାଉଥିଲି, ପୋର୍ଟ୍ରିଟ୍ କୋଟେ । ମୁଁ କେବଳ ସ୍ତ୍ରୀ-ଲୋକଙ୍କର ଛବି ଆଙ୍କି ପାରୁଥିଲି, ଅବଶ୍ୟ ଆଙ୍କୁଥିଲି ଭଲ । ବନ୍ଧୁମାନଙ୍କର ଜନ୍ମଦିନରେ ମୁଁ ସେସବୁ ଦେଉଥିଲି ଉପହାର । ସେତେବେଳେ ବି-ମୂର୍ତ୍ତିକଳା ଏତେବେଶୀ ପ୍ରଯୁକ୍ତ ଓ ପ୍ରଚଳିତ ନ ଥିଲା । ସେଥିପାଇଁ ମୋ ଛବିକୁ ଆନନ୍ଦର ସହିତ ବନ୍ଧୁମାନେ ବୈଠକଖାନାର କାନ୍ଥରେ ଟାଙ୍ଗୁଥିଲେ ।

ମୋ ଜୀବନର ସେସବୁ ସୁ-ଦିନ, ଶୁଭ-ଅଧ୍ୟାୟ । ସେତେବେଳେ ମୋର ଥିଲା ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, ପଢ଼ିବା ପାଇଁ ପ୍ରଚୁର ବହି ଓ ପ୍ରତିଭା । ବଙ୍ଗଳାର ଗୁର୍ଖା ଜଗୁଆଳି—ଗୁଲିସ୍ତାନ୍‌ର ପ୍ରଭାତୀ-ସଙ୍ଗୀତ ଶୁଣି ପ୍ରତି ସକାଳେ ମୋର ନିଦଭାଙ୍ଗି ଯାଉଥିଲା । ସେଇ ନେପାଳି ସୁର୍ ଭିତରେ ଲୁଚି ରହିଥିଲା । ପାହାଡ଼ର କୁହେଳିକାଛନ୍ନତା ଓ ସେସବୁର କରୁଣ ଏକୁଟିଆବୋଧ । ସକାଳେ ସ୍ନାନ କରିବା ସମୟରେ ଗୁର୍ଖା ଜଣକ ଗୀତ ଗାଉଥିଲା । ପାଣି ପଡ଼ିବାର ଶବ୍ଦ ସହିତ ସଙ୍ଗୀତର ସମ୍ମିଶ୍ରଣ ଆମକୁ ଶୁଆଇ ଦେଉ ନ ଥିଲା । ଉଠିବାକୁ ତଥାପି ଅନିଚ୍ଛା । ଅଥଚ ଝରକା ସେପଟରେ ଶ୍ୱେତାଭ ହୋଇଯାଉଥିଲା ଆକାଶ କ୍ରମେ କ୍ରମେ ।

# ତେତିଶି

## ପ୍ରପିତାମହୀଙ୍କ ବିୟୋଗ

ସେ ଘରଟି ବର୍ତ୍ତମାନ ଦୂରରେ
ଯେଉଁଠି ମୁଁ ଏକଦା ପାଇଥିଲି ସ୍ନେହ ।

ସେ ନାହାନ୍ତି ଆଉ ନାହିଁ; ନୀରବ ସେ ଘର;
ଚଲାବୁଲା କରୁଛନ୍ତି ସାପମାନେ
ବହି ଉପରେ, ମୁଁ ନିତାନ୍ତ ପିଲାଥିଲି ପଢ଼ିବାକୁ ଯାହା

ମୋର ରକ୍ତ ବର୍ତ୍ତମାନ ଚନ୍ଦ୍ର ପରି ରୂପାନ୍ତରିତ ।
କେତେଥର ନ ଭାବିଛି ସେଠାକୁ ଯିବାକୁ ।
ସେଇ ଝରକାର ଅନ୍ଧପଥ ଦେଇ ଦେଖିବାକୁ
ଶୁଣିବାକୁ ଶୀତାର୍ତ୍ତ ପବନର ସ୍ୱର
ଅଥବା ଏକ ବନ୍ୟ ପ୍ରବୃତ୍ତିରେ, ମୁଠାଏ
ଅନ୍ଧାର ନେଇ ଆସିବାକୁ ଏଠାକୁ
ଶୋଇବା ଘରର କବାଟ ଅନ୍ତରାଳରେ
ଝୁରି ହେବାକୁ କୁକୁର ପରି ।
ପ୍ରିୟତମ ! ତୁମେ ବିଶ୍ୱାସ କରିପାରିବନି
ପାରିବ କି ? ଯେ ମୁଁ ରହୁଥିଲି
ଏପରି ଏକ ଘରେ, ଯାହାପାଇଁ ମୋର ଗର୍ବ
ଏବଂ ଯାହାକୁ ମୁଁ ଭଲ ପାଉଥିଲି ।

ମୁଁ, ଯେ କି ଆଜି ପଥହରା,
ଏବଂ ଯେ ଆଜି ବିଦେଶୀଙ୍କୁ ଭିକ ମାଗୁଛି ।
ଅଳ୍ପକିଛିର ପ୍ରତି ବଦଳରେ ସାମାନ୍ୟ ଭଲପାଇବା ।

ସାନ ବୁଢ଼ାପପା ଓ ବୁଢ଼ୀ-ମାଙ୍କ ମୃତ୍ୟୁପରେ ପୁରାତନ ନାଲପତି ଭବନରେ ଗୁଡ଼ବପକାଇ ଦିଆଗଲା । ବିଦାକରି ଦିଆଗଲା ଗୃହକର-ପୃଷ୍ଠାରୀମାନଙ୍କୁ । ମୃତବ୍ୟକ୍ତିଙ୍କର ଆଖିପରି ରୁଦ୍ଧ ହୋଇଗଲା ତା'ର ସମସ୍ତ ବାତାୟନ ।

ଅଣବୁଢ଼ୀମା···ବଞ୍ଚିଥିଲେ । ତାଙ୍କୁ ବାପା ଆମର ନୂଆଘର ସର୍ବୋଦୟକୁ ଘେନିଆସିଲେ । ପୂର୍ବପଟକୁ ଥିବା ଶୟନ-କକ୍ଷରେ ରହିଲେ ସେ । କାରଣ, ସେଇ କକ୍ଷର ଝରକାରୁ ଆମ୍ବଗଛର ଗହଳ ପତ୍ରର ଫାଙ୍କଦେଇ ଦିଶୁଥିଲା ତାଙ୍କର ପ୍ରିୟ ପୁରାତନ ନିକେତନ—'ନାଲିପଡ଼ ଭବନ ।'

ନାଲିପଡ଼ର ଅନ୍ଧାର କକ୍ଷ ସବୁରେ ଚାଲିଥିଲା ମୂଷାଙ୍କ ରାଜତ୍ୱ । ସ୍ଥାନେ ସ୍ଥାନେ ବାହାର କାନ୍ଥରେ ଚଢ଼ି ଚଢ଼ି ଯାଉଥିଲା ଉଇହୁଙ୍କା । ସବୁକିଛୁ ସମାଧିର ସଙ୍କେତ ।

ଅଣ-ବୁଢ଼ୀମାଙ୍କ ମନଂଥିଲା ଶିଶୁପରି ପରିବର୍ତ୍ତନଶୀଳ । ସେ ଖୁବ୍ ସହଜରେ ଦୁଃଖକୁ ଆଡ଼େଇ ଦେଇ ପାରୁଥିଲେ । ପୁରାତନ ଘରଟିର ମୃତ୍ୟୁ ତାଙ୍କୁ ବେଶୀଦିନ ଯାଏଁ ବିଚଳିତ କରି ରଖି ନ ଥିଲା । ତାଙ୍କ କନ୍ୟାର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଶେଷ ଦର୍ଶନ ପାଇଁ ତାଙ୍କୁ ଅନ୍ୟମାନେ ନିଦରୁ ଉଠାଇ ଦେଲେ । ସେ ଗଲେ ଶେଷ ନିଃଶ୍ୱାସ ତ୍ୟାଗ କରୁଥିବା ଝିଅ ପାଖକୁ । ବସିଲେ । ପ୍ରାର୍ଥନା କଲେ କ୍ଷୀଣ ସ୍ୱରରେ ଏବଂ ଝିଅର ମୃତ୍ୟୁ ପରେ ତତ୍‌କ୍ଷଣାତ୍ ଶୁଦ୍ଧ ସ୍ନାନ ପାଇଁ ପ୍ରସ୍ତୁତ ହୋଇ ପାରିଥିଲେ ।

ଅଣ-ବୁଢ଼ୀ-ମା ଥିଲେ ବିଭଶାଳୀ ପୁନ୍ନାଥୋର୍ କୋଚ୍ଚା ରାଜାଙ୍କ କନ୍ୟା । ଆମ ପରିବାରର ସେ ହିଁ ଥିଲେ ଏକମାତ୍ର ବ୍ୟକ୍ତି ଯେ କି ହାତୀ ପିଠିରେ ବସି ମନ୍ଦିରକୁ ଯାଇଥିଲେ ।

ନାୟାର୍ ସଂସ୍କାର ଅନୁସାରେ ପ୍ରଥମ ଋତୁ ଉଦୟ ବେଳେ (ବୟଃ ପ୍ରାପ୍ତି କାଳ) କୁମାରୀମାନେ ତିନିଦିନ ଅଲଗା ହୋଇ ରହନ୍ତି । ସେତେବେଳେ ତାଙ୍କୁ ସମସ୍ତ ପ୍ରକାର ଗହଣା ପିନ୍ଧିବାକୁ ଦିଆଯାଏ ଓ ଦର୍ପଣଟିଏ ଦିଆଯାଏ ମୁହଁ ଦେଖିବାକୁ ।

ଚତୁର୍ଥ ଦିନ ନବ-ଯୁବତୀକୁ ନିଆଯାଏ ନିକଟସ୍ଥ ପୁଷ୍କରିଣୀକୁ, ଏକ ଶୋଭା ଯାତ୍ରାରେ । ଏକ ହାସ୍ୟ ଓ ଆନନ୍ଦ ମୁଖର କଳ-ରୋଳ ମଧ୍ୟରେ ସମାପିତ ହୁଏ ରଜୋସ୍ନାନର ଉତ୍ସବ । ତା'ପରେ ସ୍ତ୍ରୀ-ଲୋକମାନେ ନବଯୁବତୀକୁ ଚନ୍ଦନ, କଜଳ, ହଳଦୀ ପ୍ରଭୃତିର ପ୍ରୟୋଗ କରି ପାରମ୍ପରିକ ରୀତିରେ ବିଭୂଷିତ କରିଥା'ନ୍ତି । ପରେ ସମସ୍ତ ଗ୍ରାମବାସୀଙ୍କ ପାଇଁ ହୁଏ ଏକ ଭୋଜି । ସେଇ ଭୋଜିର ଉତ୍ସବରେ କାଇକୋଟ୍ଟି କାଲି ନୃତ୍ୟ ଅନୁଷ୍ଠିତ ହୁଏ । ସେଇ ଉତ୍ସବର ସୁଯୋଗରେ ଯୁବକମାନେ ସଦ୍ୟ ବିବାହ-ଯୋଗ୍ୟା ନବ-ଯୁବତୀଟିକୁ ଦେଖି ନିଅନ୍ତି ।

ସପ୍ତମ ଦିବସରେ ନବ-ଯୁବତୀଙ୍କୁ କୌଣସି ଏକ ଦୂରବର୍ତ୍ତୀ ମନ୍ଦିରକୁ ନିଆଯାଏ । ମୋର ଅଣ-ବୁଢ଼ୀମା ଯୌବନ ପ୍ରାପ୍ତିର ଶୁଭକ୍ଷଣରେ ତାଙ୍କ ବାପାଙ୍କ ହାତୀ ପିଠିରେ ବସି ଯାଇଥିଲେ ମନ୍ଦିରକୁ । ସେତେବେଳେ ସେ ପିନ୍ଧିଥିଲେ 'ଅମାଦକୃଛମ୍' ଅଳଙ୍କାର; ତାହା ; ତାଙ୍କର କୋମଳ ବକ୍ଷୋଜକୁ ଢାଙ୍କି ରଖିଥିଲା । ଆଗେ ଆଗେ ଚାଲିଥିଲେ ପରିଚାରିକାମାନେ ଓ ଅସ୍ପୃଶ୍ୟ ଜନତାକୁ ରାସ୍ତା ଛାଡ଼ି ଘୁଞ୍ଚିଯିବା ପାଇଁ ସେମାନେ—ହୋ—ହୋ (ବାଟଛାଡ଼, ବାଟଛାଡ଼) ଧ୍ୱନି କରୁଥିଲେ ।

ଯୌବନ-ପ୍ରାପ୍ତିର ଏକବର୍ଷ ମଧ୍ୟରେ ଚରାଲସ୍ୱମାନ୍‌ର ରାଜାଙ୍କ ସହିତ ତାଙ୍କର ବିବାହ ଅନୁଷ୍ଠିତ ହୋଇ ଯାଇଥିଲା । ରାଜା ଥିଲେ ବଳିଷ୍ଠ । ତାଙ୍କର ଓଷ୍ଠ ଥିଲା ବେଶ୍ ମୋଟା ଓ କାମୋତ୍ତେଜକ ।

ଠିକ୍ ଊଣେଇଶ ବର୍ଷ ବେଳେ ସେ ଫେରିଆସିଲେ ନାଲପତ ଭବନକୁ । ସାଙ୍ଗରେ ଥିଲା ଶିଶୁକନ୍ୟା । କିନ୍ତୁ, ଫେରିବାର କାରଣ କହିଲେ ନାହିଁ । କାହାର କୌଣସି ପ୍ରଶ୍ନର ଜବାବ ଦେଲେ ନାହିଁ ସେ ।

ମୁଁ ଦେଖିଚି ସେ ପ୍ରତ୍ୟହ ପ୍ରାୟ ତିନିଥର ଅତ୍ୟନ୍ତ ଯତ୍ନର ସହିତ ଓ ପୁଙ୍ଖାନୁପୁଙ୍ଖ ଭାବରେ ତାଙ୍କର ଗୋଇଠି ଓ ଗୋଡ଼ ନଖଗୁଡ଼ିକୁ ସଫା-କରନ୍ତି । ମୁଁ ଆଜି ଭାବୁଚି, ତାଙ୍କର ଅତ୍ୟଧିକ ପରିଚ୍ଛନ୍ନ ରହିବା ମନୋଭାବ ସହିତ ସ୍ୱାମୀ-ବିଚ୍ଛେଦର କିଛିଟା ସଂଯୋଗ ଥାଇପାରେ । ବୈବାହିକ କର୍ତ୍ତବ୍ୟ ସମ୍ପାଦନ କରିବା ସମ୍ଭବତଃ ତାଙ୍କୁ ଅପରିଚ୍ଛନ୍ନ ମନେ ହୋଇଥିବ ।

ଅଣ-ବୁଢ଼ୀମାଙ୍କ ସମୟାନୁବର୍ତ୍ତିତା ଥିଲା ସେଇପରି ଉଲ୍ଲେଖଯୋଗ୍ୟ । ବାରଟା ବାଜିବା ମାତ୍ରେ ସେ ମଧ୍ୟାହ୍ନ ଭୋଜନ ପାଇଁ ତାଙ୍କ ଶୋଇବା ଘରୁ ଉଠି ଆସୁଥିଲେ । ଦିନେ ଦିନେ ଥଟ୍ଟା କରିବା ପାଇଁ ଆମେ ଘଣ୍ଟାର କଣ୍ଟା ବୁଲାଇ ଏଗାରକୁ ବାର କରି ଦେଉଥିଲୁ । ଠନ୍ ଠନ୍ କରି ବାର ବାଜିବାର ଶବ୍ଦ ହେବା ମାତ୍ରେ ବୁଢ଼ୀ ଉଠି ଆସି 'ମୋତେ ଭୋକ ହେଲାଣି···ଖାଇବାକୁ ଦିଅ' ବୋଲି କହିଉଠୁଥିଲେ । ଆମେ ହସିଲେ ସେ ଆମ ସହିତ ହସୁଥିଲେ । ଗୋଟିଏ ସାନଝିଅ ପରି ତାଙ୍କର ହସ ଥିଲା ଉଚ୍ଛଳ ଓ ନିର୍ମଳ । ସେ ଅଧିକାଂଶ ସମୟରେ ପରିଚାରକ-ମାନଙ୍କ ସହିତ ଗପୁଥିଲେ । ତାଙ୍କର ବ୍ୟକ୍ତିଗତ ସୁବିଧା-ଅସୁବିଧା ବୁଝୁଥିଲେ ଓ ସେମାନଙ୍କର ପାରିବାରିକ କନ୍ଦଳର ସମାଧାନ କରିଦେଉଥିଲେ ।

ମୋ ବାପା କୌଣସି ସମ୍ବାଦପତ୍ରର ସମ୍ପାଦକ ଭାବରେ କାଲିକଟ୍ ଯିବା ସ୍ଥିର ହେଲା । ସମସ୍ୟା ହେଲା ଏଇ ଅଣ-ବୁଢ଼ୀମାଙ୍କୁ ନେଇ । ସେ ବାପା-ମାଙ୍କ

ସହିତ ଯିବାକୁ ଚାହିଁଲେ । କିନ୍ତୁ ମୋ ମାଈଁ କହିଲେ ତାଙ୍କ ପାଖରେ ଛାଡ଼ି-ଦେବାକୁ । ତାଙ୍କ ଘର ଥିଲା ଅଳ୍ପ ଦୂରରେ । ମାଆ ସେଥିରେ ରାଜି ହୋଇଗଲେ । ଅବଶେଷରେ—ଗୋଟିଏ ଅନ୍ଧକାର ଘରେ, ଗୋଟିଏ ଛୋଟ ଖଟ ଉପରେ ଅଣ-ବୁଢ଼ୀମା ରହିଲେ ନୀରବରେ ।

ମୋ ମାମୁଁ ଥିଲେ ଜଣେ ବିଖ୍ୟାତ ରାଜନୈତିକ ନେତା, ଜଣେ କଂଗ୍ରେସ ବିଧାନସଭା ସଦସ୍ୟ । ପ୍ରତିଦିନ ବହୁଲୋକ ତାଙ୍କୁ ଭେଟୁଥିଲେ । ତେଣୁ ଖାଇବା ପିଇବାରେ ବିଳମ୍ବ ଘଟୁଥିଲା । ଖାଦ୍ୟ ଥିଲା ଲଙ୍କାରେ ଲାଲ୍ ଦିଶୁଥିବା ତର୍କାରି, ମାଛଭଜା, କୁକୁଡ଼ା ମାଂସ ଓ ବିରିଆନି । ଅଥଚ, ମୋ ଅଣ-ବୁଢ଼ୀମା ଥିଲେ ଶାକାହାରୀ । ଆମିଷ ବାସ୍ନା ତାଙ୍କୁ ବିଚଳିତ କରୁଥିଲା । କ୍ରମେ କ୍ରମେ ତାଙ୍କର ଖାଇବାର ପ୍ରବୃତ୍ତି କମିଗଲା । ଦିନକୁ ଦିନ ସେ ହେଲେ ଦୁର୍ବଳ । ଅବଶେଷରେ —କ୍ରମାଗତ ନୀରବତା ପରିଣତ ହେଲା ଅଖଣ୍ଡ ନୀରବତାରେ, ମୃତ୍ୟୁରେ । ତାଙ୍କ ମୃତ୍ୟୁର ଏକବର୍ଷ ପରେ ମୋ ମା ଅନୁତାପ କଲେ । କହିଲେ—ତାଙ୍କୁ ଜାଲିକଟ୍ ନ ଆଣି ଭୁଲ୍ ହେଲା ।

ବାସ୍ତବିକ ବୁଢ଼ା-ବୁଢ଼ୀମାନେ ଅନେକ କ୍ଷେତ୍ରରେ ଆଦରକାରୀ ବୋଝଭଳି ଅବାଞ୍ଛିତ । ସେମାନଙ୍କୁ ନିଃଶେଷ ହେବା ଉଦ୍ଦେଶ୍ୟରେ ପରିତ୍ୟାଗ ହିଁ କରାଯାଇ ଥାଏ ।

ଅନେକ ଥର ଅଣ-ବୁଢ଼ୀମାଙ୍କ କଥା ଭାବିଚି । ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା—ମୁଁ ଯେମିତି ତାଙ୍କ ଦଶା ନ ଭୋଗେ; ଯେମିତି ବାଞ୍ଛିତ, ପ୍ରୟୋଜନୀୟ ଓ ଆନନ୍ଦମୁଖର ଥିବା ଅବସ୍ଥାରେ ମୋର ମୃତ୍ୟୁ ହୁଏ ।

# ଚଉତି ଋଷି

## ଥରକୁ ଥର ଫୋନ୍‌ରେ ଡାକ…

ବିଦାୟ ମାଗୁଛି ଆଜି ତୁମଠାରୁ ହେ ପ୍ରିୟନଗର !
ବୟସ୍କ ଆଖିରେ ମୋର ଲୁକ୍‌କାୟିତ ଲୁହ କେଉଁଠାରେ
ଏବଂ ଦୁଃଖ ପଥର ପରି ନୀରବ
ନଈର ନିଶ୍ଚଳ ତଟରେ ।

ବିଦାୟ…ବିଦାୟ…ବିଦାୟ
ଅବିସ୍ମରିତ ଆକାଂକ୍ଷା ବିରୋଧରେ ରୁଦ୍ଧ
ବାତାୟନ ସେପଟର କୋମଳ ମୂର୍ତ୍ତି
ଓ ବର୍ଷାଠାରୁ;
ଏ ଯାଏଁ ଅବହେଳିତ, ଏ ଯାଏଁ ଭଲପାଇ ନଥିବା
ହଳଦି ରଙ୍ଗର ଜହ୍ନଙ୍କଠାରୁ,
ସଶବ୍ଦରେ ଆକାଶରେ ଚକ୍‌କର କାଟୁଥିବା
ମାଂସଲୋଭୀ ପକ୍ଷୀମାନଙ୍କଠାରୁ
ସମୁଦ୍ର ତଟର ଲୋକଙ୍କଠାରୁ
ଯେଉଁମାନେ ଗ୍ଲାନ୍ତ ବା ବସନ୍ତ
କିନ୍ତୁ କଥା କହୁଥାନ୍ତି ସବୁବେଳେ ।

ମୁଁ ଯାଉଛି, ରେ ପ୍ରିୟନଗର !
ରଖିଥା ତୋର ଲୁହ, ତୋର କ୍ରୋଧ
ଓ ତୋର ହସ ଅନ୍ୟମାନଙ୍କ ପାଇଁ
ସେଇ ତରୁଣଙ୍କ ପାଇଁ ଯାହାଙ୍କ
ଦୃଷ୍ଟି ହୋଇ ନ ଥିବ ବିକୃତ ।

ସେମାନଙ୍କୁ ଦେବୁ :
ତୋର ବିଷାଦଭରା ଆଖିର ମମତା
ଓ ତାଙ୍କ କବରରେ ଫୁଲ ଦେବୁ,
ଦେବୁ ତାଙ୍କୁ ମର୍ମର ପାହାଚର ଉତ୍ତେଜନା,

ଦେଖୁ ତାଙ୍କୁ ପଥ-ପ୍ରାନ୍ତର
ହାସ୍ୟରେଳ ।

ଏ ମୋର ବିଦାୟ ବାଣୀ…
ନୀରବତାକୁ ଓ ଶବ୍ଦକୁ
ସେଇ ପଥମାନଙ୍କୁ ଯେଉଁଠି ମୁଁ
ଗୁଲିନାହିଁ କେବଳ ସ୍ୱପ୍ନବ୍ୟତୀତ
ସେଇ ଓଠମାନଙ୍କୁ ଯାହାଙ୍କୁ
ଚୁମ୍ବି ନାହିଁ କେବଳ ସ୍ୱପ୍ନ ଛଡ଼ା
ସେଇ ଶିଶୁମାନଙ୍କୁ ଯେଉଁମାନେ ଫୁଲପରି ସୁନ୍ଦର
କିନ୍ତୁ କେବେ ବି ଜନ୍ମହୋଇ ନାହାନ୍ତି
ମୋ ଗର୍ଭରୁ… ।

୧୯୭୨ ସାଲ ।

ବମ୍ବେରେ ବ୍ୟାଙ୍କ୍ ପରିଗ୍ଳନା ସମ୍ବନ୍ଧରେ ଏକ ନିର୍ଦ୍ଦିଷ୍ଟ ପାଠ୍ୟ-କ୍ରମ ଆୟୋଜିତ ହୋଇଥିଲା । ସେଥିପାଇଁ ଦେଶ ବିଦେଶରୁ ବହୁ ଅତିଥି ଆସିଥିଲେ ବମ୍ବେକୁ । ତାଙ୍କ ଭିତରୁ ଜଣେ ଆମ ଘରକୁ ପ୍ରତିଦିନ ସଞ୍ଜରେ ଆସୁଥିଲେ ଓ ଆମ ସହିତ ସାନ୍ଧ୍ୟଭୋଜନ କରୁଥିଲେ । ତାଙ୍କର ଧମନୀରେ ସ୍ପେନ୍‌ର ରକ୍ତ ପ୍ରବାହିତ ହେଉଛି ବୋଲି ସେ ଦାବି କରୁଥିଲେ ।

ତାଙ୍କର ଭୋଜନ ପ୍ରଣାଳୀ ମଧ୍ୟ କିଛିଟା ଭିନ୍ନ ଧରଣର ଥିଲା । ତାଙ୍କର ଉଚ୍ଚତା ଥିଲା ମଧ୍ୟମ ଧରଣର; ମୁଣ୍ଡର ବାଳ ଥିଲା ଲୁହା ରଙ୍ଗର, ପୋମେଡ୍ ଲଗାଇଲା ପରେ ଯାହା କଳା ଦିଶୁଥିଲା । ତାଙ୍କର ଆଖି ଯୋଡ଼ିକ ଶୁଖିଲା ଅଙ୍ଗୁର ଭଳି ଦିଶୁଥିଲା । ମଝିରେ ମଝିରେ ସେ ଦୁଷ୍ଟାମିର ସହିତ ମୋତେ ଆଖିରେ ଇଙ୍ଗିତ ଦେଉଥିଲେ ।

ଦିନେ ମୋର ମୁଣ୍ଡ ବିନ୍ଧୁଥିଲା । ଟେବୁଲ୍ ନିକଟରେ ମୁଁ ବସିଥିଲି । ସେ ମୋ ବେକର ପଛ ଭାଗକୁ ଚିପିଦେଲେ ତାଙ୍କର ଆଙ୍ଗୁଳିରେ, କୋମଳ ଭାବରେ, ମୋର ବିନ୍ଧାବିନ୍ଧ ଛାଡ଼ିଲା ପର୍ଯ୍ୟନ୍ତ । ମୁଁ ଶୋଇପଡ଼ିଲି ବି । ସେ କହିଲେ—"ମୁଁ ଜଣେ ମାନ୍ତ୍ରିକ ।"

ମୋ ସ୍ୱାମୀ ତାଙ୍କ ସହିତ ମିଳାମିଶା କରିବାକୁ ଭଲ ପାଉଥିଲେ । କାରଣ ସେ ଅନେକ ରସରସିଆ ଗପ ଜାଣିଥିଲେ ଓ ବେଶ୍ ହସାଇ ପାରୁଥିଲେ ଆମକୁ ।

ଦନେ—ସେ ମୋ ସ୍ୱାମୀଙ୍କୁ କହିଲେ 'ମି: ଦାସ, ତୁମ ସ୍ତ୍ରୀଙ୍କ ପାଇଁ ପାଣି ଗିଲାସେ ଆଣି ଦିଅ ।' ସ୍ୱାମୀ ପାଣି ଆଣିବାକୁ ଗଲେ । ସେଇ ଅବକାଶରେ ସେ ମୋର ଗଣ୍ଡ ଦେଶରେ ସରୁ ଚୁମ୍ବନଟିଏ ଆଙ୍କି ଦେଲେ । ମୁଁ ତତ୍‌କ୍ଷଣାତ୍ ଚଉକିରୁ ଉଠିପଡ଼ିଲି । ସେ ଅତି ମଧୁର ଓ ଅନୁଚ୍ଚ ସ୍ୱରରେ କହିଲେ—"ତୁମେ କଣ ମୋତେ ଆଦୌ ଭଲପାଅନା ।"

ଆମେ ଡନହେଁ ଯାଉଥିଲୁ ଭଲ୍‌ଗାକୁ, ଅନୁଚ୍ଚ ଓ ଉତ୍ତେଜନାପୂର୍ଣ୍ଣ ସଙ୍ଗୀତ ଶୁଣିବାକୁ ଓ ନାଚିବାକୁ । ଆମର ବିଦେଶୀ ବନ୍ଧୁ ଜଣକ ଭଲ ନାଚ ପାରୁଥିଲେ । ନାଚ ଚାଲିଥିଲାବେଳେ ସେ ବସି ରହିବାକୁ ଆଦୌ ଇଚ୍ଛା କରୁ ନଥିଲେ । ସେ କହିଲେ—ମୁଁ ତୁମକୁ ଶିଖାଇଦେବି ଏବଂ ତା'ପରେ ମୁଁ ତାଙ୍କ ସହିତ ନାଚିଲି । ତନ୍ଦ୍ରାଳ ଆଖିରେ ଟେବୁଲ୍ ନିକଟରେ ବସି ମୋ ସ୍ୱାମୀ ଲକ୍ଷ୍ୟ କରୁଥିଲେ ଆମକୁ । କେତେକ ସନ୍ଧ୍ୟାରେ—ଚର୍ଚ୍ଚଗେଟ୍ ନିକଟରେ ମିଳୁଥିବା ମଲ୍ଲୀ, ମାଳତୀ ଜାତୀୟ ପୁଷ୍ପଗୁଚ୍ଛ କିଣି ଆଣି ବନ୍ଧୁ ଜଣକ ସଜାଇ ଦେଉଥିଲେ ମୋର କବରୀ । ଫୁଲ ସଜାଇ ଦେଲାବେଳେ ସେ ମିଠା ସ୍ୱରରେ କହୁଥିଲେ—"ତୁମେ ମୋର ପ୍ରେମିକା, ମୋର ସୁନ୍ଦରୀ ପ୍ରେମିକା···"

ପୁରୁଷ ଜଣକ ବାପାଙ୍କ ବୟସର ହୋଇଥିବାରୁ ମୋର ସ୍ୱାମୀ ଏଇସବୁ ଘଟଣା ଉପରେ ଆଦୌ ଗୁରୁତ୍ୱ ଆରୋପ କରୁ ନ ଥିଲେ । ପୁରୁଷମାନଙ୍କ ସୁଦୃଷ୍ଟିରୁ ମୁଁ ମଧ୍ୟ ଏକାନ୍ତ ଭାବେ ବଞ୍ଚିତ ନ ଥିଲି ।

ମୋତେ ଭଲପାଉଥିବା ଓ ବିବାହ କରିବାକୁ ଇଚ୍ଛା ପ୍ରକାଶ କରୁଥିବା ଜାର୍ଲେ; ଦୂର ସହରରେ ରହିଥିବା ମୋର ଏକଦା ପ୍ରିୟବନ୍ଧୁ ସେଇ ଧୂସର-ଚକ୍ଷୁ ସମ୍ପନ୍ନ ଯୁବକ, ଏବଂ ଘରେ ଥିଲେ ମୋର ସ୍ୱାମୀ ଯେ କି ପ୍ରେମିକ ଭଳି ଆକାଂକ୍ଷା ଓ ଆବେଗରେ ପୂର୍ଣ୍ଣଥିଲେ ।

କୌଣସି ଦରିଦ୍ର ବାଳିକା ହଠାତ୍ ଧନୀ ହୋଇଗଲେ ଯେପରି ହୁଏ ସେପରି ଥିଲା ମୋର ଅବସ୍ଥା । ମୁଁ କ୍ଷମତାର ମଦ୍ୟପାନ କରିଥିଲି ଯେମିତିକି । ମୁଁ କେଶ ପ୍ରସାଧନର ଶୈଳୀ ବଦଳାଇ ଦେଲି, ସାନ ସାନ କରିଦେଲି ବାଳ ସବୁକୁ, ଚୂର୍ଣ୍ଣ ଅଳକାମାନଙ୍କୁ ସଜାଇ ପକାଇଦେଲି କପାଳ ଉପରେ । କଳା ବ୍ଲାଉସ୍ ସାଙ୍ଗକୁ ଶୁଭ୍ର ରଙ୍ଗର ଶାଢ଼ୀ ପିନ୍ଧିଲି ପ୍ରଚ୍ଛଦନ ସଜ୍ଜାରେ । ମୋର ସ୍ୱାସ୍ଥ୍ୟ ଥିଲା ଅପୂର୍ବ । ଏପରିକି ମୋର ନିଶ୍ୱାସ ଥିଲା ମାଦକ ଭରା ।

ଆମେ ସେତେବେଳେ ଧୂନାଷ୍ଟ୍ରରେ ପାଞ୍ଚମହଲାର ଗୋଟିଏ ଫ୍ଲାଟ୍‌ରେ ରହୁଥିଲୁ । ବାରଣ୍ଡାଟିଏ ଥିଲା । ବାରଣ୍ଡାରୁ ଦିଶୁଥିଲା ଜାପାନୀ ଦୂତାବାସର ହଳଦିଆ କୋଠା, ଏକ ମନୋରମ ବଗିଚା ଓ ବଗିଚାରେ ସ୍ଥାପିତ ବୃହତ୍ ମର୍ମ୍ମର ମୂର୍ତ୍ତି ।

ସକାଳ ବେଳା ଗାଧୋଇ ସାରି ମୁଁ ଠିଆ ହେଉଥିଲି ବାରଣ୍ଡାରେ । ଦୁଷ୍ଟ ପବନ ମୋର ଲୁଗାପଟାକୁ ଅସ୍ତବ୍ୟସ୍ତ କରିବାର ଅନୁଭୂତି ମୋତେ ଭଲ ଲାଗୁଥିଲା । ହଠାତ୍ ଆମ ଘରେ ନବ-ସ୍ଥାପିତ ଫୋନ୍‌ରେ ରିଂ ହେଲା । ଫୋନ୍ ଉଠାଇ ମୁଁ ଜଣେ ଅପରିଚିତର କଣ୍ଠସ୍ୱର ଶୁଣିବାକୁ ପାଇଲି । ବ୍ୟକ୍ତି ଜଣକ କହିଲେ— "ମୁଁ ଅମୁକ··· । ସୁ-ପ୍ରଭାତ । ଗତ କେତେ ସପ୍ତାହ ଧରି ମୁଁ ତୁମକୁ ଲକ୍ଷ୍ୟକରି ଆସୁଛି ଦୂରରୁ । ମୁଁ ତୁମ ପ୍ରେମରେ ପଡ଼ିଯାଇଛି··· ।" ମୁଁ ସାଙ୍ଗେ ସାଙ୍ଗେ ରିସିଭର୍ ଥୋଇଦେଲି । ମୋତେ ଭୟ ଲାଗିଲା । ଗଲି ଦର୍ପଣ ସମ୍ମୁଖକୁ, ବାରମ୍ବାର ଲକ୍ଷ୍ୟ କଲି ନିଜକୁ । ଭାବିଲି—ମୁଁ କଣ୍ କୌଣସି ଗଣିକାଭଳି ଦିଶୁଛି ? ସହଜରେ ପାଇହେଲା ଭଳି ଯୁବତୀ ପରି ମୁଁ କଣ୍ ମନେ ହେଉଛି ? ଏଇ ଫୋନ୍ ବିଷୟରେ ମୁଁ ମୋ ସ୍ୱାମୀଙ୍କୁ କହିଲି । ସେ କଥାଟା ଉପରେ ବିଶେଷ ଗୁରୁତ୍ୱ ଦେଲେ ନାହିଁ ।

ସେଇ ବ୍ୟକ୍ତି ବାରମ୍ବାର ବିଭିନ୍ନ ସର୍ବସାଧାରଣ ଫୋନ୍ ବୁଥ୍‌ରୁ ମୋତେ ରିଂ କଲେ । ପଇସା ଗଳେଇବାର ଶବ୍ଦ ଓ ସୁପ୍ରଭାତ···ଶୁଣିପାରିଲି । ମୋତେ ବ୍ୟସ୍ତ ଲାଗିଲା । ହଠାତ୍ ଏଇ ଘଟଣାର ଶେଷ କରିବାକୁ ଯାଇଁ ମୁଁ ତାଙ୍କୁ ନିମନ୍ତ୍ରଣ କଲି ଆମ ଘରକୁ । କିନ୍ତୁ ସେ ସାଙ୍ଗେ ସାଙ୍ଗେ କ୍ଷମା ମାଗିନେଲେ । କହିଲେ— ମୋ ସହିତ କାଳେ ତାଙ୍କ ପତ୍ନୀଙ୍କର ସାଦୃଶ୍ୟ ଅଛି, ଓ ସେଥିପାଇଁ ମୋତେ ଦେଖିଲେ ତାଙ୍କର ପତ୍ନୀ ମନେ ପଡ଼ୁଛନ୍ତି । କ୍ଷମା ଦେବାଟା ନାରୀ ପକ୍ଷରେ ସୁଖ ଓ ଗର୍ବର କଥା । ମୋ ପକ୍ଷରେ ସେତେବେଳେ ତାହାଥିଲା ସହଜ ।

ଜୀବନର ଏଇପରି ଏକ ସମୟରେ ମୋ ସ୍ୱାମୀ କଲିକତାକୁ ବଦଳି ହୋଇଗଲେ, ତିନିବର୍ଷ ପାଇଁ । ତାହା ମୋର ଶାନ୍ତିଭଙ୍ଗ କଲା । ମୋତେ କେବଳ ଶିଶୁ-ଚିକିତ୍ସା ବିଜ୍ଞାନ ବିଷୟରେ ପଢ଼ୁଥିବା ମୋର ସାନ ଭାଇକୁ ଛାଡ଼ି ଯିବାକୁ ପଡ଼ିଲା ନାହିଁ, ତାହା ସହିତ ମୋତେ ସାମାନ୍ୟ ଭଲପାଉଥିବା ମୋର ବନ୍ଧୁ ଜଣଙ୍କୁ ମଧ୍ୟ ।

କିନ୍ତୁ ସ୍ୱାମୀଙ୍କର ଉପରିକ ଅଫିସର ଥିଲେ ଜିଦ୍‌ଖୋର । ଆମକୁ କଲିକତା ଯିବାକୁ ହେଲା । ପ୍ଲାଟ୍‌ଫର୍ମରେ ରହିଗଲା ସାନ ଭାଇ । ଲୁହ ଛଳ ଛଳ ଥିଲା ତାର ଆଖି । ତଥାପି ସେ ସାହସର ସହିତ ରୁମାଲ୍ ଉଡ଼ାଇ ବିଦାୟ ଦେଉଥିଲା । ତାର ରୁମାଲ୍ ଦିଶୁଥିଲା ପତାକା ଭଳି । ଆମେ ଆସିଲାବେଳେ ଜଣେ ଆତ୍ମୀୟ ମୋତେ ସତର୍କ କରି କହିଥିଲେ—ଦେଖ, ତୁମ ସ୍ୱାମୀଙ୍କ ଆତ୍ମୀୟଙ୍କ ସହିତ ଜଗିରଖି ଚଳିବ । ସେମାନେ ଚତୁର । ତାଙ୍କ ସହିତ ଏତେ ଖୋଲାଖୋଲି ବ୍ୟବହାର ସ୍ପୃହଣୀୟ ନୁହେଁ । ଏତେଟା ନିର୍ବାହ ହେବା ତୁମ ପକ୍ଷରେ ଆଦୌ ଉଚିତ ହେବ ନାହିଁ ।

# ପଞ୍ଚଦଶଶି

## କଲିକତାର କକ୍‌ଟେଲ୍ ଋତୁ...

କମଳା ରସ ପରି
ମୋ ଗ୍ଲାସ୍‌ରେ
ଏପ୍ରିଲ୍‌ର ସୂର୍ଯ୍ୟଙ୍କ ବ୍ୟଗ୍ରତା
ଇଏ ଆଉ କଣ୍ ଯେ ! ମୁଁ ତ
ନିଆଁ ପିଉଚି, ପିଉଚି ବାରମ୍ବାର
ଓ ମୁଁ ମଉଆଲ୍
ହଁ, କିନ୍ତୁ ସୂର୍ଯ୍ୟମାନଙ୍କର
ସ୍ୱର୍ଣ୍ଣାଭତାରେ । କେଡ଼େ ମଙ୍ଗଳ କର

ବୃଷ ବର୍ତ୍ତମାନ ପ୍ରବାହିତ ମୋର ଶିରାରେ
ଏବଂ ଅଚଞ୍ଚଳ ହାସ୍ୟରେ
ପୂର୍ଣ୍ଣ କରୁଚି ମୋର ମାନସ ?
ମୋର ଦୁଃଖସବୁ 'ତନ୍ଦ୍ରାଚ୍ଛନ୍ନ ।
ଗ୍ଲାସ୍‌ରେ ଗ୍ଲେଟ ଗ୍ଲେଟ ବୁଦ୍‌ବୁଦର
କ୍ଷଣିକ କୁଣ୍ଡଳାକାର,
ବଧିର ନର୍ଭସ୍ ହସ ପରି
ଏବଂ ଭେଟେ ମୋର ଓଠକୁ ।
ବନ୍ଧୁ ! କ୍ଷମା ଦିଅ ତୁମକୁ ଖୋଜୁଥିବା
ଏଇ ମୁହୂର୍ତ୍ତର ତନ୍ଦ୍ରାଳତାକୁ,
ସ୍ମୃତିର ଦାଗକୁ ।

ମୋର ଅନୁରକ୍ତିର କାଳ
କେଡ଼େ ସଂକ୍ଷିପ୍ତ ! କେଡ଼େ ସଂକ୍ଷିପ୍ତ
ତୁମର ସଜାଡ଼ି ଯେତେବେଳେ ହାତରେ
ଗ୍ଲାସ୍ ଧରି ମୁଁ ଖାଲି ପିଇବାରେ ବ୍ୟସ୍ତ
ଏବଂ ପୁନର୍ବାର ପାନ କରେ ଯେବେ
ବୈଶାଖ ସୂର୍ଯ୍ୟର ନିର୍ଯ୍ୟାସ ।

କୋଡ଼ିଏଠାରୁ ଅଣିବର୍ଷ ବୟସର ପିଲାମାନଙ୍କ ପାଇଁ କଲିକତା ଗୋଟିଏ ଖେଳ ପଡ଼ିଆ । ଶୀତ କାଳକୁ ସେଠାରେ କକ୍‌ଟେଲ୍ ଋତୁ କୁହାଯାଏ । ସାଧାରଣତଃ ଶିଳ୍ପ-ପତିମାନେ ଏଇ କକ୍‌ଟେଲ୍ ସବୁରେ ଭାଗ ନେଇଥାନ୍ତି । ତା' ବ୍ୟତୀତ ବିଦେଶୀ ଶିଳ୍ପାନୁଷ୍ଠାନର କର୍ମାଧିକାରୀମାନେ ଓ ମଦ୍ୟନିଜସ୍ୱ କରିବାର କ୍ଷମତା ନଥିବା କାରଣରୁ ଅନ୍ୟ ଉପରେ ରଙ୍ଗ-ରସ ବା 'ଫନ୍' ପାଇଁ ନିର୍ଭର କରୁଥିବା ସରକାରୀ କର୍ମଚାରୀମାନେ ମଧ୍ୟ କକ୍‌ଟେଲ୍‌ର ପ୍ରାର୍ଥୀ ହୋଇଥାନ୍ତି ।

ସରକାରୀ କର୍ମଚାରୀମାନେ ସେମାନଙ୍କ ନିର୍ବୋଧ ପତ୍ନୀମାନଙ୍କୁ ମଧ୍ୟ ଟାଣି ଆଣିଥାନ୍ତି ପାର୍ଟିକୁ, ସେମାନଙ୍କର ସୌନ୍ଦର୍ଯ୍ୟ ଓ କୋମଳତାରେ ଧନୀମାନଙ୍କୁ ବଶୀଭୂତ କରିବା ଆଶାରେ । ସରକାରୀ-ପତ୍ନୀମାନଙ୍କ ସାକ୍ଷାତ ଧନୀମାନଙ୍କ ପକ୍ଷରେ ହୋଇଥାଏ ଉପଭୋଗ୍ୟ । ଏବଂ ଯେଉଁମାନେ ତଥାପି ତରୁଣୀ ଥା'ନ୍ତି ସେମାନଙ୍କ ହାତରେ ଗ୍ଲାସ୍ ଧରାଇ କେତେକ ମିଠାସ୍ୱରରେ କହୁଥାନ୍ତି—"ପିଅ, ଦୟାକରି ପିଅ ତ, ଏଇ ସାମାନ୍ୟ ପିଇବାରେ ତୁମର ସୁନ୍ଦର ଚକ୍ଷୁ ଯୁଗଳରେ କିପରି ଜ୍ୟୋତି ଫୁଟି ଉଠୁଛି ତାହା ମୁଁ ଦେଖିବାକୁ ଚାହେଁ··· ।"

ଏବଂ, ନିର୍ବୋଧ ମହିଳାଟି ଥରେ-ଦି'ଥର ପାନ କରିବା ପରେ ଧନବାନ୍ ପୁରୁଷଟି ଆଗେଇ ଯାଏ ତା' ନିକଟକୁ, ଆପଣାର ଉତ୍ତେଜକ ସେଣ୍ଟ୍-ଲୋସନ୍-ର ମାଦକୀୟ ବାସ୍ନା ଯୋଗେ ବଶୀଭୂତ କରିନିଏ ତାକୁ ଏବଂ ଅନୁଚ୍ଚ ଗଳାରେ କହେ—"କେଡ଼େ ସୁନ୍ଦର ଆଜି ତୁମର ଗୋଲାପି ଗାଲ, ମୋର ଭୋକିଲା ଆଖି ପକ୍ଷରେ ତୁମର ଏ ରୂପ ଆଜି ଏକ ସମ୍ଭ୍ରାନ୍ତ ଭୋଜି ଭଳି ।' ଠିକ୍ ସେଇ ମୁହୂର୍ତ୍ତରେ ମହିଳା ଜଣକର ଆଖିରେ ତା'ର ସ୍ୱାମୀ ପଡ଼ିଯାଏ, ଭୟରେ ଦୁଲୁକି ଯାଏ ତାର ଛାତି । ପତ୍ନୀଟି ହଲ୍‌ର ଭିନ୍ନ କୋଣରେ ଶିଳ୍ପପତିଙ୍କ ସହିତ ଜାପାନୀ ବାଳିକାଙ୍କ ବିଷୟରେ ଗପ କରେ, ଅଥବା, କୁଣ୍ଡରେ ବର୍ଦ୍ଧିତ ତାଳଗଛର ଓସାରିଆ ପତ୍ରର ଅନ୍ତରାଳରେ ଢାଳି ଦିଏ ହ୍ୱିସ୍କି ଶିଳ୍ପପତିଙ୍କର ଗ୍ଲାସ୍‌ରେ । ଚତୁର ଶିଳ୍ପପତିମାନେ ସାବଧାନତାର ସହିତ ଆପଣା ଆପଣାର ପତ୍ନୀମାନଙ୍କୁ ଘରେ ଛାଡ଼ି ଆସିବାକୁ କେବେ ବି ଭୁଲନ୍ତି ନାହିଁ ।

କେବଳ ମଦ୍ୟପାନ ପାଇଁ ଏ ପ୍ରକାର ଚତୁରତା ଓ ପାର୍ଟିରେ ତା' ପ୍ରତି ଉଦାସୀନତା ବିଚରା ପତ୍ନୀଟିକୁ ବିରକ୍ତିକର ଲାଗେ । କ୍ରମେ ସେ ଅଧିକରୁ ଅଧିକ ପରିମାଣରେ ପିଇବାକୁ ଆରମ୍ଭ କରେ । ପିଇବା ଯେ ତାକୁ ଭଲ ଲାଗେ ତା' ନୁହେଁ । କେବଳ ସ୍ୱାମୀଙ୍କ ଉପରକୁ ଥୁ-ଥୁ କରିବା ପାଇଁ ସେ ପିଏ । କାରଣ ତାର ଏ କଦର୍ଯ୍ୟ ସ୍ଥଳକୁ ଆସିବା ପାଇଁ ଦାୟୀ ସେ ହିଁ ।

ପରିଶେଷରେ, ବିଚାରି ପତ୍ନୀଟିକୁ ବିଚଳିତ ଭାବରେ ସ୍ନାନାଗାରକୁ ଯିବାକୁ ପଡ଼େ, ମୁହଁଧୁଆ ବେସିନ୍‌ରେ ନଇଁବାକୁ ପଡ଼େ ଅସୁସ୍ଥତାବଶତଃ । ସେତିକି-ବେଳେ ହୁଏତ ଅତିଥି-ସତ୍କାରକ ଅଥବା ଅନ୍ୟ କେହି ରୂପ-ପିପାସୁ ଧାଇଁଆସି ଆଉଁସି ଦିଅନ୍ତି ତା'ର ଖୋଲପିଠି, ବେକମୂଳ, ଓ ମୁହଁ ଉଠେଇ ସଚେତ ହେବାକୁ ସାହାଯ୍ୟ କରନ୍ତି । ଏବଂ ସେଇ ସୁଯୋଗରେ ସେ ସ୍ପର୍ଶ କରିନିଅନ୍ତି ତା'ର ମସୃଣ କୋମଳ ଅଙ୍ଗଗୁଡ଼ିକ, ଅବଶ୍ୟ ଭୁଲ୍‌ବଶତଃ । ତା'ର ସ୍ୱାମୀ ସେତେବେଳେ କୌଣସି ସୋଫାରେ ଚେତାଶୂନ । ଏକ ଭଜନ ମାଗଣା ପାନୀୟ ଶେଷ କରିବା ପରେ ହୁଏତ ସେ କେବଳ ମଦ୍ୟ-ମସ୍ତ ସ୍ୱପ୍ନ ହିଁ ଦେଖୁଥାନ୍ତି ଶୋଇ ଶୋଇ । ତାଙ୍କୁ ସୋଫାରୁ ଉଠେଇ ଘରକୁ ନେବାପାଇଁ ତ ଗୋଟାଏ ସୈନ୍ୟବାହିନୀର ଆବଶ୍ୟକ । ସେଥିପାଇଁ ସବୁ ଆଶା ପରିତ୍ୟାଗ କରି ବିଚାରି ତରୁଣୀଟି ବସି ରହେ କେଉଁଠି ନା କେଉଁଠି, ଆଖି ତାର ଛଳଛଳ ହୋଇଥାଏ । ସେତେବେଳେ କୋମଳ-ହୃଦୟ ସମ୍ପନ୍ନ ପୁରୁଷମାନେ ପାଶବିକ ଆଲିଙ୍ଗନରେ ତାକୁ ଆଶ୍ୱାସନା ଦିଅନ୍ତି ଓ ପୋଛି ନିଅନ୍ତି ତାର ଅଶ୍ରୁ ।

ଶୀତ ଋତୁରେ ଏଇପରି ଖେଳ ସବୁ କଲିକତାରେ ଚାଲେ । ବଙ୍ଗାଳୀମାନେ ସମସ୍ତେ ଜଣେ ଜଣେ ଅଭ୍ୟସ୍ତ ମିଥ୍ୟାବାଦୀ । ମିଛ କହିବା ତାଙ୍କ ନିକଟକୁ ଏତେ ସହଜ ଭାବରେ ଆସେ ଯେ ସେମାନେ ଅତ୍ୟନ୍ତ ନିର୍ବୋଧ ଭାବରେ ଅନ୍ୟମାନଙ୍କୁ ସହଜରେ ଠକି ପାରନ୍ତି । ସେଇ ସମାଜକୁ ଯେ ନବାଗତ ସେ ଉପହସିତ ହୁଏ । ଅନ୍ୟମାନଙ୍କ ପରିହାସରେ ସେ ହୁଏ ଜର୍ଜରିତ । ପ୍ରଥମେ ଯେଉଁ ଜଣକ ମୋତେ ଆଲିଙ୍ଗନ କରି ସ୍ୱାଗତ ସମ୍ଭାଷଣ ଜଣାଇଥିଲେ, ପରେ ସେ ହିଁ ମୋ ନାମରେ କୁତ୍ସା ପ୍ରଚାର କରିଥିଲେ । କଲିକତାରୁ ହିଁ ମାନବଠାରେ ଉତ୍ତମ ସ୍ୱଭାବ ଥିବା ବିଷୟ ଯେଉଁ ମୋ ମନରୁ ସବୁ ବିଶ୍ୱାସ ଦୂରେଇ ଗଲା ।

ଜଣେ ସୁସ୍ଥ ଓ ଦୟାଶୀଳ ବ୍ୟକ୍ତି ଆମର ପ୍ରତିବେଶୀ ଥିଲେ । ମଝିରେ ମଝିରେ ମୁଁ ଓ ମୋ ସ୍ୱାମୀ ତାଙ୍କ ଘରକୁ ଯାଉଥିଲୁ ଏବଂ ଚାଉଳ ସୁଜି ଓ ଆଳୁରେ ପ୍ରସ୍ତୁତ ହୋଇଥିବା ସୁସ୍ୱାଦୁ ଉପମା ଖାଉଥିଲୁ ତାଙ୍କ ସହିତ । ବେଲପଣା ମଧ୍ୟ ପିଉଥିଲୁ ସେଠାରେ । ଆମେ ତାଙ୍କୁ ମାମୁଁ ପରି ମାନୁଥିଲୁ । ମୁଁ ଯେତେବେଳେ ଇଚ୍ଛା କରୁଥିଲି ସେତେବେଳେ ସେ ମୋତେ ସଂସ୍କୃତ ପଢ଼ାଉଥିଲେ । କିନ୍ତୁ ତାଙ୍କ ଉଚ୍ଚାରଣ ଶୁଣିଲେ ମୋତେ ହସ ମାଡ଼ୁଥିଲା ।

କୌଣସି ପ୍ରକାରର ଆଣ୍ଠୁ-ଗଣ୍ଠିଧରା ଜ୍ୱରରେ ମୁଁ ଯେତେବେଳେ ପୀଡ଼ିତ ଥିଲି ସେ ଆସିଥିଲେ ଆମ ଘରକୁ । ନିଜ ସହକର୍ମୀଙ୍କ ବିଷୟରେ

ନାନାପ୍ରକାରର ରସ-ରସିଆ କଥା କହି ସେ ମୋତେ ହସ-ହସ ରଖୁଥିଲେ । ପୀଡ଼ିତ ଗୋଡ଼ଟିକୁ ଘସା-ଘସି କରି ଦେଉଥିଲେ ବି ।

ସେ ମୋତେ ପ୍ରକୃତ ନାମଧରି ଡାକୁ ନ ଥିଲେ, ଡାକୁଥିଲେ—ଗାୟତ୍ରୀ । ହିନ୍ଦୁ ପୁରାଣ ଓ ଉପନିଷଦ୍ ବିଷୟରେ ସେ ଥିଲେ ବିଶେଷ ଆଗ୍ରହୀ । ମୋର ସ୍ୱାମୀଙ୍କର ଆତ୍ମୀୟମାନେ ମୋତେ ଓ ତାଙ୍କୁ ନେଇ ଅପବାଦ ସୃଷ୍ଟି କଲେ । ମୋ ସହିତ କାଳେ ତାଙ୍କର ପ୍ରେମ ସମ୍ପର୍କ ଥିଲା । ତାହା ଶୁଣିଲି ଦିନଠାରୁ ମୁଁ ତାଙ୍କପ୍ରତି ବିରକ୍ତ ହୋଇ ଉଠିଲି । ପ୍ରକୃତରେ ମୋର ସ୍ୱାମୀଙ୍କ ଆତ୍ମୀୟମାନଙ୍କ ଉପରେ ବିରକ୍ତ ହେବାର ଥିଲା ।

ତା'ପରେ ପରେ ମୁଁ ତାଙ୍କ ସହିତ ସାକ୍ଷାତ ଓ ମିଶିବା ଆଡ଼େଇଲି । ତାଙ୍କୁ ଆମ ଘରକୁ ଆସୁଥିବା ଦେଖିଲାକ୍ଷଣି ମୁଁ ସ୍ନାନ-ଘର ଭିତରେ ଲୁଚିଯାଇ ବାହାରକୁ ଯାଇଥିବାର ଛଳନା କରୁଥିଲି । ଦିନେ ସେ ଗୋଟିଏ ଫୁଲହାର କିଣି ମୋର ସ୍ୱ-ପ୍ରସ୍ତୁତ ଛବି ଉପରେ ଝୁଲାଇ ଦେଲେ । ମୋର ସେଇ ଛବିଟି ବୈଠକ-ଘରେ ଝୁଲୁଥିଲା । ତା' ଦେଖି ମୁଁ ରାଗରେ ଜର୍ଜର ହୋଇଗଲି । ସେ ପଚାରିଲେ—"ତୁମେ ଏମିତି ରାଗୁଚ କାହିଁକି ?" ମୁଁ କିଛି କହିଲି ନାହିଁ । ବୃଦ୍ଧ ବ୍ୟକ୍ତିଙ୍କ ପ୍ରତି ମୋର ସ୍ୱଭାବ ଓ ଆଚରଣରେ ସହସା ପରିବର୍ତ୍ତନ ଦେଖି ମୋ ସ୍ୱାମୀ ମଧ୍ୟ ପ୍ରତିକ୍ରିୟା ପ୍ରକାଶ କଲେ । ସେ କହିଲେ—"ତୁମର ଏ ଆଚରଣ ପଛରେ କୌଣସି ଯୁକ୍ତି ନାହିଁ ।"

ସେତେବେଳେ ମୁଁ କେବଳ ଲୁଙ୍ଗି ଓ କଳାରଙ୍ଗର ସାର୍ଟ୍ ପିନ୍ଧୁଥିଲି । ଲୁଙ୍ଗି ପିନ୍ଧିବା ସେତେବେଳେ ଫେସନ୍‌ରେ ପରିଣତ ହୋଇ ନ ଥିଲା । ତେଣୁ ବନ୍ଧୁ-ବାନ୍ଧବ ଓ ଆତ୍ମୀୟମାନେ ମୋତେ ଭିନ୍ନ ଦୃଷ୍ଟିରେ ବିଚାର କଲେ । ମୁହଁକୁ ସୁନ୍ଦର କରିବା ପାଇଁ ମୁଁ କିଛିହେଲେ କରୁ ନ ଥିଲି । ଭଲ ଲୁଗାପଟା କିଣିବାକୁ ଆମର ଯଥେଷ୍ଟ ଅର୍ଥ ମଧ୍ୟ ନ ଥିଲା । ଯଦି କିଛି କେବେ ଅର୍ଥ ମୋତେ ମିଳୁଥିଲା ମୁଁ ସେସବୁ ବହି କିଣିବାରେ ଖର୍ଚ୍ଚ କରୁଥିଲି ।

ପାର୍ଟିରେ ଯୋଗ ଦେବାପାଇଁ ମୋର ମାତ୍ର ତିନିଖଣ୍ଡ ସିଲ୍‌କ ଶାଢ଼ୀ ଥିଲା । ସେସବୁ ବିବାହ ସମୟର ଉପଢୌକନ । ତା' ଭିତରୁ ଦୁଇଟି ଥିଲା କମଳାରଙ୍ଗର ଓ ଗୋଟିଏ ସବୁଜ ରଙ୍ଗର । ପାର୍ଟିରେ ପ୍ରବେଶ କରିବା ମାତ୍ରେ କେବଳ ସେଇ ପୁରାତନ ଶାଢ଼ୀକୁ ଦେଖି ମହିଳାମାନେ ଯେ ହସି ଉଠୁଥିଲେ ତାହା ମୁଁ ଆଦୌ ଜାଣି ନ ଥିଲି ।

ଯଦ୍ୟପି ମୋ ଶାଢ଼ୀ ସ୍ଥାନେ ସ୍ଥାନେ ଛିଣ୍ଡି ଯାଇଥିଲା ତଥାପି ମୋର ଗୃହପାଖରେ ମୋ କଥା ଶୁଣିବାକୁ ଭିଡ଼ ଜମି ଯାଉଥିଲା । ଅଳ୍ପ କମ୍‌ରେ ମୋ ସହିତ ଗଭୀର ଅନୁରକ୍ତ ଥିଲେ ଏକ ଡଜନ୍‌ରୁ ଅଧିକ । ତଥାପି, କଲିକତାକୁ ମୁଁ ଡରୁଥିଲି । ଦୂରେଇ ଯିବାକୁ ଇଚ୍ଛା କରୁଥିଲି ।

କଲିକତାରେ ସେଇ ପ୍ରଥମ ବର୍ଷ । ବମ୍ବେରୁ ଜଣେ ପରିଦର୍ଶକ ଆସିଥିଲେ । ତାଙ୍କ ସହିତ ପ୍ରାତଃଭୋଜନ କରିବା ପାଇଁ ସେ ଆମକୁ ତାଙ୍କର ହୋଟେଲ୍ ରୁମ୍‌କୁ ନିମନ୍ତ୍ରଣ କଲେ । ସେ ଥିଲେ ବୌଦ୍ଧିକ ଓ ବହୁଶାସ୍ତ୍ରଦର୍ଶୀ । ମୋତେ ତ ବହୁ ବିଷୟରେ ଗପିବାକୁ ସବୁଠାରୁ ଭଲ ଲାଗୁଥିଲା । ଏଣୁ ତାଙ୍କ ନିକଟରେ ବସି ଗପ କରି ମୁଁ ଅଣ୍ଵସ୍ତି ହୋଇଥିଲି । ଆନନ୍ଦ ପାଇଥିଲି । ଥରେ ହଠାତ୍ ତାଙ୍କର ହାତ ସେ ମୋର ଜାନୁ ନିକଟରେ ଲଗାଇ ଦେଲେ । ତାଙ୍କର ହାତଟି ମୋର ଜଙ୍ଘ ଉପରେ ସ୍ଥିର ହୋଇ ପଡ଼ିରହିଲା ମୃଦୁ ଭାବରେ ।

ମୁଁ ଭାବିଲି—ଏହା ଦୈବାତ୍ ଓ ଭୁଲବଶତଃ । କିନ୍ତୁ କ୍ରମେ ତାଙ୍କର ହାତ ନଇଁଗଲା ମୋର ଜାନୁ ତଳକୁ ଓ ସ୍ଥିର ହୋଇଗଲା ସେଇଠି । ଏ କଣ୍ ହେଉଛି ? ଯଦ୍ୟପି ମୋ ପ୍ରେମରେ ପଡ଼ିଥିବା ବ୍ୟକ୍ତିଙ୍କ ସଂଖ୍ୟା ଅନେକ, କିନ୍ତୁ ଜଣେହେଲେ କେହି ପାଶବିକ ଆକାଂକ୍ଷା ପ୍ରଦର୍ଶନ କରି ନ ଥିଲେ । ଏହି ଭଦ୍ରଲୋକଙ୍କ ଆଚରଣରେ ମୁଁ ବିସ୍ମିତ ହେଲି । କଥାବାର୍ତ୍ତାବେଳେ ମୋ ପାଦରେ ପାଦ ବଜାଇବା ତାଙ୍କର ଅଭ୍ୟାସରେ ପରିଣତ ହୋଇଗଲା । ମୋ ବାଳ ବି ସେ ସାଉଁଳେଇ ଦେବାକୁ ପସନ୍ଦ କରୁଥିଲେ । ମୁଁ ପ୍ରାୟ ତାଙ୍କ ପ୍ରେମରେ ପଡ଼ିଯିବା ଉପରେ ଥିଲି ।

ଦିନେ ସେ ମୋତେ ନିବିଡ଼ ଭାବରେ ଆଲିଙ୍ଗନ କଲେ ଓ ଚୁମ୍ବନ ଦେଲେ ମୋ ଓଠରେ । ମୁଁ ସମ୍ମୋହିତ ହୋଇ ଠିଆ ହୋଇଗଲି । ସେ ମୋତେ ମୁକ୍ତ ଦେବାପରେ ମୁଁ ତାଙ୍କୁ ପଚାରିଲି—"ତୁମେ କଣ୍ ମୋତେ ଭଲ ପାଅ ?" ସେ କହିଲେ—"ତୁମକୁ ମୁଁ ଭଲପାଏ ।"

ଏ ବିଷୟ ଯେତେବେଳେ ମୁଁ ମୋ ସ୍ୱାମୀଙ୍କ ଆଗରେ ପ୍ରକାଶ କଲି ସେ ମୋତେ ସତର୍କ କରି କହିଲେ ସେପରି ଲୋକଙ୍କୁ ଭଲ ନ ପାଇବାକୁ । ତାଙ୍କ ମତରେ—ସେଇ ବ୍ୟକ୍ତି ନିଜ ବ୍ୟତୀତ ଅନ୍ୟ କାହାକୁ ପ୍ରେମ କରିବାକୁ ସକ୍ଷମ ନୁହଁ । ସ୍ୱାମୀ କହିଲେ—"ବୁଝିଲି ଆମି ! ମୋ ଆଖିରେ ତୁମେ ଏବେ ବି ପିଲା । ତୁମେ ଭୁଲି ଭୁଲି ପ୍ରେମ ଖେଳିପାର, କିନ୍ତୁ ଖେଳସାଥୀ ବାଛି ଶିଖ । ତୁମେ ଜୀବନରେ ଆଘାତ ପାଅ, ମୁଁ ଏହା ଚାହେଁନା··· ।"

# ଛତିଶି

## ମୁଁ ଥିଲି କାଠର୍ଲାଙ୍କ ସୀତା...

ମୁଁ ଆଜି ଏମିତି ଏକ ଜୀବ
ଯାହାର ଭିତରଟା ଆଜି ପଦାରେ ।
ତୁମ ଭାବନାର ପ୍ରଶସ୍ତ ରାଜପଥ ଉପରେ, ହେ ବିଦେଶି !
ଏକ ଉଦ୍‌ଘୋଷିତ ପୋଷ୍ଟର୍ ପରି
ଆପଣାକୁ ପ୍ରସାରିତ କରିଦେବା ଥିଲା ମୋର ଇଚ୍ଛା,

ଏବେ କିନ୍ତୁ ମୁଁ ତୁମକୁ ଲୁଚି ଲୁଚି
ଅପେକ୍ଷା କରୁଛି—ଯନ୍ତ୍ରଣାର ରୁଦ୍ଧ କାରାଗାରେ... ।

କେବଳ ଦୁଇଟି ଆଖି କହୁଛି...
ନା, ମନେ କରନା କିଛି ।
ମନର ଠିକଣା ଖୋଜି ଖୋଜି ମୁଁ କାଟିଛି ବହୁବର୍ଷ,
ଖୋଜିଛି ଚମଡ଼ାର ତଳେ
ଖୋଜିଛି ମାଂସର ତଳେ
ଖୋଜିଛି ହାଡ଼ର ସନ୍ଧିରେ ।

ମୋର ଦ୍ୱି-ଆସ୍ୱତନ ନଗ୍ନତାକୁ
ମୁଁ ପ୍ରସାରିତ କରିଦେଇଛି
ମାସିକ, ସାପ୍ତାହିକ, ଓ ଷଣ୍ମାସିକ ପତ୍ରିକା ସବୁରେ,
ଏକ ବିଷର୍ଣ୍ଣ ଆତ୍ମୋତ୍ସର୍ଗ ।

ଦୂରେଇ ଦେଇଛି ମୋର ବ୍ୟକ୍ତିଗତ ସ୍ୱରକୁ
ଟାଇପ୍ ମେସିନ୍‌ର ସ୍ୱର ଆଜି ମୋର ଏକମାତ୍ର ସ୍ୱର
ହେ ବିଦେଶି ! ତୁମକୁ ଶୁଣାଇବା ପାଇଁ
ମୁଁ ଆଜି କ୍ଲିକ୍, କ୍ଲିକ୍ କରୁଛି ଅକ୍ଳାନ୍ତ ଆବେଗରେ,
ଯଦିଓ ତୁମେ ଆଉ ରହୁଁ ନ ଥିବ ମୋତେ,
ତଥାପି ମୁଁ କ୍ଲିକ୍—କ୍ଲିକ କରି ଚାଲିଛି
ଜାଣିନି କାହିଁକି.....................?

ମୋ ବାପା ସବୁବେଳେ ମଦ୍ୟପାନଠାରୁ ଦୂରରେ ରହି ଆସିଥିଲେ । ସେ ଅନେକ ସମୟରେ ମୋତେ କହୁଥିଲେ ଯେ କାହାରି ଘରେ ମଦ୍ୟ ପରିବେଷଣ ହେବା ଆଦୌ ଉଚିତ ନୁହେଁ । ତାଙ୍କର ଯେଉଁସବୁ ନୀତି ମୋ ମନର ସ୍ତମ୍ଭରେ ଖୋଦିତ ହୋଇଥିଲା ସେସବୁ ବିସ୍ମୃତ ହୋଇଗଲା କ୍ରମେ କ୍ରମେ । ଗଙ୍ଗାରୁ ଉଠୁଥିବା ପ୍ରଖର ପବନରେ ଦ୍ରବିଗଲା ସେ ଶିଳ । ମୁଁ ଏକ ଅବାଧ ଓ ଅମାନିଆ କନ୍ୟାରେ ପରିଣତ ହୋଇଗଲି ।

ମୁଁ ଆଜି ଯେମିତି ହୋଇଚି, ଏପରି କେମିତି ହେଲି ବୋଲି ସମାଜ ମୋତେ ପଚାରି ପାରେ । କାରଣ, ନୀତି-ବନ୍ତ ବାପା-ମାଙ୍କ କୋଳରେ ମୋର ଜନ୍ମ । ମୁଁ ମଧ୍ୟ ଏକଦା ସେମାନଙ୍କ ପରି ନୀତି-ଅନୁରକ୍ତ ଥିଲି । ମୋର ପରିବର୍ତ୍ତନ ବିଷୟରେ ଜାଣିବା ପାଇଁ ମୁଁ ପଢ଼ିଥିବା ବହିମାନଙ୍କୁ ପଚାରନ୍ତୁ । ଜୀବିତ ଓ ମୃତ ଲେଖକମାନଙ୍କୁ ପଚାରନ୍ତୁ । ସେଇମାନଙ୍କ ବାର୍ତ୍ତାରେ ଅନୁପ୍ରାଣିତ ମୁଁ । ସେଇମାନଙ୍କ ପ୍ରଦତ୍ତ ସାହସରେ ମୁଁ ଆଜି ମୁଁ । ବହିଗୁଡ଼ିକ ଦୁଗ୍ଧ-ସ୍ରାବୀ ଗୋ-ମାତା ସଦୃଶ । ସେଇ ଦୁଗ୍ଧ-ପାନ କରି ମୋର ଭାବନା-ରୂପକ ବତ୍ସା ରୂପାୟିତ । ସେଇ ବହିମାନେ ହିଁ ମୋତେ ଛାଡ଼ିଯାଇଛନ୍ତି ଏ ପୃଥିବୀର ବେଦୀ ଉପରେ ବଳି ପାଇଁ ଉତ୍ସର୍ଗୀକୃତ ଦାନ ସଦୃଶ ।

ନିଃସଙ୍ଗତା ଆଉ ସହି ହେଉନି । ଦିନେ କାର୍ଲୋଙ୍କୁ ତାଙ୍କର ପରାମର୍ଶ ପାଇଁ ଲେଖିଲି । ଲେଖିଲି—ମୁଁ ଆଉ ଅଧିକ କାଳ ବଞ୍ଚିବାକୁ ଚାହେଁନା । କିନ୍ତୁ, ମାସ ପରେ ମାସ ବିତିଗଲେ ମଧ୍ୟ ତାଙ୍କଠାରୁ ଉତ୍ତର ଆସିଲା ନାହିଁ । ମୁଁ ଅନୁଭବ କଲି—ସମ୍ଭବତଃ କାର୍ଲୋ ମୋତେ ଭୁଲିଗଲେଣି । ସେ ଦିନେ ମୋତେ 'ସୀତା' ନାମରେ ଡାକୁଥିଲେ । ତାଙ୍କ ଆଖିରେ ଏକଦା ମୁଁ ଥିଲି ଦେବୀ ପ୍ରତିମା ସଦୃଶ । କିନ୍ତୁ ଏବେ ? ସମ୍ଭବତଃ ବିବାହ ପରେ ପରେ ତାଙ୍କ ମନରେ ପରିବର୍ତ୍ତନ ଘଟିଯାଇଚି ।

ଦିନକର କଥା । ସକାଳ । ସ୍ୱାମୀ ଅଫିସ୍‌କୁ ଯାଇ ସାରିଲେଣି । ପିଲାମାନେ ସ୍କୁଲ୍‌ରେ । ଚାକର କବାଟ ଖୋଲି ତାଙ୍କୁ ଭିତରେ ବସାଇଲା । ପୂଝାରି ଆସି ଖବର ଦେଲା—ଜଣେ ଗୋରା ଲୋକ ଭୁମକୁ ଖୋଜୁଛନ୍ତି । ମୁଁ ଅନ୍ଧାରୁଆ ବୈଠକଖାନାରେ ପହଞ୍ଚି ଦେଖିଲି, ପୁରୁଣା ସୋଫାଟି ଉପରେ ସ୍ୱୟଂ କାର୍ଲୋ । ଦେହରେ ନୀଳ ରଙ୍ଗର ଜାମା । ତାଙ୍କୁ ଦେଖି ମୁଁ ମୋର ଉଦ୍‌ବେଗ ପ୍ରକାଶ କଲି ନାହିଁ । କାରଣ, ପରଦା ଆଢ଼ୁଆଳରେ ପୂଝାରି ଛପି ରହି ଲକ୍ଷ୍ୟ କରୁଥିଲା । ମୋ ଦୃଷ୍ଟିରୁ ତାହା ବାଦ୍ ଯାଇ ନ ଥିଲା । କାର୍ଲୋ ଠିଆ ହୋଇ ବଢ଼ାଇ ଦେଲେ ତାଙ୍କର ହାତ । ମୁଁ କହିଲି—ଆସ ବାରଣ୍ଡାକୁ ଯିବା । ସେଠି

ଗୋଟିଏ ଚମତ୍କାର ପିଂ-ପଂ ଟେବୁଲ୍ ରହିଚ । ଖେଳିବାର ଇଚ୍ଛା କାହାର ନା ଥିଲା । ଅଳ୍ପ କେଇ ମିନିଟ୍ ଆମେ ଅନ୍ୟମନସ୍କ ଭାବରେ ଖେଳିଲୁ । ତା'ପରେ ବାରଣ୍ଡାର ପ୍ରଶସ୍ତ କାନ୍ଥିରେ ଆମେ ବସିଲୁ । ନିକଟରେ କାର୍ଲୋ । ସେ ହିଁ ମୋତେ ବସିବାକୁ ଅନୁରୋଧ କଲେ ।

ଲକ୍ଷ୍ୟ କଲି, ତାଙ୍କର କିଛିଟା ଓଜନ କମିଯାଇଚ । ଓଷ୍ଠର ଦୁଇପାଖରେ ସାମାନ୍ୟ ନିସ୍ତେଜତା ପ୍ରକାଶିତ । ସେ କହିଲେ—"ସ୍ତ୍ରୀ' ଭିତରେ ତୁମେ ବେଶ୍ ମୋଟା ହେଇଯାଇଚ । କିନ୍ତୁ କଳାପଡ଼ି ଯାଇଚ ।"—କାର୍ଲୋ ହସି ହସି କହିଲେ—"ତୁମେ ଜଣେ ଜିପ୍‌ସି ପରି ଦିଶୁଚ ।"

କାର୍ଲୋ ପୁଣି ପଚାରିଲେ—"ତୁମ ପାଇଁ ମୁଁ କଣ କରିବି ବୋଲି ତୁମେ ଭାବୁଚ ।"

ମୁଁ କହିଲି—"ମୁଁ ଜାଣେନା"...

ସେଇ ସପ୍ତାହରେ ଭାରତ ଭ୍ରମଣରେ ଆସିଥିବା ଜଣେ ବିଶିଷ୍ଟ ଔପନ୍ୟାସିକ କଲିକତା ପରିଦର୍ଶନରେ ଆସିଥିଲେ । ସେ ମୋ ସ୍ୱାମୀଙ୍କର ଜଣେ ସମ୍ପର୍କୀୟ ଥିଲେ । ଏଣୁ ସ୍ୱାମୀଙ୍କର ଜଣେ ଆତ୍ମୀୟ ତାଙ୍କ ସମ୍ବର୍ଦ୍ଧନା ପାଇଁ ଲନ୍‌ରେ ଗୋଟିଏ କକ୍‌ଟେଲ୍ ଉତ୍ସବର ଆୟୋଜନ କଲେ । ସେଥିରେ ମୋତେ ମଧ୍ୟ ଯୋଗ ଦେବାକୁ ପଡ଼ିଲା । ଲେଖକଙ୍କର ସାନ୍ନିଧ୍ୟ ମୋ ସହିତ ହିଁ କଟିଲା ଖାଇବାରେ ଓ ମଦ୍ୟପାନରେ । ସନ୍ଧ୍ୟା ବେଳକୁ ମୋର ମୁଣ୍ଡ ବଡ଼ ଜୋର୍‌ରେ ବିନ୍ଧିଲା । କିନ୍ତୁ ପାର୍ଟିରେ ଯୋଗ ଦେବାକୁ ମୁଁ ଭଲ ପାଉଥିଲି, ବିଶେଷକରି ଯେଉଁସବୁରେ ସଂପୃକ୍ତ ଥା'ନ୍ତି ଲେଖକମାନେ । ଏଥିରେ ମଧ୍ୟ ମୁଁ ଖୁସି ହୋଇ-ଥିଲି । କିନ୍ତୁ ଜଣେ ଦୁଷ୍ଟ ପ୍ରକୃତିର ଆତ୍ମୀୟ ମୋତେ ବଡ଼ ମିଠା ଗଳାରେ ଟିହାଇ ଟିହାଇ ବାରମ୍ବାର ଗ୍ଲାସ୍ ପରେ ଗ୍ଲାସ୍ ପିଇବାକୁ ଉତ୍ତେଜିତ କଲେ, ଯାହା ଫଳରେ—ମୁଁ ନିଶାଗ୍ରସ୍ତ ଓ ମୋହାଚ୍ଛନ୍ନ ହୋଇପଡ଼ିଲି ।

ତଥାପି ଆତ୍ମୀୟ ଜଣକ କହୁଥିଲେ—ସେ ନିଜେ ପ୍ରସ୍ତୁତ କରିଥିବା ପାନୀୟଟିକ ଯଦି ମୁଁ ନ ପିଏ ତେବେ ତାଙ୍କୁ ଅପମାନ ଲାଗିବ । ସେ କହୁଥିଲେ—"ଭାଉଜ ! ମାତାଲ ଅବସ୍ଥାରେ ତୁମେ ପ୍ରକୃତରେ ବଡ଼ ସୁନ୍ଦର ଦିଶ ।" ତାଙ୍କ କଥାରେ ହସି ହସି ମୁଁ ଆହୁରି ପିଇଦେଲି ଆଚ୍ଛାକରି :

ଆଖିଗୁଡ଼ାକ ମୋର ଝଟିପରି ଜଳିଉଠିଲା । ମୋର ଧମନୀର ରକ୍ତାଭିତା ମଧ୍ୟରେ ଖେଳି ବୁଲୁଥିଲା ମାଛଧରା ଡଙ୍ଗାପରି ଉଚ୍ଛଳ ହାସ୍ୟର ଲହରୀ । ପରିଶେଷରେ ମୁଁ ଯେତେବେଳେ ସେମାନଙ୍କଠାରୁ ବିଦାୟ ନେଇ ମୋ କାର୍‌କୁ ଉଠିଲି, ମୋର ସାଧାରଣଜ୍ଞାନ ମୋତେ ନିର୍ଦ୍ଦେଶ ଦେଲା ଯେ ଏଇ ମଦ୍ୟପ ଅବସ୍ଥାରେ ମୁଁ ମୋର ପିଲମାନଙ୍କ ନିକଟକୁ ଫେରିବା ଆଦୌ ଉଚିତ ନୁହେଁ ।

ତେଣୁ, ମୁଁ କାର୍ଲୋ ରହୁଥିବା ହୋଟେଲ୍‌କୁ ଗଲି । ଲିଫ୍‌ଟରେ ମୋ ନିଜର ରଙ୍ଗୀନ୍ ମୁଖ ଦେଖି ମୁଁ ଭୟ ପାଇଗଲି । ଅଶ୍ରୁରେ ହୋଇପଡ଼ିଲି । କିନ୍ତୁ କାର୍ଲୋଙ୍କ ରୁମ୍‌ରେ ପହଞ୍ଚିବା ମାତ୍ରେ ସେ ମୋତେ ଟେକିନେଇ ବିଛଣାରେ ଶୁଆଇଦେଲେ । ଓଦା ତଉଲିଆରେ ପୋଛିଦେଲେ ମୋର ମୁହଁ । ତଉଲିଆରୁ ଯୁ-ଦ-କଲୋନ୍‌-ର ବାସ୍ନା ଆସୁଥିଲା । କାର୍ଲୋ ପଚାରିଲେ—“ଏ ତୁମର କଣ୍ ହୋଇଛି । କିଏ ତୁମର ଏପରି ଭୟଙ୍କର ଅବସ୍ଥା ପାଇଁ ଦାୟୀ ?”

ମୁଁ କହିଲି—“କାର୍ଲୋ ! କାର୍ଲୋ ! ମୋର ଅବସ୍ଥା ବଡ଼ କରୁଣ, ବଡ଼ ଶୋଚନୀୟ” । ତା’ପରେ ମୁଁ ତାଙ୍କର ହାତ ଦୁଇଟିକୁ ମୋ ଦୁଇହାତରେ ଜାବୁଡ଼ି ଧରି କାନ୍ଦିଉଠିଲି, ଉଚ୍ଚସ୍ୱରରେ କାନ୍ଦିଉଠିଲି ।

ତା’ପରେ ସେ କହିଲେ—“ଉଠ, ଉଠିପଡ଼ ଏବଂ ତୁମର ବାଳସବୁ ଗୋଛେଇ ନିଅ । ମୁଁ ତୁମକୁ ତୁମର ଘରେ ଛାଡ଼ିଆସିବି ।”

ଆମଘର ଦୁଆର ମୁହଁ ନିକଟରେ ମୋତେ ବିଦାୟ ଦେଲାବେଳେ କାର୍ଲୋ କହିଲେ - ‘ଦିନକୁ ଦିନ ତୁମେ ଅଧିକ ସରଳ ହୋଇ ଯାଉଛ ।’

ତା’ପରେ ମୁଁ ଏକୁଟିଆ । ବାରଣ୍ଡାର ସେଇ କାନ୍ଥ ଉପରେ । ନିଦ ଆସୁ ନ ଥାଏ । ଲଜ୍ଜା ଓ ଅପମାନର ଯନ୍ତ୍ରଣାରେ ବଡ଼ କଷ୍ଟ ପାଉଥାଏ । କାର୍ଲୋଙ୍କ ସେଇ ବାକ୍ୟଟି ମନେ ପଡ଼ୁଥାଏ । କିନ୍ତୁ ସେତେବେଳେ ତାଙ୍କକଥା ମୋ ପକ୍ଷରେ ଥିଲା ନିରର୍ଥକ ।

ଆକାଶରେ ମଧ୍ୟ ସେତେବେଳେ ଗୋଟିଏ ହେଲେ ବି ତାରା ନ ଥିଲେ ।

# ସଇଁ ତରଙ୍ଗ

## ନପୁଂସକମାନଙ୍କର ନାଚ ପ୍ରଥମେ କଲିକତାରେହିଁ ଦେଖିଲି...

ତାଙ୍କର ସୌର-ଦଗ୍ଧ ମୁହଁ
ମୋ ଆଡ଼କୁ ବୁଲାଇ,
ସେ କହନ୍ତି, ତାଙ୍କର ପାଟିର
ଗୁମ୍ଫାରେ ଧାଡ଼ିଏ ଅସମ-ବିଷମ ଦାନ୍ତ
ଝଲସିଯାଏ, ମୋର ଆଣ୍ଠୁ ଉପରେ
ତାଙ୍କର ଡାହାଣ ହାତ,
ଏବଂ, ଆମର ମନସବୁ
ପ୍ରେମ ଢଗରେ ଦୌଡ଼ିବାକୁ ବ୍ୟଗ୍ର;

କିନ୍ତୁ କେବଳ ସେମାନେ
ବୁଲିବୁଲି କରନ୍ତି ଅଳସରେ
କାମନାର ଆବିଳ ଜଳାଶୟରେ :

...ଆଙ୍ଗୁଳିର ଟିପ ସବୁକୁ
ଦ୍ରୁତ-ଗତିରେ ଛୁଆଁଇ ନେଉଥିବା
ଏଇ ପୁରୁଷଟି...କିଣ୍
ଚର୍ମର ଅଳସ କାମନା ଛଡ଼ା
ଆଉକିଛି ଅଧିକ ଜୀବନ୍ତକୁ
ଚରିତାର୍ଥ କରିପାରିବ ?

ପ୍ରେମ ବ୍ୟର୍ଥତା ଯେଉଁ ଆଜିଯାଏଁ
ବଞ୍ଚି ଆସିଥିବା ସେ କିଏ
ଆମକୁ ସାହାଯ୍ୟ କରିପାରିବ ଯେ ?

ହୃଦୟର ଶୂନ୍ୟତା,
ଅନେକ ପ୍ରତୀକ୍ଷା ପରେ, ନୀରବତାର
ସାପ କୁଣ୍ଡଳୀରେ ଭରିଯାଏ ।

ମୁଁ ତ କଳ୍ପନାରେ ଭାସେ । କେବଳ
ମୋର ମାନ ରଖିବାକୁ, ଦେଳେ
ବେଳେ ମୁଁ ପ୍ରକାଶ କରେ
କାମନାର ଶିଖା ସବୁକୁ ।

୧୯୬୩ରେ ପି. ଇ. ଏନ୍ ତରଫରୁ ପ୍ରଦତ୍ତ ଏସୀୟ କବିତା ପୁରସ୍କାର ମୋତେ ମିଳିଲା । ପ୍ରଥମ ଥରପାଇଁ ମୋ ନାମରେ ବ୍ୟାଙ୍କ୍‌ରେ କିଛି ଜମା ହେଲା । ଅବଶ୍ୟ ଦୁଇଦିନ ମଧ୍ୟରେ ମୋ ନିଜର ସାଜ-ସଜ୍ଜାପାଇଁ ପ୍ରାୟ ଅର୍ଦ୍ଧେକ ଜମା ଉଠାଇ ଆଣିଲି । ମୁଁ ସବୁବେଳେ ଫେସନ୍ ପ୍ରତି ଅବହେଳା ପ୍ରଦର୍ଶନ କରି ଆସିଛି । ନିଜକୁ ସଜେଇବାପାଇଁ ମୋର ଅକ୍ଷମତା ବିଷୟରେ ମୁଁ ସର୍ବଦା ସଚେତନ ଥିଲି । ଅବଶ୍ୟ, ଆଖିକୁ ସୁନ୍ଦର ମାର୍ଜିତ ଦିଶିଲା ଭଳି ପୋଷାକ ପିନ୍ଧିବାରେ ମୋର ଆଗ୍ରହ ସବୁବେଳେ ବି ଥିଲା ।

ଲୁଙ୍ଗି ପ୍ରତି ମୋର ଆଗ୍ରହ ବଢ଼ିଲା, ବିଶେଷକରି ଯେଉଁ ସବୁରେ ଫୁଲର ଛବି ଥିଲା, କଳା ରଙ୍ଗର ପପ୍‌ଲିନ୍‌ରେ ତିଆରି ସାର୍ଟ୍ ପିନ୍ଧୁଥିଲି । ମୋ ଶରୀରର ଉପରିଭାଗ ସେଥିରେ ଢାଙ୍କି ହେଉଥିଲା । ମୋତେ ଭଲ ଲାଗୁଥିଲା ହାତରେ ନାଲି ରଙ୍ଗର କାଚ । ଆଲ୍‌କୋହଲ୍ ମିଶ୍ରିତ ହୋଇଥିବାରୁ ମୋତେ ବିଦେଶୀ ପର୍‌ଫ୍ୟୁମ୍ ଭଲ ଲାଗୁ ନ ଥିଲା । ଅବଶ୍ୟ, ପ୍ରତିଦିନ ମୋ ଗାଧୋଇବା ପାଣିରେ ଅତର ଛୁଆଁ ଯାଉଥିଲା । ସାବୁନ ପରିବର୍ତ୍ତେ ମୁଁ 'ବାକ୍' ଗଛର ବକଳାରୁ ପ୍ରସ୍ତୁତ ଚୂର୍ଣ୍ଣ ବ୍ୟବହାର କରୁଥିଲି । ଚର୍ମ ପ୍ରତି ତାହାର ଏକ ସୁ-ପ୍ରଭାବ ଥିଲା ।

ମୋର ଚର୍ମ କିଛିଟା ତୈଳାକ୍ତ ଥିବାରୁ ବୟସ ତୁଳନାରେ ମୁଁ ଅଧିକ ଯୁବା ଦିଶୁଥିଲି । ଫଳରେ ମୁଁ ବୟସ୍କ ବ୍ୟକ୍ତିଙ୍କ ପ୍ରିୟତା ଅର୍ଜନ କରିପାରୁଥିଲି । ନାନା ପ୍ରକାରର ପ୍ରସାଧନ ସାମଗ୍ରୀ ବ୍ୟବହାର କରୁଥିବା ବିକୃତ ରମଣୀମାନଙ୍କ ସଂସର୍ଗରେ ସେମାନେ ଅଣନିଃଶ୍ୱାସୀ ହୋଇ ପଡ଼ୁଥିଲେ । ମୁଁ ମଧ୍ୟ ବୟସ୍କମାନଙ୍କ ଆଡ଼କୁ ଆକୃଷ୍ଟ ଥିଲି । କାରଣ ସେମାନେ କ୍ଷତିକାରକ ନ ଥିଲେ ଓ ତାଙ୍କଠାରେ କିଛିଟା ଆନନ୍ଦ ମଧ୍ୟ ଥିଲା । ତାଙ୍କର ବ୍ୟବହାର ଥିଲା ନିର୍ମଳ । କିପରି ସାମାନ୍ୟ ପ୍ରଶଂସା ବା ସମ୍ବର୍ଦ୍ଧନା କରି ଜଣେ ଝିଅକୁ ଖୁସି କରିହୁଏ, ତାହା ସେମାନଙ୍କୁ ଜଣା ଥିଲା ।

ଆମ ଘରକୁ ନିୟମିତ ବୁଲି ଆସୁଥିବା ଜଣେ ବୃଦ୍ଧ ବ୍ୟକ୍ତିଙ୍କ ମୁହଁ ସହିତ ଷ୍ଟାନ୍ ଲରେଲ୍‌ଙ୍କ ସାଦୃଶ୍ୟ ଥିଲା । ମୁଁ ତାଙ୍କୁ ଖୁବ୍ ଭଲ ପାଉଥିଲି । ସେ ନାନା ଭାବରେ—ନାନା ଶବ୍ଦର ଅନୁକରଣ କରି—ମୋତେ ଓ ମୋର ପିଲା-

ମାନଙ୍କୁ ବେଶ୍ ହସାଇ ପାରୁଥିଲେ । ସ୍ୱାମୀ ଘରେ ନ ଥିଲାବେଳେ ସେ ଆମକୁ ବୁଲାଇ ନେଉଥିଲେ । ଆଇସ୍‌କ୍ରିମ୍, ଚକୋଲେଟ୍ ଦେଉଥିଲେ ଏବଂ ନେଇ ଯାଉଥିଲେ ଧୂଆଁ ଓ ସନ୍ଧ୍ୟାଲୋକ ଭର୍ତ୍ତି ହୋଇ ରହିଥିବା ରେସ୍ତୋରାଁ ଭିତରକୁ ।

ଏଇ ବୁଲାବୁଲି ପାଇଁ ଆମେ ତାଙ୍କ ନିକଟରେ କୃତଜ୍ଞ । କାରଣ ଆମ କଥା ଆଉ କେହି ଭାବୁ ନ ଥିଲେ । ଆମକୁ କୌଣସି ଆଡ଼କୁ ବୁଲେଇ ନେବାପାଇଁ ବ୍ୟସ୍ତ ସ୍ୱାମୀଙ୍କର ସମୟ ନ ଥିଲା । ତା'ଛଡ଼ା ଆର୍ଥିକ କ୍ଷମତା ମଧ୍ୟ ଅନୁକୂଳ ନ ଥିଲା ସେ ଦିଗରେ । ଫେରିବା ପରେ ଆମ ଘର ଦରଜାରେ ଏଇ ବୃଦ୍ଧ ଜଣକ ଚୁମ୍ବନ ଆଙ୍କି ଦେଉଥିଲେ ମୋ ଗଣ୍ଡଦେଶରେ । ଓଦା ଚୁମ୍ବନଗୁଡ଼ିକୁ ମୁଁ ଖୁବ୍ ଶୀଘ୍ର ପୋଛି ଦେଉଥିଲି । ତାଙ୍କୁ ଏ ବିଷୟରେ ନିରୁତ୍ସାହିତ କରିବାଦ୍ୱାରା ମୋ ମନରେ ଗ୍ଳାନିଭାବ ଆସୁଥିଲା । କିନ୍ତୁ, ମୁଁ ଗୃହୁଁ ଥିଲି କେହି ଜଣେ ମୋ ପିଲା-ମାନଙ୍କୁ ବୁଲେଇ ନେଇ କିଛିକ୍ଷଣ ଆନନ୍ଦ ଦେଉଥିବାର ସୁଯୋଗ ଦିଅନ୍ତୁ । ଏକଦା ସେ ମୋତେ ବାଇଗଣି କାଗଜରେ ଗୁଡ଼େଇ ଖଣ୍ଡିଏ ଅଶ୍ଳୀଳ ଯୌନଚିତ୍ର ଥିବା ବହି ଉପହାର ଦେଲେ । ସେଇଦିନଠୁ ମୁଁ ତାଙ୍କ ସହିତ ସମ୍ପର୍କ ତୁଟାଇଦେବାକୁ ସ୍ଥିର କଲି । ସେଥିପାଇଁ କୌଣସି କାରଣ ଦର୍ଶାଇବା ଦରକାର ପଡ଼ିଲାନି । ସବୁକିଛି ବୁଝିପାରିବା ଭଳି ଚତୁରତା ତାଙ୍କର ଥିଲା ।

ଏହିପ୍ରକାର ଆଉରି ଥିଲେ ଅନେକ । କେତେକ ମୋ ସ୍ୱାମୀଙ୍କ ବୃତ୍ତି ସହିତ ସଂଯୁକ୍ତ ଓ ଅନ୍ୟ କେତେକ ଥିଲେ ମୋ ବାପାଙ୍କର ବନ୍ଧୁ, ଯେଉଁମାନଙ୍କୁ ପିଲାଟିବେଳୁ ମୁଁ 'ମାମୁଁ' 'କକା' ଇତ୍ୟାଦି ଭାବରେ ସମ୍ବୋଧନ କରି ଆସୁଥିଲି । ସେମାନେ ସବୁ ବଦଳି ଯାଇଥିଲେ ବହୁତ । ସେମାନଙ୍କର ପତ୍ନୀମାନେ ଘରେ ନ ଥିଲାବେଳେ ମୋତେ ନାନା ପ୍ରକାରର ଯୌନ ଇଙ୍ଗିତ ପ୍ରଦାନ କରୁଥିଲେ । ମୁଁ ସେମାନଙ୍କୁ ଘୃଣା ହିଁ କରୁଥିଲି । ଅନେକ ସମୟରେ ସ୍ୱାମୀଙ୍କୁ ମୁଁ କହୁଥିଲି— "ଚାଲ କଲିକତା ଛାଡ଼ି ପଳେଇବା ।" କିନ୍ତୁ ସେ ମୋ ନିବେଦନ ପ୍ରତି କର୍ଣ୍ଣପାତ କରୁ ନ ଥିଲେ ।

କବିମାନେ, ଏପରିକି ସବୁଠାରୁ ଗୁରୁତ୍ୱହୀନ ଜଣେ କବି, ଅନ୍ୟ ଲୋକଙ୍କଠାରୁ ଭିନ୍ନ ଧରଣର । ସେମାନେ ଦୋକାନୀଙ୍କ ଭଳି ଦୋକାନ ବନ୍ଦ କରିପାରିବେ ନାହିଁ । କିମ୍ବା ଘରକୁ ଫେରିପାରିବେ ନାହିଁ । ତାଙ୍କର ମାନସ ହିଁ ତାଙ୍କର ଦୋକାନ । ଯେଉଁଦିନ ପର୍ଯ୍ୟନ୍ତ ସେଇ ମାନସ ବହନ କରିଥିବେ ସେତେଦିନ ଯାଏଁ ତାଙ୍କୁ ପ୍ରଭାବ ଓ ଯନ୍ତ୍ରଣା ଭୋଗ

କରିବାକୁ ପଡ଼ୁଥିବ । କବିଙ୍କ ଉପାଦାନ ପଥର କିମ୍ବା କାଦୁଅ ନୁହଁ, ତାହା ତାଙ୍କର ବ୍ୟକ୍ତିତ୍ୱ । ମୁହୂର୍ତ୍ତିଟିଏ ପାଇଁ ମଧ୍ୟ ମୁଁ ମୋର କାବ୍ୟ-ଭାବଠାରୁ ଅଲଗା ହୋଇ ରହିପାରିଲି ନାହିଁ । ମୁଁ ଭାବପ୍ରବଣ ଓ ଅତ୍ୟଧିକ ଚେତନା-ଦୀପ୍ତ ଥିଲି । ମୋର ଆବେଗ ସହିତ ସଂଶ୍ଳିଷ୍ଟ ଦୁନିଆ ଯେଉଁ ଆତ୍ମୀୟମାନେ ମୋ ନାମରେ ସୃଷ୍ଟି କରିଥିବା କୌଣସି ଅପବାଦ କାନରେ ବାଜିବା ମାତ୍ରେ ମୁଁ ଘଣ୍ଟା ଘଣ୍ଟା ଧରି ଆହତ ଶିଶୁପରି କାନ୍ଦୁଥିଲି, ବିଛଣାରେ ଲେଟି ଯାଉଥିଲି । ବେଳେ ବେଳେ ନିଦ ଆଣିବାପାଇଁ ଖାଉଥିଲି ବଟିକା ।

ମୋର ମାନସିକ ଭାରସାମ୍ୟ ଦୁର୍ବଳ ହୋଇଗଲା ପରେ କେତେକ ବନ୍ଧୁ ମୋତେ ଅଧିକ ମଦ୍ୟପାନ ଦିଗରେ ଉତ୍ସାହିତ କଲେ । ଯାହାଙ୍କ ଘରେ ପାନୀୟର ସରଞ୍ଜାମ ଥିଲା ସେମାନେ ମୋତେ ତାଙ୍କ ଘରକୁ ସବୁ ଡାକିନେଇ ଯାଉଥିଲେ ବି । ମଉଆଲି ଅବସ୍ଥାରେ ମୁଁ ଥିଲି ତାଙ୍କପାଇଁ ବେଶ୍ ଉପଭୋଗ୍ୟ । ଦିବ୍ୟ ପ୍ରେମ ଓ ନିର୍ବାଣ ସମ୍ପର୍କରେ ମୋର ବକ୍ତବ୍ୟ ସେମାନେ ଶୁଣୁଥିଲେ । ସେମାନଙ୍କୁ ନିଷ୍ଟୟ ହସ ଲାଗୁଥିଲା । ସେହି ସ୍ଥୂଳ ପ୍ରକୃତିର ନାରୀ ଓ ପୁରୁଷଙ୍କର ମୁଁ ଥିଲି ଖେଳ କଣ୍ଢେଇ । ସୌଭାଗ୍ୟବଶତଃ ସେଇସବୁ ହିଜଲ୍ପ ପ୍ରହରଗୁଡ଼ିକ ବିଷୟରେ ମୋର କିଛିହେଲେ ମନେ ନାହିଁ ।

ତଥାପି ମୋ ପ୍ରତି କଲିକତାର ଦାନଅଛି । ବିଷାଦ କବିତା ଲେଖିବା ପାଇଁ ଅନେକ ସୁନ୍ଦର ଦୃଶ୍ୟ ମୁଁ ସେଠାରେ ଦେଖିଛି । କବିତା ଗୁଡ଼ିକ ସେତେବେଳେ ମୁଁ ଡାଇରିରେ ଲେଖି ରଖୁଥିଲି । କଲିକତାରେ ହିଁ ମୁଁ ପ୍ରଥମକରି ନପୁଂସକମାନେ ନୃତ୍ୟ କରିବା ଦେଖିଲି । କଲିକତାରେ ହିଁ ମୁଁ ପ୍ରଥମକରି ଶସ୍ତା ବଜାରର କଣ୍ଢେଇ ପରି ଅପର୍ଯ୍ୟାପ୍ତ ରଙ୍ଗବୋଳି ଠିଆ ହୋଇଥିବା ଗଣିକାଟିଏ ଦେଖିଲି । କଲିକତାରେ ହିଁ ମୁଁ ପ୍ରଥମ କରି ବଳଦଗାଡ଼ି ଦେଖିଲି ଷ୍ଟାଣ୍ଡ୍ ରୋଡ଼ରେ ସକାଳ ସମୟରେ, ଯାହାର ଚାଳକ ଥିଲା ଜଣେ ଗର୍ବୀ ବିଶାଳ-ପଗଡ଼ି ବନ୍ଧା ବ୍ୟକ୍ତି, ଯାହାର ସ୍ତ୍ରୀର କୋଳରେ ଥିଲା ଆକୁଳ ଥୁକୁଲ୍ ଶିଶୁଟିଏ, ନିର୍ଜନ ରାତିରେ କ୍ଲବ୍ ରେ ଅତ୍ୟଧିକ ମଦ୍ୟପାନ ବଶତଃ ଚନ୍ଦ୍ରାଚ୍ଛନ୍ନ ହୋଇ-ପଡ଼ିଥିବା ଜଣେ ଅଭ୍ୟସ୍ତ ମଦ୍ୟପ ପରି ଢୁଲାଉଥିଲା ଯେଉଁ ଶିଶୁଟି ।

ଆମର ଗୋଟିଏ ନୀଳ ରଙ୍ଗର ଆମ୍ବାସାଡାର୍ କାର୍ ଥିଲା । ତାହାର ଚାଳକ ଥିଲା ରମ୍‌ଜାନ୍ । ସେ ମୋତେ ପ୍ରତି ସପ୍ତାହରେ ଥରେ ଫ୍ରି-ସ୍କୁଲ୍-ଷ୍ଟ୍ରିଟ୍‌କୁ ନେଇଯାଏ । କାରଣ ପ୍ରଥମସଂସ୍କରଣଗୁଡ଼ିକ ବିକୁଥିବା ବହି ଦୋକାନଟିଏ ସେଠି ଥିଲା ।

ସେଠାରେ 'ଲରେନ୍‌ସ୍ ହୋପ୍'-ଙ୍କ କେଇଖଣ୍ଡ ଗ୍ରନ୍ଥ କିଣି ଉପହାର ଦେଲି ମୋର ଜନୈକ ବନ୍ଧୁଙ୍କୁ, ଯାହାଙ୍କ ପ୍ରତି ମୁଁ କିଞ୍ଚିତ୍ ଅନୁରାଗିଣୀ ଥିଲି । କିନ୍ତୁ ସେ ଏମିତି ଭୀରୁ ଓ ଗତାନୁଗତିକ ଥିଲେ ଯେ ଅବିଲମ୍ବେ ଦୁଇଖଣ୍ଡ ଷ୍ଟିଫେନ୍ ଜ୍ୱିଗ୍-ଙ୍କ ରଚନା କିଣି ମୋତେ ଉପହାର ଦେଲେ । ପ୍ରତ୍ୟୁପହାର ଦେଇ ସେ ସମ୍ପୂର୍ଣ୍ଣ ଋଣମୁକ୍ତ ହୋଇଗଲେ । ମୋ ସହିତ ଏକାକୀ ମିଶିବାକୁ ସେ ଡରୁଥିଲେ । ତେଣୁ ସେ ଯେତେବେଳେ ଆମ ଘରକୁ ଆସୁଥିଲେ, ସାଙ୍ଗରେ ତାଙ୍କର ପତ୍ନୀଙ୍କୁ ନେଇ ଆସୁଥିଲେ । ବଡ଼ ଦୟା ଲାଗୁଥିଲା ତାଙ୍କ ପତ୍ନୀଙ୍କ ପ୍ରତି । ବିଚାରି, ଆମର ଚର୍ଚ୍ଚା ଓ କଥାବାର୍ତ୍ତାରେ ଭାଗ ନେବାର କ୍ଷମତା ତାଙ୍କର ନ ଥିଲା । ବିରକ୍ତିକର ଅବସ୍ଥାରେ ହିଁ ସେ ବସି ରହୁଥିଲେ ।

ଅବଶେଷରେ ମୁଁ ପ୍ରାଜ୍ଞ ହୋଇ ଉଠିଲି । ମନେ ପଡ଼ିଲା ବୁଢ଼ୀମା-ଙ୍କ କଥା । ସନ୍ତାନ ଜନ୍ମ ଓ ପୁରୁଷମାନଙ୍କ ବିଷୟରେ ଅନାଗ୍ରହ ପ୍ରକାଶ ବିଷୟରେ ସେ ଯାହା ଏକଦା କହୁଥିଲେ, ତା'ର ଅର୍ଥ ବୁଝିଲି । କିପରି ମର୍ଯ୍ୟାଦାର ସହିତ ଅନ୍ୟର ଉପହାର ଗ୍ରହଣ କରିବାକୁ ହୁଏ ଜାଣି ନ ଥିବା ବ୍ୟକ୍ତିଟିଠାରୁ କାର୍ଲୋ କଣ୍ ଅଧିକ ଭଲ ଭାବରେ ଲାଳିତ ଓ ବର୍ଦ୍ଧିତ ନୁହଁନ୍ତି ? ବ୍ୟର୍ଥ ହୋଇ ମୁଁ ପୁଣି ମୋ ବନ୍ଧୁଙ୍କ ଆଡ଼କୁ ଗଲିଲି ! କାର୍ଲୋ କହିଲେ—"ତୁମେ ମୋତେ ଆଦୌ ଭଲ ପାଅନା । ତୁମ ପକ୍ଷରେ ମୁଁ କେବଳ ଏକ ପ୍ରତୀକ୍ଷାଳୟ ସଦୃଶ ।"

କିନ୍ତୁ ସେ ନିଜକୁ ଏକ ଶକ୍ତିଶାଳୀ ମଦ୍ୟ ପରି ଉତ୍ସର୍ଗ କଲେ ମୋ ନିକଟରେ । ସେ ମୋତେ ଭୁଲାଇ ଦେଇ ପାରିଲେ । ଅପରାହ୍ଣରେ ମୁଁ ତାଙ୍କର ଶ୍ୱେତାଭ ବାହୁବନ୍ଧନରେ ଶୋଇ ରହିଲି । ସେଇ ତନ୍ଦ୍ରିଳ ଅବସ୍ଥାରେ ମୁଁ ଜାଣିପାରୁଥିଲି ଯେ ମୋ ପାଇଁ ସେ ହିଁ ଏକମାତ୍ର ଜଳ, ସୂର୍ଯ୍ୟକିରଣରେ ଚକ୍‌ଚକ ଦିଶୁଥିବା ଏକମାତ୍ର ନିସ୍ତବ୍ଧ ଅଥଚ ସବୁଜ ସରୋବର । ତାଙ୍କ ଭିତରେ ମୁଁ ପହଁରିଲି । ଆଶାକରିକରି ମୁଁ ହୋଇଯାଇଥିଲି ଖଣ୍ଡଖଣ୍ଡ । ତାଙ୍କର ବଳିଷ୍ଠ ରକ୍ତ-ଧାରାରେ ମୁଁ ଭାସିଲି । ଲୁହସବୁ ଆଖିରେ ଶୁଖିଗଲା । କାର୍ଲୋଙ୍କ ସଂସର୍ଗରୁ ମୋର ନଳପତ୍ରର ସରୋବର କଥା ମନେ ପଡ଼ିଲା, ଯେଉଁଠାରେ ମୋର ମୁହଁ ଓ ନିମ୍ନବର୍ଦ୍ଧିଷ୍ଣୁ ପ୍ରତ୍ୟଙ୍ଗ ସବୁକୁ ଖରାକୁ ଦେଖେଇ ମୁଁ ଶୋଇ ରହୁଥିଲି ଏକଦା । ସେ ହିଁ ମୋତେ ପ୍ରାଚୀନ ନିମ୍ବତଳ ଗଛ କଥା ମନେ ପକେଇ ଦେଲେ, ଯେଉଁ ଗଛର ଶାଖାରୁ ଝୁଲୁଥିଲା ଏକଦା ଦଉଡ଼ିବନ୍ଧା ଦୋଳିଟିଏ, ଯାହାର ତଳେ ଗ୍ରୀଷ୍ମକାଳୀନ ଦ୍ୱି-ପ୍ରହରରେ ମଧୁର ସଙ୍ଗୀତ ମୁଁ ଶୁଣୁଥିଲି ଏକଦା ।

# ଅଠତିରିଶି

## ଦିଲ୍ଲୀର ସୁବାସିତ ପଥସବୁ...

ଦିଲ୍ଲୀ : ଅପରାହ୍ନରେ...
ବସାଟି ଆମର
ଧୂଳିରେ ବୁଡ଼ିଯାଏ / ଯେତେବେଳେ ଫେରନ୍ତି
ମହିଷିଙ୍କ ଖୁରାରେ ଭରିଯାଏ ରାସ୍ତା
ଶୁଣାଯାଏ କ୍ଲାନ୍ତମହିଷିଆଳଙ୍କ ମନରୁଆଁ ପଞ୍ଜାବୀ ଗୀତ
ଓ ମ୍ୟୁନିସିପାଲ୍ ସ୍କୁଲ୍‌ରୁ
ଛୁଟି ପାଇଥିବା ଝିଅମାନେ...
ଆମର ଫାଟକ ପାଖରେ ଟିକିଏ ଅଟକି ଯାଆନ୍ତି
ଟିକିଏ ହସି ଦିଅନ୍ତି...
ମୁଁ ତାଙ୍କୁ ଆଉ ଦିଅନ୍ତି କଣ୍
ଖାଲି ଟିକିଏ ଅର୍ଦ୍ଧମୃତ ହସ ଛଡ଼ା ?

ଏ ଶାନ୍ତ ସ୍ଥଳକୁ
ନିରବଚ୍ଛିନ୍ନ ଅଭିଯୋଗର ଶବ୍ଦ ଛଡ଼ା
ମୋର ଆଉ କଣ୍ ଦେବାର ଅଛି ?
ଆମକୁ କ୍ଷମା ଦିଅ । ଆମେ ସବୁ ଅକୃତଜ୍ଞ
ବିକୃତ ଜୀବ । ମା'ଙ୍କୁ ଛାଡ଼ିଚୁ । ମା'ଙ୍କୁ ଭୁଲି଼  ।

କାରଣ ତାଙ୍କର କର୍ମ-କ୍ଳାନ୍ତ ହାତର
ଲୋଳିତ ଅବସ୍ଥା ଆମେ ଦେଖିଚୁ
ଆମେ ଖୋଜିଚୁ ଧନବନ୍ତି ମାଆ

ଆମେ ଖୋଜିଚୁ ଅଧିକ ମର୍ଯ୍ୟାଦାର ଠିକଣା—
ଏଇପରି ଆମେ ଚାଲିବୁ, ଚାଲିଥିବୁ
ହୁଏତ ଆମର
ସନ୍ତାନମାନେ ଆମକୁ ବି
ଦିନେ ଭୁଲିଯିବେ,...ଛାଡ଼ିଯିବେ...

ତିନିବର୍ଷ ପାଇଁ ଦିଲ୍ଲୀର ଯୋଜନା କମିସନ୍-କୁ ମୋ ସ୍ୱାମୀଙ୍କର ଯିବାର ହେଲା । ନୂତନ ଦୃଶ୍ୟ ଦେଖିବି ବୋଲି ମୁଁ ଖୁସି ହେଲି । କାରଣ, ମୁଁ ଖୁବ୍ ବେଶି ଭ୍ରମଣ କରି ନ ଥିଲି । କିନ୍ତୁ, ମୋର ସ୍ୱାମୀଙ୍କ ଗୃହକର୍ମରେ ଗସ୍ତର ସୁବିଧା ଥିଲା । କୌଣସି ଅଦେଖା ନୂତନ ସ୍ଥାନରୁ ବୁଲି ସେ ଘରକୁ ଫେରିଲେ ମୁଁ ତାଙ୍କୁ ନାନା ପ୍ରକାରର ପ୍ରଶ୍ନ ପଚାରୁଥିଲି ।

ସେଠାର ଆକାଶର ରଙ୍ଗ କିପରି, କି ପ୍ରକାର ଉଦ୍ଭିଦ, ଲୋକଙ୍କର ବେଶ୍ ପୋଷାକ କିଓ୍, ତାଙ୍କ ଭାଷାର ଉଚ୍ଚାରଣ ଭଙ୍ଗୀ କିପରି···ଏଇସବୁ ବିଷୟ ପଚାରୁଥିଲି । ସେ ମୋତେ ପୁଙ୍ଖାନୁପୁଙ୍ଖ ଭାବରେ କହୁଥିଲେ । ଯାହା ମୋର ଭବିଷ୍ୟତ-ଗଳ୍ପର ପରିବେଶ ବର୍ଣ୍ଣନା ପାଇଁ ଉପାଦାନ ରୂପେ ସଞ୍ଚିତ ହୋଇ ରହୁଥିଲା ।

ଦିଲ୍ଲୀରେ ପହଞ୍ଚି ଆମେ ରବୀନ୍ଦ୍ରନଗରଠାରେ ଥିବା ରିଜର୍ଭ୍ ବ୍ୟାଙ୍କର ଭିଜିଟିଂ ଅଫିସର୍ ମାନଙ୍କ ପାଇଁ ଉଦ୍ଦିଷ୍ଟ ଫ୍ଲାଟ୍‌ରେ ରହିଲୁ ତିନିଦିନ । ଉଚ୍ଚ ହିଟର ବାତ ଓ କୁଲର୍ ଥିବା ଯୋଗୁ ବେଶ୍ ଶୀତଳ ଥିଲା ଘରଟି । ଖାଇବା ଟେବୁଲ୍ ଶୋଭିତହେଉଥିଲା ପୁଷ୍ପ ଗୁଚ୍ଛରେ ଏବଂ ୟୁନିଫର୍ମ ପିନ୍ଧା ପରିଚାରକମାନେ ଆମକୁଆ ବୁଝାଶୁଝା କରୁଥିଲେ ।

ଚତୁର୍ଥ ଦିନ ଆମେ ଡ଼ିଫେନ୍ସ କଲୋନିର ଗୋଟିଏ ଗ୍ରେଟ ଘରେ ରହିଲୁ । ଘରଟି ଅତି ଗ୍ରେଟ । ବନ୍ଧୁ-ବାନ୍ଧବଙ୍କ ଚର୍ଚ୍ଚା କରିବା ପାଇଁ ଅଧିକା କୋଠରୀଟିଏ ବି ନଥିଲା । ଗୋଟିଏ ଗୋଲେଇ ସିଢ଼ି ଥିଲା ଗ୍ରେଟ ବାଲ୍‌କୋନିଟି ପର୍ଯ୍ୟନ୍ତ । ସେଠି ଆମେ ଦୁଇଖଣ୍ଡି ବେତ ଚୌକି ପକାଇଥିଲୁ । ତା' ପଛକୁ ଥିଲା ଆଉ ଗୋଟିଏ କୋଠରୀ ଯେଉଁଠି ଆମର ଚଉକି-ଟେବୁଲ ଓ ବହି-ପତ୍ର ପୂର୍ଣ୍ଣ ହୋଇ ରହିଥିଲା । ଚଞ୍ଚଳ ଚଞ୍ଚଳ ଖାଉଥିଲୁ ମଧ୍ୟ ସେଇଠି । ବାଥ୍‌ରୁମ୍‌ରେ ସବୁବେଳେ ପାଣି ନ ଥିଲା । କେବଳ ସକାଳ ଛ'ଟାରେ ପନ୍ଦର ମିନିଟ୍ ପାଇଁ ପାଣି ଆସୁଥିଲା । ପୂଝାରୀ ଓ ଡ୍ରାଇଭରଙ୍କୁ ପଛପଟ ବାରଣ୍ଡାରେ ପାକିଂ କେସ୍ ଗୁଡ଼ିକ ଉପରେ ଶୋଇବାକୁ ପଡ଼ୁଥିଲା । ପିଲାମାନଙ୍କୁ ସ୍କୁଲରେ ଭର୍ତ୍ତି କରାଗଲା, ଶେଷ ଟର୍ମ୍‌ରେ । ପିଲାମାନଙ୍କର ବୁଦ୍ଧି ଓ ଜ୍ଞାନ ଅଛି ବୋଲି ଆମକୁ ବୁଝାଇବାକୁ ପଡ଼ିଥିଲା ପ୍ରିନ୍‌ସିପାଲ୍‌ଙ୍କୁ ।

ଗୃହର ମାଲିକାଣୀ ନୀରବରେ ଆସି ଆମର ଗତିବିଧି ଓ କାର୍ଯ୍ୟ କଳାପ ଲକ୍ଷ୍ୟ କରୁଥିଲା । ତାର କୁଟିଳ ହସ ମୋ ପକ୍ଷରେ ଥିଲା ବିରକ୍ତିକର । ସେଇ ଘରଟିରେ ପ୍ରକୃତରେ ମୋର ଅବସ୍ଥା ଶୋଚନୀୟ ହୋଇ ଉଠିଲା । କାରଣ ପିଲା

ଦିନକୁ ଦୁଇଥର ସ୍ନାନ କରିବା ମୋର ଅଭ୍ୟାସରେ ପଡ଼ିଯାଇଥିଲି । କିନ୍ତୁ, ପାଣି ନ ଥିବା ଦୃଷ୍ଟିରୁ ଶୁଖିଲି ପାଣି କଳକୁ ନେଇ କଣ୍ ଆଉ କରିଥା'ନ୍ତି । କେବଳ ରେଗିଣା ସ୍ତ୍ରୀ-ଲୋକପରି ଲୁଗା ବଦଳାଇ ପୋଛି ହୋଇ ପଡ଼ୁଥିଲି । ମୁଁ ସ୍ୱାମୀଙ୍କୁ କହିଲି —"ଦେଖ, ଏ ଘରେ ପୁରିପୂରି **ମା**ସୁଟିଏ ରହିଲେ ମୁଁ ମରିଯିବି ।"

ପ୍ରଥମ ସପ୍ତାହରେ ଭାଇଙ୍କଠାରୁ ଟେଲିଗ୍ରାମ୍ ପାଇଲି । ବାପା ହୃଦ୍-ରୋଗରେ ଆକ୍ରାନ୍ତ ଓ ସଙ୍କଟାପନ୍ନ ଅବସ୍ଥାରେ । ବିଳମ୍ବ ନ କରି ପ୍ରଥମେ ମିଳୁଥିବା ଉଡ଼ାଜାହାଜ ଯୋଗେ କାଲିକଟ୍ ଗଲି । ଦେଖିଲି ବାପା ଔଷଧାକ୍ରାନ୍ତ ଅବସ୍ଥାରେ ଅଳିନ୍ଦରେ ଶୋଇଛନ୍ତି । ଦାଢ଼ି କଟା ହୋଇନି । ସେ ମୋତେ ଚିହ୍ନିବା ମାତ୍ରେ କୋହ ସମ୍ଭାଳି ନ ପାରି କାନ୍ଦି ଉଠିଲେ । ତାଙ୍କ ନିକଟରେ ମାସେ ରହିଲି । ଅଳିନ୍ଦରେ ସପ ଉପରେ ଶୋଇ ଶୋଇ ତାଙ୍କର ଯତ୍ନ ନେଲି ଅହୋରାତ୍ର । ସୁପ୍ ଓ ଫଳରସ ତାଙ୍କୁ ଦେଉଥିଲି ମୁଁ । ମୁଁ ଥରେ—'How to make hundred delicious soups'—ନାମକ ବହିଟିଏ କିଣିଥିଲି । ମନେ ଥିବାରୁ ମୁଁ ଯେ କୌଣସି ପ୍ରକାରର ସୁପ୍ ପ୍ରସ୍ତୁତ କରିପାରୁଥିଲି ।

ବାପା ସୁସ୍ଥ ହେଲେ । ଚଲାବୁଲା କଲେ । ମୁଁ ଫେରି ଆସିଲି ଦିଲ୍ଲୀ । ତା'ପରେ ଆମେ ଲଜପତ୍ ନଗରର ଗୋଟିଏ ଫ୍ଲାଟ୍‌ରେ ରହିଲୁ । ସେଠାରେ କାନ୍ଥ କଡ଼ରେ ସିଡ଼ି ବୁଦା ଥିଲା । କେଁ-କଟ୍ ଶବ୍ଦ କରୁଥିବା ଗ୍ରେଟ ଲୁହାର ଫାଟକଟିଏ ବି ଥିଲା ସେଠି । ଘର ପାଖକୁ ଲାଗି ଗୋଟିଏ ଖୋଲା ପଡ଼ିଆ ଥିଲା, ପ୍ରାୟ ଏକ ଏକର ହେବ । ସନ୍ତସନ୍ତିଆ ଶ୍ରମିକ ବସ୍ତିଠାରୁ ତାହା ଆମକୁ ଭିନ୍ନ କରି ରଖିଥିଲା । ସେଇ ଖୋଲା ସ୍ଥାନରେ ଚରୁଥିଲେ ମଇଁଷିମାନେ, ସାରାଦିନ । ମଝିରେ ମଝିରେ ଆମ ଘରକୁ ଆସି କାନ୍ଥରେ ସେମାନଙ୍କର ନାକ ଘଷୁଥିଲେ ।

ଆମ ଘରର ପାହାଚ ଉପରେ ବସି ମୁଁ ବସ୍ତି-ବାସୀ ମାନଙ୍କର ଦୈନନ୍ଦିନ ଜୀବନକୁ ଲକ୍ଷ୍ୟକରି ପାରୁଥିଲି । ତାଙ୍କର ରନ୍ଧା ରନ୍ଧ୍ର ଓ ଉପରକୁ ଉଠୁଥିବା ନୀଳରଙ୍ଗର କୋଇଲା ଧୂଆଁ ସ୍ପଷ୍ଟ ଦିଶୁଥିଲା ମୋତେ । ପ୍ରାୟ ପ୍ରତିଦିନ ବସ୍ତି ଭିତରେ କେହି ନା କେହି ଜଣେ ମରିବାର ଦେଖା ଯାଉଥିଲା । ମୃତ ବ୍ୟକ୍ତିର ଶବକୁ ଗୋଟିଏ ଖଟିଆରେ ରଖି ଲୋକେ ନେଇଯାଉଥିଲେ କୌଣସି ଏକ ଦୂର ସ୍ଥାନକୁ । ପଛେ ପଛେ ତାର ଆତ୍ମୀୟମାନେ କାନ୍ଦି କାନ୍ଦି ଯାଉଥିଲେ । ମନେ ହେଉଥିଲା ଯେପରି ସମ୍ପୂର୍ଣ୍ଣ ଭାବରେ ନିରାଶ ହୋଇଥିବା ଦରିଦ୍ର ବ୍ୟକ୍ତିମାନେ ହିଁ କେବଳ କେମିତି କାନ୍ଦିବାକୁ ହୁଏ ଜାଣନ୍ତି ।

ଏହି ସମୟରେ ମୋର ବଡ଼ ପୁଅ ମନୁ ଅସୁସ୍ଥ ହୋଇପଡ଼ିଲା । ଟାଇଫଏଡ଼୍ ବୋଲି ଜଣାପଡ଼ିଲା ପରେ । ମୁଁ ଡର ଯାଇଥିଲି । ଏଇ ବସ୍ତିବାଲା ମାନେ ଆଉ ତା' ଦେହରେ ମୃତ୍ୟୁର ବୀଜ ରୋପଣ କରଦେଲେ କି ? ମୁଁ ସ୍ୱାମୀଙ୍କୁ କହିଲି—"ମୁଁ ଯାଉଚି ପିଲା ଛୁଆଙ୍କୁ ଧରି ମାଲବାରରେ ଶାନ୍ତିରେ ରହିବି । ଦିଲ୍ଲୀ କେବଳ ଧୂଳି ଓ ବୀଜାଣୁରେ ପରିପୂର୍ଣ୍ଣ ।"

ଲଜପତ୍ ନଗରର ସେଇ ଅପରିଚ୍ଛନ୍ନ ପରିବେଶରୁ କିଛି ସମୟ ପାଇଁ ଦୂରେଇ ରହିବା ଉଦ୍ଦେଶ୍ୟରେ ମୁଁ ପ୍ରାୟ ପ୍ରତ୍ୟହ ସନ୍ଧ୍ୟାରେ ଯାଉଥିଲି ଯୋଜନା କମିସନ୍‌କୁ, ସ୍ୱାମୀଙ୍କ ନିକଟକୁ । ବାଟରେ ଆଉରେଙ୍ଗଜେବ ରୋଡ଼ର କଡ଼ରେ ଶୁଖିଲା ପତ୍ର ପୋଡ଼ା ହେବା ଦେଖୁଥିଲି । ତାହାର ବାସ୍ନା ମୋତେ ଭଲଲାଗୁଥିଲା । ଦିଲ୍ଲୀର ରାସ୍ତା ଗୁଡ଼ିକ ସବୁଠାରୁ ସୁନ୍ଦର । ଦୁଇ କଡ଼ର ଗହଳିଆ ଗଛର ଛାୟାରେ ଶୀତଳ ଓ କଳା ମଚ ମଚ ରାସ୍ତା । ତୁଳନା ନାହିଁ । ପୁଣି ସେସବୁର ନାମଗୁଡ଼ିକ ଭାରି ଚିତ୍ତାକର୍ଷକ । ମୁଁ ପ୍ରତିଦିନ ସୋନେରିବାଗ ରୋଡ଼ ଦେଇ ଯାଉଥିଲି, କାରଣ ନାଁଟି ମୋତେ ଭଲ ଲାଗୁଥିଲା ଭାରି ।

ଯେଉଁମାନଙ୍କର ବଙ୍ଗଳାସବୁ ଏଇପରି ରାସ୍ତା ସବୁର ପାର୍ଶ୍ୱରେ ବିରାଜିତ ଥିଲା, ମୁଁ ତାଙ୍କୁ ଈର୍ଷା କରୁଥିଲି ମନେ ମନେ । ଶରତ କାଳରେ ପତ୍ରପୋଡ଼ା-ଧୂଆଁର ବାସ୍ନା ପାଇବାର ସୁଯୋଗ କେବଳ ସେଇମାନଙ୍କର ଥିଲା ।

ପରେ, ଜଣେ ବନ୍ଧୁଙ୍କ ସହାୟତା ବଶତଃ ଆମେ ସାଉଥ୍ ଏକ୍ସଟେନ୍-ସନରେ ଘରଟିଏ ପାଇଲୁ । ଫ୍ଲାଟ୍‌ର ପ୍ରଥମ ମହଲାରେ । ଯିବାପାଇଁ ଉପରକୁ ଲମ୍ବିଥିଲା ପାହାଚ । ପାହାଚର କଡ଼େ କଡ଼େ ଗୁଡ଼େଇ ହୋଇ ରହିଥିଲା ବୁଗେନ୍‌ଭିଲା ଓ ରଙ୍ଗୁନ୍ ଲତିକା । ଘରର ମାଲିକ ଥିଲେ ଜଣେ ଯୁବକ ସୁଲଭ ରୋମାଣ୍ଟିକ୍ ବ୍ୟକ୍ତି । ସେ ଓ ତାଙ୍କ ସ୍ତ୍ରୀ ବାରମ୍ବାର ଆମଘରକୁ ଆସୁଥିଲେ । ତାଙ୍କ ପତ୍ନୀ ଥିଲେ ଘରିତିଆରି ରୁଚିଭଳି ଉଷୁମ । ତାଙ୍କର ସ୍ନେହ-ପୂର୍ଣ୍ଣ କଥାବାର୍ତ୍ତା ଭଲ ଲାଗୁଥିଲା ମୋତେ । ସେତେବେଳେ ମୁଁ ତୃତୀୟଥର ପାଇଁ ଗର୍ଭଧାରଣ କରିଥିଲି ।

ଯଥେଷ୍ଟ ପଢ଼ାପଢ଼ି ଥିବା କେତେକ ବୌଦ୍ଧିକ ବନ୍ଧୁ ମୁଁ ପାଇଥିଲି ଦିଲ୍ଲୀରେ । ଯେତେବେଳେ ବାହାରକୁ ଯିବାପାଇଁ ମୋତେ ଭଲ ଲାଗୁଥିଲା, ପହଞ୍ଚି ଯାଉଥିଲେ କେହି ନା କେହି । ଯାହାଙ୍କ ସହିତ ମୁଁ ନାଟକ, କିମ୍ବା ବିଦେଶୀ ସିନେମା ଅଥବା ଚିତ୍ରକଳା ପ୍ରଦର୍ଶନୀ ଦେଖିବାକୁ ଯାଉଥିଲି । ପଇସା ଥିଲେ ଆମେ ଦିନେ ଦିନେ କ୍ଲବଟିକୁ ମଧ୍ୟ ଯାଉଥିଲୁ । ବିଶେଷ କରି ଜଣେ ନାଟ୍ୟ ସମୀକ୍ଷକ

ଥିଲେ ମୋର ପରମବନ୍ଧୁ । ସେ ଥିଲେ ଯୁବକ । ମାର୍କ୍ ଆଣ୍ଟୋନିଙ୍କ ରୂପ ସହିତ ତାଙ୍କ ଚେହେରାର ସାମ୍ୟ ଥିଲା । ମୋ ଠାରୁ ବୟସରେ ସାନହେଲେ ମଧ୍ୟ ମୁଁ ତାଙ୍କୁ ହିଁ ଅଧିକାଂଶ ସମୟରେ କୁଆଡ଼କୁ ଯିବାକୁ ଚାହିଁଲେ ଖୋଜୁଥିଲି ।

ମୋ ସ୍ୱାମୀ ମଧ୍ୟ ଖୁବ୍ ଭଲ ପାଉଥିଲେ ତାଙ୍କୁ । ମୋର ମନ ଖରାପ ହେଲେ କିମ୍ବା ବିରକ୍ତ ଆସିଲେ ସ୍ୱାମୀ କହୁଥିଲେ—"ଯା, ତୁମର ବନ୍ଧୁଙ୍କ ସହିତ ଟିକେ ବୁଲିଆସିବ" । ଥରେ ଆମେ ଦୁହେଁ ଗୋଟିଏ ଦୁଇଚକିଆ ସ୍କୁଟର୍ ନେଇ ଷ୍ଟିଫେନ୍ସ୍ କଲେଜକୁ ଯାଇଥିଲୁ । 'ଲା ବୋହେମ୍'ରେ ସେ ମୋତେ ଚୀନଦେଶୀୟ 'ଟୀ' ପିଆଇଲେ । ତାହା ମୋତେ ଖାଲି ଗରମପାଣି ପରି ଲାଗିଲେ ବି ମୁଁ ଏହାକୁ ଆଗରୁ ଖାଇଛି ବୋଲି ମିଛ କହିଲି ।

'ଲା ବୋହେମ୍'—ପରେ ଆମେ ଦୁହେଁ ବୁଲିଗଲୁ ଅନ୍ୟଆଡ଼େ । ସିଧାସଳଖ ବୋତଲରୁ ମଦ୍ୟପାନ କରିବା ମନେଅଛି । ସେତେବେଳକୁ ଦିଲ୍ଲୀରେ ସନ୍ଧ୍ୟାଲୋକ । ରାସ୍ତାସାରା ବାତ୍ୟା । ମୋତେ ସେଦିନ ନିଜକୁ ଯୁବତୀ ଯୁବତୀ ଲାଗିଥିଲା । ଲାଗିଥିଲା ଆନନ୍ଦ, ବନ୍ଧନହୀନତାର ଉଚ୍ଛ୍ୱସିତ ଆନନ୍ଦ ।

# ଅଣଚାଳିଶି

## କାଲିକଟ୍‌ରେ ପାଗଳଙ୍କ ସଂଖ୍ୟା କମ୍ ନୁହେଁ...

ପୁନଶ୍ଚ ବର୍ଷାର ଋତୁ ଏବଂ
ଅଶ୍ରୁସିକ୍ତ ଗଛମାନଙ୍କରେ
ମାଡ଼ିଯାଏ ଶିଉଳି ଓ ମାଟି ଭିତରୁ
ମୁଣ୍ଡଟେକି ବର୍ଷାରେ ଗାଧୋଇବାକୁ
ବାହାରି ଆସନ୍ତି ଜିଆମାନେ ।

ମୋ ପୁଅ ଜନ୍ମହେବା ଦିନ ବର୍ଷା ହେଉଥିଲା
ଆରମ୍ଭ ହେଲା ମୋର ଯନ୍ତ୍ରଣା,
ମୋର ଦୀର୍ଘଶ୍ୱାସ, କାନ୍ଦଣା ଓ ଚିତ୍କାର ସହିତ ତାଳ ଦେଇ...
ସେ ଥିଲା ମୋର ସାଥୀ ।

ମୁଁ ଚିତ୍କାର କଲି କେବଳ ଟିକିଏ ଦୁଃଖିପାରିବ ବୋଲି
ବନ୍ଦକଲି କାନ୍ଦଣା
ଶୁଣିବା ପାଇଁ ତାର କାନ୍ଦଣା ।

ଅନୁଭବ କଲି ସେତେବେଳେ
ଯେ ସ୍ନେହ-ସ୍ଥାନମାନେ ହିଁ କଷ୍ଟ ପାଆନ୍ତି
ଯେ କେବଳ ସ୍ୱାର୍ଥପରମାନେହିଁ ଡରିଯାଆନ୍ତି
ଏବଂ ତା'ପରେ ପ୍ରଥମ ରକ୍ତଧାରର ବର୍ଣ୍ଣରେ
ଅନ୍ୟ ଏକ ସକାଳର ସଙ୍କେତ
ଫୁଟି ଉଠେ ।

କ୍ଷଣକ ପାଇଁ ମୁଁ ବି ଥିଲି ପୃଥିବୀ
ମୋ ଭିତରେ ନୀରବ ଥିଲି ବୀଜ
ଅପେକ୍ଷା କରୁଥିଲି ଗର୍ଭସ୍ଥ ଶିଶୁ ପରି
କେତେବେଳେ ତାକୁ ସମ୍ପୂର୍ଣ୍ଣ ବହିଷ୍କାର କରିବ
ଗର୍ଭ ।
ଏହା ହିଁ ଥିଲା ମୋର ଭାଗ୍ୟ ।
ପ୍ରତୀକ୍ଷା ସଦନକୁ ଯାଇଁ ମୁଁ ଚିତ୍କାର କଲି ।
ଯେତେବେଳେ ମୋ ହୃଦୟ ଶୂନ୍ୟ,
ହେ ବିଦେଶି ! ସେଇ ଶୂନ୍ୟତାକୁ
ଗୋଟିଏ ଶିଶୁ ଦେଇ ପୂର୍ଣ୍ଣ କର ।

ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ ପ୍ରେମ
ଯଦିଓ ତାହା ମତୁଆଲି କରେ ରକ୍ତକୁ
ଆଲିଙ୍ଗନର ପରିଣାମଟା ହିଁ ଗୁରୁତ୍ୱପୂର୍ଣ୍ଣ ।
ବର୍ଷା ଓ ବିଦ୍ୟୁତ୍‌ରେ ରଚିତ ହୁଏ ଯେଉଁ ଜୀବ,
ଗର୍ଭରେ କୋମଳ ଚଞ୍ଚଳତା, କ୍ରମଶଃ ଉଦ୍ଧରଣରେ···
ଯେଉଁ ସମ୍ପଦ

ବେଳାଭୂମିରୁ ଫେରିଯାଏ ସମୁଦ୍ରକୁ
ତାହାହିଁ ଗୁରୁତ୍ୱପୂର୍ଣ୍ଣ,
ଯେଉଁ ଲହରୀ ନେଇଯାଏ
ଭିତରକୁ ତାର ବା କଣ୍ ଗୁରୁତ୍ୱ ?

ବର୍ଷା ବନ୍ଦ ହେବା ପରେ—
ଗଛ ପତ୍ରରେ ଆଲୋକ ଝଲସିବା ପରେ—
ଅପରାହ୍ଣ ।

ତା'ପରେ ସେ କାନ୍ଦ କାନ୍ଦ ଆସିଲା
ଆଲୋକକୁ ; ଅତି ଉଜ୍ଜ୍ୱଳ
ମଳିନ ଆଲୋକରେ ଝଲସି ଉଠିଲା
ନୂତନ ଆଲୋକ ;

ସେମାନେ ମୋ ହାତକୁ ବଢ଼ାଇଦେଲେ
ମୋର ପୁଅକୁ , ଗୌରବର ଜୟସୂର୍ଯ୍ୟ
ସେ ବିଚ୍ଛିନ୍ନ ହୋଇ ଆସିଥିଲା
ମୋର ଗର୍ଭସ୍ଥ ଅନ୍ଧକାରରୁ ।

ଯେଉଁ ଅନ୍ଧକାର ମୋର ପରିଚିତ,
ଯେଉଁଠି ମୁଁ ବଞ୍ଚିଥିଲି,
କୋଠରୀର ଅନ୍ଧକାର
ଯେଉଁଠି ବୁଢ଼ାମାନେ ବସନ୍ତି, ଓ
ଶାଣ ଦିଅନ୍ତି ଶବ୍ଦ ସବୁରେ
ଭବିଷ୍ୟର ବ୍ୟବହାର ପାଇଁ,

ବନ୍ଧ୍ୟା ନାରୀର ଗର୍ଭର ଅନ୍ଧକାର
ଏବଂ କୃପଣର କଳସିର ଅନ୍ଧକାର
ଚନ୍ଦ୍ରହୀନ ରାତିରେ ସେ
ଜନ୍ମ ହୋଇଛି, ମୋର ପୁଅ ଜୟସୂର୍ଯ୍ୟ,
ଯେପରିକି ଅସତ୍ୟରୁ ଜନ୍ମ ହୋଇଛି ସତ୍ୟ
ଯେପରିକି ଅନ୍ଧାର ରାତିରୁ ଜନ୍ମ ହୋଇଛି
ରଶ୍ମିରଂଜିତ ଦିବସଟିଏ ।

ଗର୍ଭର ସପ୍ତମ ମାସରେ ମୁଁ କାଲିକଟ୍ ଗଲି ବାପା-ମାଙ୍କ ନିକଟରେ ରହିବାକୁ । ଇଚ୍ଛା ନ ଥିଲା; କାରଣ ଏତେ ଦିନଧରି ମୋ ପୁଅଙ୍କଠାରୁ ଦୂରରେ ରହିବାକୁ ମୁଁ ଚାହୁଁ ନ ଥିଲି ।

ସେତେବେଳେ ବାପା-ମା ଗୋଟିଏ ଅନ୍ଧାରୁଆ ଘରେ ରହୁଥିଲେ । ତା' ପୁଣି ସହରର ବହିର୍ଭାଗରେ । ଫାଟକ ଦୁଇପଟର କାନ୍ଥ କଳା ହୋଇ

ଯାଇଥିଲି ନେଲରେ । ଫାଟଗୁଡ଼ିକରେ ସାପ ରହିବା ମଧ୍ଯ ଅସମ୍ଭବ ନ ଥିଲା । କାନ୍ଥକଡ଼କୁ ଥିଲା ଜବା ଫୁଲଗଛ,—ଯାହାର ମୂଳ ଓ ଚେର ଥିଲା ବେଶ ଟାଣ ଓ ଫୁଲସବୁ ଥିଲା ଲାଲ୍ ଲାଲ୍ ।

ଅନେକ ସମୟରେ ନାରାୟଣୀ ନାମ୍ନୀ ପାଗଳୀ ଝିଅଟିଏ ଆସୁଥିଲା ଫାଟକ ପାଖକୁ, ମୋତେ ଗୃହିଁ ବରବର ହେଉଥିଲା, ଖାଇବାକୁ ମାଗୁଥିଲା । ତାର ଦାନ୍ତସବୁ ଥିଲା ଭଙ୍ଗାଭଙ୍ଗା ଓ ମୁନିଆ ।

ଆଉ ଜଣେ ବାୟାଣୀ ସ୍ତ୍ରୀ-ଲୋକ ମଧ୍ଯ ସେଠାରେ ଥିଲା । ତା'ନାଁ ଆମ୍ବଲୁ ଅମ୍ମା । ସେ ଲୁଗା ଓ ଭାତପାଇଁ ଆମକୁ ବାରମ୍ବାର ପ୍ରଶଂସା କରୁଥିଲା; ଚିହ୍ନାଉଥିଲା । ସବୁଠାରୁ ନିକୃଷ୍ଟ ଧରଣର ଭିକ୍ଷା-ଜୀବୀ ଥିଲା ଜଣେ ତିରିଶି-ବର୍ଷ ବୟସର ସ୍ତ୍ରୀ-ଲୋକ । ସେ କାଖରେ ଗୋଟିଏ ମଇଳା ଲୁଗାପଟାର ବୁଜୁଳି ଧରି ନୀରବରେ ଆସୁଥିଲା । କିନ୍ତୁ ଖାଇସାରିବା ପରେ ଅତି ଅଭଦ୍ର ଓ ଅଶ୍ଳୀଳ ଭାଷାରେ ଗାଳି ଦେଉଥିଲା ଆମକୁ । ଚାକରମାନେ ତାକୁ ତଡ଼ିଲେ ବି ସେ ଫାଟକ ପାଖରେ ଠିଆହୋଇ ରହୁଥିଲା ଓ କୁକୁରଠାରୁ ହୀନ-ପ୍ରକୃତିର ଲୋକମାନଙ୍କ ଅନ୍ୟାୟ-ଆଚରଣ ପ୍ରତି ଗାଳି ବୃଷ୍ଟି କରୁଥିଲା । ତାର ଚିତ୍କାର ଶୁଣି ଲୋକେ ଜମାହୋଇ ପଡ଼ୁଥିଲେ ।

ଗ୍ରୀଷ୍ମକାଳରେ କାଲିକଟ୍‌ରେ ପାଗଳମାନଙ୍କ ସଂଖ୍ୟା ବେଶ୍ ବଢ଼ିଯାଏ, ସମ୍ଭବତଃ ରାସ୍ତାର ଉତ୍ତାପ ଓ ଗାଡ଼ିଚକର ଧୂଳି ଯୋଗୁ । ସହରଟା ଜଳବାପରି ଲାଗେ ସେଇ ନିଦାଘ ଋତୁରେ । କୂଅସବୁ ଶୁଖିଯାନ୍ତି । ଗଛପତ୍ର ଶୁଖିଯାଏ । ଜବା-ମନ୍ଦାର ଭଳି ଅଳ୍ପ କେତେକ ଗଛ ହିଁ ବଞ୍ଚିଯାଆନ୍ତି ।

ଘରୁ ଏକା ବାହାରିବାକୁ ମୋତେ ଡର ଲାଗୁଥିଲା । ମୁଁ ଅଣ୍ଡା ଘର ଭିତରେ ପରଦାର ଆଢୁଆଳରେ ବସି ରହୁଥିଲି । ଦର୍ପଣରେ ମୋର ବିଚିତ୍ର ଚେହେରାର ପ୍ରତିଫଳନକୁ ଲକ୍ଷ୍ୟ କରୁଥିଲି ।

ଦିନେ ସକାଳେ ଯନ୍ତ୍ରଣା ହେଲାରୁ ନିଦ ଭାଙ୍ଗିଗଲା । ଜାଣିଲି, ପ୍ରସୂତି ଡେରିନାହିଁ । ଆମର ବନ୍ଧୁ, ଡାକ୍ତରାଣୀ ବିମଳା ନାୟାର୍ ସାଙ୍ଗେ ସାଙ୍ଗେ ଆସିଲେ । ମୋତେ ଆକାଶ ନିସ୍ତେଜ ଦିଶୁଥିଲା, ପବନର ଶବ୍ଦ ଶୁଣାଯାଉଥିଲା କାନରେ । କିଏ ହେବ କି କଣ୍ ଭାବି ବିସ୍ମିତ ହେଲି ।

ହସ୍‌ପିଟାଲ୍‌ର ଟେବୁଲ୍ ଉପରେ ଯନ୍ତ୍ରଣାରୁ ମନକୁ ଭିନ୍ନମୁଖୀ କରିବା ପାଇଁ ମୁଁ ଗାୟତ୍ରୀମନ୍ତ୍ର ଆବୃତ୍ତି କରୁଥିଲି । ମୋ ଆଖି ଡୋଳାରେ ସୂର୍ଯ୍ୟ

ଫୁଟି ଉଠିବାପରି ମନେ ହେଲା, ଶିରପ୍ରଶିରାରେ ଅସୀମ ଉତ୍ତାପର ସଞ୍ଚାର ଅନୁଭବ କଲି ଓ ଧୀରେ ଧୀରେ ଜାନୁଦେଇ ଖସି ଆସିଲା ଶିଶୁ । ମୋତେ ଶୁଣାଗଲା ତାର କାନ୍ଦଣା । ବିମଳା କହିଲେ—'ପୁଅ ହେଇଚି ।'

ମୋ ମାଆ ବିମଳାଙ୍କ ହାତରୁ ପୁଅକୁ ନେଲେ ଓ ଦେଲେ ମୋ ଗୋଡ ପାଖରେ । ଦୀର୍ଘ ଜୀବନର କାମନା କରି ମୁଁ ତାକୁ କଲ୍ୟାଣ କଲି । ତାର ଓଦା କପାଳକୁ ଚୁମ୍ବନ କରି ମୁଁ ତାକୁ ଡାକିଲି—'ଜୟସୂର୍ଯ୍ୟ ।' ତାହା ଥିଲା ତା'ର ଏକମାତ୍ର ନାମକରଣୋତ୍ସବ । ଦୀର୍ଘ ଆଖିପତା ଓ ବହଳିଆ ବାଳ ଥିବାରୁ ନବଜାତଟି ସୁନ୍ଦର ଦିଶୁଥିଲା । ମୋ ପାଇଁ କୌଣସି ସ୍ୱତନ୍ତ୍ର ବଖରା ସେଦିନ ସଞ୍ଜରେ ହସ୍‌ପିଟାଲ୍‌ରେ ମିଳି ପାରିଲା ନାହିଁ । ତେଣୁ ପାଇଖାନା ନିକଟସ୍ଥ ଏକ ଶଯ୍ୟାରେ ଆମକୁ ରାତି ବିତାଇବାକୁ ପଡ଼ିଲା । ନିକଟରେ ଥିଲା ମଇଳା ରକ୍ତ ସାଲୁବାଲୁ କନାପଟା ପଡ଼ିବାର ସ୍ଥାନ ।

ସେଦିନ ସାରା ରାତି ଧରି ହେଲା ବର୍ଷା । ବର୍ଷାର ଛିଟାରୁ ପିଲାକୁ ରକ୍ଷା କରିବାପାଇଁ ମୁଁ ଓ ମୋ ଭଉଣୀ ଦୁଇପଟରେ କଡ଼େଇ ଶୋଇଲୁ,ଓ ସେ ଆଶ୍ରିତ ପରି ରହିଲା । ମିନିଟ୍‌କ ପାଇଁ ବି ମୋତେ ନିଦ ହେଲାନି । କାରଣ ମୋ ଉପରେ ପିଟି ହେଉଥିଲା ଥଣ୍ଡା ପବନ । ମୁଁ ବଡ଼ କଷ୍ଟ ଅନୁଭବ କରୁଥିଲି । ଅନ୍ୟ ପୁଅମାନଙ୍କ ଜନ୍ମ ସମସ୍ତ କଥା ମନେ ପକାଇ ନବଜାତ ପ୍ରତି ଦୟା ହେଲା । ଅନ୍ୟମାନେ ଆମ ଘରେ ଜନ୍ମ ହୋଇଥିଲେ । ସେତେବେଳେ ଆମକୁ ଉତ୍ତାପ ଦେବାଲାଗି ଥିଲେ ବୁଢ଼ୀ-ମା । ସେଦିନ ରାତିରେ ମୁଁ ସେଇ ସ୍ୱର୍ଗୀୟାଙ୍କ ଅଭାବହିଁ ଅନୁଭବ କଲି ଦୁଃଖଜନକ ଭାବରେ ।

ସକାଳେ ବାପା ଆସିଲେ ଓ ମୋ ଅବସ୍ଥା ଦେଖି ନେଇଗଲେ ଘରକୁ । କିନ୍ତୁ ସେଠାରେ ବି ଆମର ଅବସ୍ଥା ସନ୍ତୋଷଜନକ ହୋଇପାରିଲା ନାହିଁ । ମୋ ସାନଭଉଣୀର ବାହାଘର ଠିକଣା ହୋଇ ସାରିଥାଏ । ଚାଲିଥାଏ ପ୍ରସ୍ତୁତି । ଦିନରାତି ଆତ୍ମୀୟ ଓ ବନ୍ଧୁବାନ୍ଧବ ସବୁ ଶୁଭେଚ୍ଛା ଜଣାଇବାକୁ ଆସୁଥାନ୍ତି । ଡ୍ରଇଂ ରୁମ୍‌ରେ ନ ବସି ସେମାନେ ଆସି ବସୁଥାନ୍ତି ମୋ ଖଟରେ, କିମ୍ବା ନିକଟରେ । ସେମାନଙ୍କ ନିରବଚ୍ଛିନ୍ନ ଉପସ୍ଥିତି ଯୋଗୁ ମୁଁ ରକ୍ତାକ୍ତ ବସ୍ତ୍ର ପାଲଟିବାକୁ ଅବସର ପାଉ ନ ଥାଏ । ଶୋଇ ପାରୁ ନ ଥାଏ କିମ୍ବା ଦୁଧ ଦେଇ ପାରୁ ନଥାଏ ପିଲାକୁ ।

ରାତି ଅଧ ବେଳକୁ ପରିଦର୍ଶକ ମାନେ ଆସିବା ବନ୍ଦ୍ ହେଲା । ଜାଲବନ୍ଧ ପଶୁ ଭଳି ମୋ ଅବସ୍ଥା ସେତେବେଳକୁ କରୁଣ । ସ୍ତନରୁ ଦୁଧସବୁ ଉଛୁଳି ପଡ଼ି

ଧୀର ଧୀର ବୋହିଯାଉଥାଏ । କିନ୍ତୁ ବ୍ଲାଉସ୍‌ର ବୋତାମ ଖୋଲିବାକୁ ମୋତେ ଲାଜ । ପିଲାକୁ ଖୁଆନ୍ତି କେମିତି ? ଯନ୍ତ୍ରଣା ଓ କାରୁଣ୍ୟରେ ମୁଁ ପ୍ରଥମ ସୁଯୋଗକୁହିଁ ଅପେକ୍ଷା କରୁଥିଲି ଘର ଭିତରପଟୁ ବନ୍ଦ କରିବା ପାଇଁ । ସୁଯୋଗ ଆସିବା ମାତ୍ରେ ମୁଁ ଦୁଆର ବନ୍ଦ୍ କଲି । କିନ୍ତୁ ସେଥିରେ ବାପା-ମା ଭୟ ପାଇଗଲେ । ସେମାନେ ଭାବିଲେ ମୁଁ ବୋଧହୁଏ ପାଗଳ ହୋଇଗଲିଣି । ସେମାନେ ଦୁଆର ମୁହଁରେ ପାଟିକଲେ ।

ଆତ୍ମୀୟମାନେ କହିଲେ—"ଆରେ, ଦୁଆର ଖୋଲ । ପିଲାଟାକୁ ନେଇ ତୁ ଏକୁଟିଆ ସେଠି କଣ୍ କରୁଛୁ ?" ଆପଣା ଶିଶୁର ନିରାପତ୍ତା ପାଇଁ ମୁଁ ସେତେବେଳେ ବାଘୁଣୀ ସଦୃଶ ପାଲଟି ଯାଇଥିଲି । ପିଲାକୁ ବକ୍ଷରେ ଜାବୁଡ଼ି ଧରି ମୁଁ ଉତ୍ତର ଦେଲି ବଡ଼ ପାଟିରେ—"କଦାପି ଖୋଲିବି ନାହିଁ ।"

ତା'ପରେ ଡକା ହେଲା ମୋ ବଡ଼ଭାଇଙ୍କୁ । ବଡ଼ ଭାଇ କୋମଳ ସ୍ୱରରେ ମୋତେ କବାଟ ଖୋଲିବାକୁ ଅନୁରୋଧ କଲେ—"ମୁଁ ତୋର ଭାଇ । ତୋର କଣ୍ ଅସୁବିଧା ମୋତେ କହ ।" ମୁଁ ଦୁଆର ଖୋଲିଲି ଓ ତାଙ୍କ କାନ୍ଧ ଉପରେ ଭରାଦେଇ କାନ୍ଦିପକେଇଲି । ସେ ମୋତେ ତାଙ୍କ ସାନ କୁଟୀରକୁ ନେଇଗଲେ । ସେଠି ଭାଉଜ ମୋତେ ସବୁଠୁ ଆରାମଦାୟକ କୋଠରୀରେ ରହିବାକୁ ଦେଲେ ।

ଶିଶୁ ପୁଅ ତିନିସପ୍ତାହର ହୋଇଯିବା ପରେ ମୁଁ ଫେରିଆସିଲି ଦିଲ୍ଲୀକୁ । ବିମାନ ଘାଟୀରେ ନବଜାତକୁ ସ୍ୱାଗତ ସମ୍ଭାଷଣ ଜଣାଇବା ପାଇଁ ସ୍ୱାମୀ ଉପସ୍ଥିତ ଥିଲେ । ମଧ୍ୟାହ୍ନ ଭୋଜନ ସମୟରେ ଅନ୍ୟ ପୁଅମାନେ ମଧ୍ୟ ଶିଶୁର ମୁଖ ଦର୍ଶନ କଲେ । କିଛିଟା ସଙ୍କୋଚର ସହିତ କୋମଳତା ପରୀକ୍ଷା କରିବାପାଇଁ ସେମାନେ ନବଜାତର ବାଇଗଣି ରଙ୍ଗର ପାଦ ଦୁଇଟିକୁ ସ୍ପର୍ଶ କରି ଦେଖିଲେ । ସ୍ୱାମୀ ନବଜାତର ଡାକ ନାଁ ଦେଲେ—'ସୁଡୁ' । ମୋ ସ୍ୱାସ୍ଥ୍ୟ ଭାଙ୍ଗିଯାଇଥିବା ଦୃଷ୍ଟିରୁ ସେ ତାର ଯତ୍ନ ଓ ସେବାର ଦାୟିତ୍ୱ ମଧ୍ୟ ବହନ କଲେ ଅନେକ ପରିମାଣରେ । ଫ୍ରିଜ୍‌ରେ ସକାଳୁ ବୋତଲ ପ୍ରସ୍ତୁତ କରି ରଖୁଥିଲେ ଓ ପିଲା ଆବଶ୍ୟକ କରିବା ମାତ୍ରେ ଗରମ କରି ଖୁଆଉ ଥିଲେ ।

ଜଣେ କୋର୍‌ଦାର୍ ସର୍ଦ୍ଦାରୁଣୀକୁ ଆମେ ପିଲାର ଯତ୍ନ ନେବା ପାଇଁ ନିଯୁକ୍ତ ଦେଲୁ । ସେ ତାକୁ କାକା ବୋଲି ଡାକିଲା । ହସେଇବା ପାଇଁ ସେ ପିଲାକୁ ଶୂନ୍ୟକୁ ପକେଇ ପୁଣି ଧରୁଥିଲା । ତାର ଏଇ ଖେଳ ଦେଖି ଆମେ ଭୟ କରୁଥିଲୁ । କିନ୍ତୁ ସେ ଥିଲା ବଡ଼ ଦୟାଶୀଳା । ମୁଁ ମନା କଲେ ମଧ୍ୟ ସେ ମୋର ଗୋଡ଼ ଘଷି ଦେଉଥିଲା ।

# ଗ୍ଲାଣି

## ପୁନର୍ଜାଗରଣ

ଯେବେ ନା ଯେବେ ମୁଁ ବିଦାୟ ନେବି

ସକାଳ ଗୃ’,
ପ୍ରୀତି-ଆଳାପ ଓ କ୍ଲାନ୍ତ କାମନା ଯୋଗେ
ମୋର ଗୃହପାଖରେ
ତୁମେ ତିଆରି ଥିବା ଟସର ଖୋଳ ଭିତରୁ ।

ଯେବେ ନା ଯେବେ ମୁଁ ପାଇବି ଡେଣା
ଉଡ଼ିବି ସୂର ପାଖରେ, ମୁକ୍ତ ପାଖୁଡ଼ା ସବୁ
ବେଳେ ବେଳେ ପବନରେ ଖେଳିଲା ଭଳି

ଏବଂ, ହେ ପ୍ରିୟତମ, କୌଣସି ଏକ ଚେରର
ବିଶୀର୍ଣ୍ଣ ଅବଶେଷ ପରି, ନିଷ୍ଟସ୍ତ
ପଡ଼ି ରହିଥିବ ପଛରେ,
ଦୁଇଟି ଶଯ୍ୟାରେ ଏକୁଟିଆ
ବିନା ଶବ୍ଦରେ, ଓ ଝୁରୁଥିବ··· ।

କିନ୍ତୁ ଯେବେ ପୁନର୍ବାର ଫେରିବି ମୁଁ
ପବନ, ସୂର୍ଯ୍ୟ ଓ ମେଘର ଆଘାତରେ
ପ୍ରାପ୍ତ ସବୁକିଛି ହରାଇ,
ଉଗ୍ର ଆନନ୍ଦରେ ଅତ୍ୟଧିକ ଆହତ ହେବାରୁ
ମୁଁ ଆଉ ସ୍ୱାଧୀନତାର ଉଚ୍ଚାରଣ
ଗୃହୁଁ ନ ଥିବ,

ଏବଂ, ଯେବେ ମୁଁ ଦେଖିବି
ମୋର ପୃଥିବୀକୁ
ରକ୍ତ-ହୀନ, ସ୍ନାୟୁ-ହୀନ ଓ ମାଂସ-ହୀନ ଅବସ୍ଥାରେ
କେବଳ ଏକ କଙ୍କାଳ,
ତାପରେ ମୁଦ୍ରିତ ହେବ ମୋର ଚକ୍ଷୁ
ଓ ଗଳିଯିବି ମୁଁ, କେଉଁଠିକି ନ ହେଲେ ବି···
ତୁମର ଏଇ ପରିଚିତ କାରାଗାରର ନୀଡ଼କୁ ।

ଦିଲ୍ଲୀକୁ ଫେରିବା ପରେ ପରେ ମୋର ସ୍ୱାସ୍ଥ୍ୟରେ କ୍ରମଶଃ ଅବନତି ଘଟିଲା । ପେଟର ଡାହାଣପଟ ବଥା ହେଲା । ବାନ୍ତିଲା ଅନବରତ । କମିଲା ନାହିଁ । ଝାଡ଼ାସାରା କାଳ ହେବାକୁ ଲାଗିଲା । ସାମାନ୍ୟ ଖାଦ୍ୟ ବି ପେଟରେ ରହିଲା ନାହିଁ । ବିଛଣାରେ ପଡ଼ି ରହିଲି । ଉଠିବା କଷ୍ଟ ହେଲା । ଏପରିକି କେହି ଅତିଥି ଆସିଲେ ମଧ୍ୟ ବୈଠକଖାନାକୁ ଯାଇପାରିଲି ନାହିଁ ପାଛୋଟିବାକୁ ।

ମୋର ନିତ୍ୟନିମିତ୍ତ ସାଥୀ ଜଣକ ଅନୁଭବ କଲେ ଯେ ମୁଁ ଆଉ ତାଙ୍କ ସହିତ ବୁଲିବାକୁ କିମ୍ବା ସିନେମା ଦେଖିବାକୁ ଯାଇପାରିବି ନାହିଁ । ଦିନେ ସେ ପାହାଚର ପାଦଦେଶରେ ଠିଆହୋଇ ମୋତେ ପଚାରିଲେ—"ତୁମେ କଣ ମୋତେ ଘୃଣା କର ।" ମୁଁ ଯନ୍ତ୍ରଣା ଓ ଘର୍ମରେ ନିଶ୍ଚଳ ହୋଇଗଲି । କିଛିହେଲେ କହିପାରିଲିନାହିଁ । ସେ କହିଲେ—"ଆମି ! କଣ୍ ହେଇଚି ତୁମର ?" ତାଙ୍କୁ ଆମ ଘରୁ ଲୁହ ଛଳଛଳ ଆଖିରେ ବିଦାୟ ନେବାକୁ ପଡ଼ିଲା । ପରେ ପରେ ଉଇଲଂଡ଼ନ୍ ହସ୍ପିଟାଲରେ ଭୟଙ୍କରଭାବେ ପୀଡ଼ିତ ହୋଇ ମୁଁ ଶଯ୍ୟାଶାୟୀ ହେଲି ।

ସୌଭାଗ୍ୟକ୍ରମେ ଦିଲ୍ଲୀରେ ସେତେବେଳେ ମୋର ଜଣେ ସାର୍ଲି ନାମ୍ନୀ ବାନ୍ଧବୀ ଥିଲେ । ତାଙ୍କୁ ଏ ଦେଶର ସବୁଠାରୁ ସ୍ନେହମୟୀ ନାରୀ ଭାବରେ ଆଖ୍ୟାତ କରାଯାଇପାରେ । ହସ୍ପିଟାଲ୍‌କୁ ସେ ପ୍ରତିଦିନ ବାରମ୍ବାର ଆସି ମୋର ଭଲମନ୍ଦ ବୁଝାବୁଝି କରୁଥିଲେ, ମୁଣ୍ଡବାଳରେ ସାମ୍ପୁ ଦେବାଠାରୁ ଆରମ୍ଭ କରି ଅନ୍ୟାନ୍ୟ ଅନେକ କାମ ଆଗଭର ହୋଇ ସେ ସମ୍ପାଦନ କରୁଥିଲେ । ମୁଁ ମୋ ବାଳ ଗ୍ରେଟ କରିବାକୁ ଚାହିଁବାରୁ ସେ ମନା କଲେ । କହିଲେ—"ତୁମର ମରିବା ଯଦି ଭଗବାନଙ୍କ ଇଚ୍ଛା ହୋଇଥାନ୍ତା ସେ ତୁମକୁ ଅଳ୍ପଦିନ ତଳେ ଏଡ଼େ ସୁନ୍ଦର ପୁଅଟିଏ ଦେଇ ନ ଥାନ୍ତେ ।" ତାଙ୍କର ଯୁକ୍ତି ଥିଲା ମୋ ପାଇଁ ସାନ୍ତ୍ୱନା ।

ସାର୍ଲିଙ୍କ ଯତ୍ନପୂର୍ଣ୍ଣ ସେବାରେ ମୁଁ କୃତଜ୍ଞତା ବଶତଃ କାନ୍ଦି ପକାଉଥିଲି । ଅନେକ ସମୟରେ ସାର୍ଲି ବାତାୟନ ନିକଟକୁ ଝପଟି ଯାଆନ୍ତି । ଲକ୍ଷ୍ୟ କରନ୍ତି କିଛି । ମୁଁ ପଚାରିଲେ କିଛି କହନ୍ତି ନାହିଁ । ପରେ, ଚଲାବୁଲା କରିବାର ଶକ୍ତି ଫେରି ପାଇବା ପରେ ମୁଁ ସେଇ ରହସ୍ୟ ଉଦ୍‌ଘାଟନ କଲି । ଶ୍ୱେତବସ୍ତ୍ରରେ ଢଙ୍କା ଶବମାନଙ୍କୁ ଲାଲ୍‌ଟିଡ଼ା ନିକଟକୁ ନିଆଯିବାର ଦୃଶ୍ୟ ମୋ ଆଖିରେ ପଡ଼ିଲା ।

ଅନେକ ସମୟରେ ହସ୍ପିଟାଲ୍‌ର ବିଭିନ୍ନ କୋଣରୁ ନାରୀମାନଙ୍କର କ୍ରନ୍ଦନ ଧ୍ୱନି ଭାସି ଆସୁଥିଲା । କାହାର ନା କାହାର ମୃତ୍ୟୁରେ ସେମାନେ ବିଳାପ

କରୁଥିଲେ । ମୁଁ କି ଦିନର କାରଣ ପଚାରିଲେ ବଦଳେଇ ଦେଉଥିଲେ ସାନି—
"ପିଲାଟିଏ ପଡ଼ିଯିବାରୁ ସାମାନ୍ୟ ଆହତ ହୋଇ କାନ୍ଦୁଛି ।" ସେ କହୁଥିଲେ—
"ଯା, ଆମି ! ଶୋଇ ପଡ଼ିବ ଯାଅ ।" ମୁଁ ଆଉର କିଛିବର୍ଷ ବଞ୍ଚିବାକୁ ଚାହୁଁଥିଲି ।
ମୋର ନବଜାତ ପୁତ୍ର ସବୁଜଘାସର ଲନ୍‌ରେ ଖେଳିବାର ଦୃଶ୍ୟ ଦେଖିବାକୁ
ଚାହୁଁଥିଲି ମୁଁ । ସେଥିପାଇଁ ଡାକୁଥିଲି ଈଶ୍ୱରଙ୍କୁ—"ହେ ଈଶ୍ୱର ! ମୋତେ
ବଞ୍ଚାଇ ଦିଅ । ମୁଁ ଶପଥ କରୁଛି, ବଞ୍ଚି ରହିଲେ ମୁଁ ଏକ ଆଦର୍ଶ ଜୀବନଯାପନ
କରିବ ।"

ଦିଲ୍ଲୀରେ ରହିଲାବେଳେ ମୁଁ 'ସେଞ୍ଚୁରି' ନାମକ ପତ୍ରିକାରେ ଲେଖୁଥିଲି ।
ପତ୍ରିକାର ମାଲିକ ଥିଲେ ସ୍ୱର୍ଗୀୟ ଭି· କେ· କୃଷ୍ଣମେନନ୍ । ମୋ ବାପା-ମା
ବୋଧହୁଏ ତାଙ୍କୁ ଭେଟିଥିଲେ ଓ ଚିହ୍ନା-ପରିଚିତ ହୋଇଥିଲେ, କିନ୍ତୁ ମୋର
ସାକ୍ଷାତ ନ ଥିଲା । ତାଙ୍କ ବିଷୟରେ ଅନେକ କଥା ତାଙ୍କ ସହିତ ସଂପୃକ୍ତ ଯୁବକ-
ସମାଜରୁ ଜାଣିଥିଲି । ଅନେକଙ୍କ ମତରେ ସେ ଥିଲେ ଅହଂ-ମନ୍ୟ ବ୍ୟକ୍ତି । ଜଣେ
ଯୁବକ କାଳେ ତାଙ୍କ ସହିତ ମୋର ସାକ୍ଷାତ କଥା ଉଠାଇ ଥିଲେ । ଉତ୍ତରରେ
ସେ କୁଆଡ଼େ କହିଲେ—"କମଳା ଦାସ କିମ୍ବା କୌଣସି ଲେଖକଙ୍କୁ ସାକ୍ଷାତ
କରିବା ମୋର କି ପ୍ରୟୋଜନ ?" ସେଇ କାହାଣୀ ଶୁଣିବା ପରଠାରୁ
ମି ମେନନ୍‌ଙ୍କପ୍ରତି ମୋର ମନୋଭାବ ଥିଲା ଭିନ୍ନ ଧରଣର । କିନ୍ତୁ ଯେଉଁଦିନ ସେ
ମୋତେ ଦେଖିବାପାଇଁ ହଠାତ୍ ଆସି ହସ୍‌ପିଟାଲ୍‌ରେ ପହଞ୍ଚି ଗଲେ, ମୋର ଯତ୍ନ
ନେବାରେ ଅବହେଳା ପ୍ରଦର୍ଶନ କରିଥିବାରୁ ସେବିକାମାନଙ୍କୁ ଗାଳି ଦେଲେ—,
ଏବଂ ତଉଲିଆରେ ନିଜେ ମୋ ଓଦା କପାଳ ପୋଛିଦେଲେ—ମୁଁ ଆଶ୍ଚର୍ଯ୍ୟ
ହୋଇଗଲି । ତାଙ୍କ ହୃଦୟରେ ଯେ ଦୟାଭରି ରହିଛି, ତାହା ଜାଣିବାର ସୁବିଧା
ସେ କାହାକୁ ଦେଇ ନ ଥିଲେ ।

ଅସୁସ୍ଥତା ବଶତଃ ମୁଁ ସମ୍ପୂର୍ଣ୍ଣ ଭିନ୍ନ ଚେହେରାର ଜୀବ ପାଲଟି ଯାଇଥିଲି ।
ଚମ କଳା ପଡ଼ିଯାଇଥିଲା । ସ୍ୱର କ୍ଷୀଣ ହୋଇ ଯାଇଥିଲା । ଅଙ୍ଗ କୃଶ ହୋଇ-
ଯାଇଥିଲା । ଯେଉଁଦିନ ମୁଁ ହସ୍‌ପିଟାଲ୍ ଛାଡ଼ିଲି, ସେଦିନ ସାର୍ଜିଙ୍କର ଭଉଣୀ
ମୋତେ କମ୍ବଳରେ ଗୁଡ଼େଇ ଟେକିନେଇ ପାହାଚ ଅତିକ୍ରମ ପୂର୍ବକ ଆମ ଘରର
ସଫା ବିଛଣା ଉପରେ ଶୋଇ ଦେଇ ଯାଇଥିଲେ । ମୋର ବିକଳାଙ୍ଗ ହାଡ଼-ମାଳ
ରୂପ ଦେଖି ସାନପୁଅ କାନ୍ଦି ଉଠିଥିଲା । ଅନେକ ଦିନଧରି ମୋର ଦ୍ୱିତୀୟ ପୁତ୍ର
ମୋ ଗୋଡ଼ରେ ସୋରିଷତେଲ ଘଷିଲା, ଚର୍ମର ପୂର୍ବାବସ୍ଥା ଫେରାଇ ଆଣିବା
ପାଇଁ ।

ଅତୀତର ଭସ୍ମ ମଧ୍ୟରୁ ମୁଁ ସତେ ଯେମିତ ଫୋଏନିକ୍ସ ପରି ଉଠିଲି ପୁଣି ଥରେ । କିନ୍ତୁ ଈଶ୍ୱରଙ୍କ ନିକଟରେ କରିଥିବା ଶପଥ ମୁଁ ଭୁଲିଗଲି । ଜୀବନର ମଦ୍ୟ ପୁଣି ମୋତେ ଉନ୍ମାଦ କରି ରଖିଲା । ଅସୁସ୍ଥି ସମୟରେ ଯେଉଁ ଓଠ ଅବିଶ୍ରାମ ଭାବରେ କେବଳ 'କୃଷ୍ଣ' 'କୃଷ୍ଣ' ହିଁ ଡାକି ଚାଲିଥିଲେ, ସୁସ୍ଥ ହେବା ପରେ ସେଇ ଓଠରେ ମୁଁ ଲଗାଇଲି ବାଇଗଣି ରଙ୍ଗର ଲିପ୍‌ଷ୍ଟିକ୍ । ଜହ୍ନ ରାତି ଆସିବା ମାତ୍ରେ ମୁଁ ପୁଣି କାମନା କଲି ମାନବିକ ରତି···।

ତା'ପରେ ଆମେ ରହିଲୁ ମାନନଗରର ଗୋଟିଏ ଘରେ । କୁଲର୍ ଓ ବେଣାଚେରର ପର୍ଦ୍ଦା ଯୋଗୁ ସେଠି ଗ୍ରୀଷ୍ମ ଋତୁରେ ବି କମ୍ବଳ ଦରକାର ହେଉଥିଲା । ସାଉଥ୍ ଏକ୍‌ସଟେନ୍‌ସନ୍‌ର ଘର ଛାଡ଼ି ଆମେ ଦୁଇଜଣ ବିଶିଷ୍ଟ ବନ୍ଧୁ ପ୍ରଫେସର ଥାପାର୍ ଓ ସୁକୃତ ଲୁଥ୍ରାଙ୍କୁ ହରାଇଲୁ । ଆମ ପ୍ରତି ସେମାନଙ୍କର ଅସୀମ ସ୍ନେହ ଥିଲା । ପ୍ରଫେସର୍ ଆମ ଘରକୁ ସନ୍ଧ୍ୟାରେ ଆସୁଥିଲେ, ଓ ବାରଣ୍ଡାରେ ଲଙ୍ଗଳା ସାନ ପୁଅକୁ ଗୋଡରେ ଜାକି ବସୁଥିଲେ । ସାମରିକ ବିଷୟବସ୍ତୁ ସମ୍ବନ୍ଧରେ ଚର୍ଚ୍ଚା କରିବାକୁ ସେ ଭଲ ପାଉଥିଲେ । ଶ୍ରୀମତୀ ଲୁଥ୍ରା ଥିଲେ ଆମର ଗୃହ-ମାଲିକାଣୀ । ସେ ଥିଲେ ମୋର ଧରମ ଭଉଣୀ । ସାନପିଲାଟା କାନ୍ଦିଲେ ସେ ବୋଧ କରିଦେଉଥିଲେ ।

ମାନ ନଗରରେ ମୋର ଜୀବନ ଥିଲା ଆନନ୍ଦମୟ । ଆମ ଘରର ସାମ୍ନାରେ ଥିଲା ଗାଢ଼ ସବୁଜ ରଙ୍ଗର ଲନ୍ । ତାର ଚାରିପାଖରେ ଥିଲା ହେଜ୍‌ର ପୁଷ୍ପିତ ବାଡ଼ । ରାସ୍ତା ଅତିକ୍ରମ କଲେ 'ଲୋଦି ଉଦ୍ୟାନ' । ଇବ୍ରାହିମ୍ ଲୋଦି ଓ ସିକନ୍ଦର ଲୋଦିଙ୍କ ସ୍ତମ୍ଭ ପରେ ପରେ ଅଛି ଏକ ସରୋବର । ସରୋବରର ଅର୍ଦ୍ଧେକ ଅଂଶ କଇଁଫୁଲରେ ଭୁରି ରହିଥାଏ । ଆମେ ସାନ ପିଲାଟିକୁ ଚଲେଇ ଶିଖାଇବା ପାଇଁ ଲୋଦି ଉଦ୍ୟାନକୁ ଯାଉଥିଲୁ । ଭୂମିରେ ଖସି ପଡ଼ିଥିବା ଲାଲ୍ ବେରିଗୁଡ଼ିକୁ ମୋର ଦ୍ୱିତୀୟ ପୁତ୍ର ସାଉଁଟି ଧରୁଥିଲା ।

ସେ ସମୟରେ ମୁଁ ଥିଲି ଅନେକଙ୍କର ବାଞ୍ଛିତ । ପୁରୁଷଠାରୁ ନାରୀ ଯେଉଁ ପ୍ରେମ ପାଏ ତାହା ମୁଁ ପାଉଥିଲି । କିନ୍ତୁ, ଏକ ପରିବର୍ତ୍ତନ ପାଇଁ ମୋ ଭିତରେ ବ୍ୟାକୁଳତା ଜାଗି ଉଠିଥିଲା । ଚାହୁଁଥିଲି ଏକ ନୂତନ ଜୀବନ । ଖୋଜୁଥିଲି ଜଣେ ଆଦର୍ଶ ପ୍ରେମିକ । ଚାହୁଁଥିଲି ତାଙ୍କୁ ହିଁ, ଯେ ମଥୁରାକୁ ଗଲେ ଓ ଫେରିଲେ ନାହିଁ ରାଧାଙ୍କ ନିକଟକୁ । ସମ୍ଭବତଃ ପୁରୁଷ ହୃଦୟରେ ନିଭୃତ ଥିବା ନିର୍ଦ୍ଦୟତା ହିଁ ଥିଲା ମୋର କାମ୍ୟ । ନହେଲେ, ସ୍ୱାମୀଙ୍କ ବାହୁ ବନ୍ଧନରେ ମୁଁ ଶାନ୍ତିପାଇ ନ ଥାନ୍ତି କାହିଁକି ? ଅବଚେତନରେ ମୁଁ ଚାହୁଁଥିଲି ମୋ ଅହଂ-ର

ମୁଖ୍ୟ । ମୁଁ ଖୋଜୁଥିଲି ସେଇପରି ଜଣଙ୍କୁ, ଯେ ତାଙ୍କର କଠିନ କୁଠାରରେ ହାଣି ଦୁଇଖଣ୍ଡ କରିଦେଇ ପାରିବେ ମୋର ମସ୍ତିଷ୍କକୁ । ମୁଁ କାହିଁକି ଏତେ ଅବାଧ, ଏତେ ଅନମନୀୟ ଥିଲି ତାହା ମୋତେ ଭଲପାଉଥିବା ଲୋକେ ବୁଝିପାରୁ ନ ଥିଲେ । ଏକଦା ମୁଁ ନଖ କାମୁଡ଼ି କାମୁଡ଼ି ପଦଚାରଣା କରୁଥିବା ଦେଖି ଜଣେ ବନ୍ଧୁ ମନ୍ତବ୍ୟ କରିଥିଲେ—"ତୁମେ ଜଣେ ପିଞ୍ଜରାବଦ୍ଧ ମାଂସାଶୀ ପଶୁ । ନିଅ, କିଛି ଜିନ୍ ପିଇଦିଅ, ତୁମର ଉତ୍ତେଜିତ ସ୍ନାୟୁ ଏଥିରେ ଶାନ୍ତ ହୋଇଯିବ ।"

ସ୍ୱାମୀ କହୁଥିଲେ—"ତୁମେ ସବୁବେଳେ ଅସନ୍ତୁଷ୍ଟ ।"

ମୋର ଇଚ୍ଛାଲାଗି ବନ୍ଧୁ କହୁଥିଲେ—"କେବଳ ମୁଁ ହିଁ ତୁମକୁ ବୁଝିପାରିବି । ଆସ, ଚାଲି ଆସ ମୋ ସାଙ୍ଗରେ..."

## ଏକଚାଳିଶି

### ଫେରି ଆସିଲି ଆପଣାର ଗହ୍ୱରକୁ...

ସେମାନେ ହିଁ ନାରୀଟିକୁ ଏପରି କଲେ
ଯେଉଁ ପୁରୁଷମାନେ ଥିଲେ ତାର ଚାହିଁଲା
ଯେଉଁ ପୁରୁଷଟିକୁ ସେ ଭଲପାଉଥିଲା ଓ
ଯେଉଁ ସ୍ୱାର୍ଥପର ତାକୁ ଭଲପାଇ ନଥିଲା ଠିକ୍ ଭାବେ

ଏବଂ ତାର ଭୀରୁ ସ୍ୱାମୀ, ଭଲ ପାଇ ଜାଣି ନଥିଲା
ଖାଲି ଲକ୍ଷ୍ୟ କରୁଥିଲା ଘାଘାଡକ ଭାବରେ ।

ଯେଉଁ ବିକୃତ ପୁରୁଷମାନଙ୍କ ଆଡ଼କୁ
ସେ ମୁହଁ ବୁଲାଇଲା, ପାଖକୁ ଲାଗିଗଲା
ସବୁକିଛି ଭୁଲିଯିବା ପାଇଁ...
ସେମାନେ ସମସ୍ତେ କହିଲେ...ମୁଁ ଭଲ ପାଏନା,
ମୁଁ ଭଲପାଇ ପାରେନା, ଭଲପାଇବା
ନୁହେଁ ମୋର ପ୍ରକୃତି......
ମୁଁ ତୁମକୁ ଦୟାକରି ପାରେ କେବଳ ।

ସେମାନେ ହିଁ ତା'ର ମନକୁ ଜାଣିକରି
ଖସାଇ ଦେଇଥିଲେ ଏକ ଅଶ୍ରୁର ଶଯ୍ୟାକୁ
ଏବଂ ସେ ଶୋଇ ଶୋଇ କାନ୍ଦିଲା ସେଠାରେ
କାରଣ ହୃଦୟର ଆଉ ନ ଥିଲା କିଛି ଶକ୍ତି ।
ସେ କହିଲା—ଅଶ୍ରୁର କାନ୍ଥ ନିର୍ମାଣ କରି
ମୁଁ ରହିବି ଭିତରେ ।

ତାର ସ୍ୱାମୀ ତାକୁ ଭିତରେ ରଖିଲେ,
ପ୍ରତ୍ୟେକ ସକାଳରେ, ବନ୍ଧ ଭର୍ତ୍ତି ଘର ଭିତରେ
ରୁଦ୍ଧ କଲେ ତାକୁ , କେବଳ ଦ୍ୱାର ଦେଶରେ
ଝୁଲୁଥିଲା ଚେନାଏ ସୂର୍ଯ୍ୟ କିରଣ
ହଳଦିଆ ବଲେଇପରି, ତାର ସାଥୀ ରୂପେ ।

କିନ୍ତୁ ଖୁବ୍ ଶୀଘ୍ର ଶୀତ ଆସିଗଲା ଓ ଦିନେ ତାକୁ ରୁଦ୍ଧ
କଲାବେଳେ ସେ ଅନୁଭବ କଲେ ଯେ
ସେଇ ବଲେଇପରି ସୂର୍ଯ୍ୟ-କିରଣ କେବଳ ରେଖାଟିଏ,
ସେ ଯେତେବେଳେ ତାକୁ ମୁକ୍ତ କରିବାକୁ ଆସିଲେ
ଦେଖିଲେ ସେ ଶୀତଳ, ଏକ ଅର୍ଦ୍ଧମୃତ ନାରୀ
ଓ କୌଣସି ପୁରୁଷର ସଙ୍ଗ ପାଇଁ ଅନୁପଯୁକ୍ତ ।

ଦିଲ୍ଲୀରେ ଶୀତ ଋତୁ···

ବାତାବରଣ ବଡ଼ ମନୋମୁଗ୍ଧକର ଓ ଉତ୍ତେଜନାମୟ । ଏ ସମୟରେ ଟୋଷ୍ଟ୍ ଉପରେ ରୂପେଲି ଲହୁଣୀ ବୋଳାହେବା ପରି ନଗରୀ ଉପରେ ବିଛେଇ ହୋଇଯାଏ କୋମଳ ସୂର୍ଯ୍ୟ କିରଣ ।

ଗୃହଆଡ଼େ ଶୁଭ ଦମ୍ୟାଳୁ ଖଇର ବାସ୍ନା । ପିଲାମାନେ ଘାସର ଲନ୍‌ଉପରେ ଗୃଲିବା କମ୍ବା ଦେଉ ସାଉଁଟିବା ନାହିଁ । ଶୀତର ପୀଡ଼ାରେ ତାଙ୍କର ଲାଲ୍ ମୁହଁ ସବୁ ଫାଟିଯାଏ । ଯୁବକଙ୍କର ଭିଡ଼ ଜମେ କଫି ହାଉସ୍‌ରେ, ଯେଉଁଠି ସେମାନେ ତାଙ୍କର ତତ୍‌କାଳୀନ ପ୍ରେମିକାମାନଙ୍କୁ ଅପେକ୍ଷା କରନ୍ତି । ଏପରିକି ଇମ୍ପେରିଆଲ୍ ହୋଟେଲ୍ ସମ୍ମୁଖରେ ଥିବା ଉଦ୍‌ବଗାସ୍ତ ବ୍ରୋଞ୍ଜ୍ ମୂର୍ତ୍ତିରୁ ବ୍ରୋଞ୍ଜ୍‌ର ଗନ୍ଧ ବଦଳରେ ଭାସିଆସେ ଖଇର ବାସ୍ନା ।

ମୁଁ ସାନ ପୁଅକୁ ଚଲେଇ ଚଲେଇ ଖାଁ ମାର୍କେଟ ଯାଏଁ ନେଇ ଯାଉଥିଲି । ଠିକ୍ ଚଲା ବାଟରେ ନୁହେଁ, ମାନ-ନଗରର ଘର ଗୁଡ଼ିକ ଭିତରେ

ଥିବା ଘାସ ରାସ୍ତା ଦେଇ ମୁଁ ଅତିକ୍ରମ କରିଯାଉଥିଲି । ସେଠାରେ ପ୍ରଥମେ ମୁଁ 'ଫକ୍କାର ଗ୍ରିନ୍ସ୍'ରେ ବହି ଦେଖୁଥିଲି, ବହି ଗୁଡ଼ିକ ଥିଲା ମନଲୋଭା । ତରୁଣ ବିକ୍ରେତା ଜଣକ ବି ବେଶ୍ ଭଦ୍ର ଓ ବନ୍ଧୁଭାବାପନ୍ନ ଥିଲେ । ତାଙ୍କର ସ୍ତ୍ରୀ ମଧ୍ୟ ଅତ୍ୟନ୍ତ ରୂପବତୀ ।

ମୋତେ ଭଲ ଲାଗୁଥିବା ବହିଗୁଡ଼ିକ କିଣିବା ପାଇଁ ଯେ ମୋ ନିକଟରେ ଖୁବ୍ କମ୍ ପଇସା ଥାଏ, ଏହା ସେ ଜାଣିଥିଲେ । କିନ୍ତୁ ତାଙ୍କର ଧୈର୍ଯ୍ୟ ଥିଲା ସ୍ମରଣୀୟ । ଏକଦା ମୋ ବାପା ଦିଲ୍ଲୀ ଆସିଥିଲେ । ତାଙ୍କର ଗୋଟିଏ ବାଡ଼ି ଦରକାର ଥିଲା । ଖାଁ-ମାର୍କେଟ୍‌ରେ ଖୋଜିଲୁ । ଶେଷରେ ଫକ୍କାର ଗ୍ରିନ୍ ତାଙ୍କ ଘରୁ ବାପାଙ୍କ ପାଇଁ ବାଡ଼ିଟିଏ ଆଣି ଦେଇଥିଲେ । ସେଇଟି ଥିଲା ତାଙ୍କ ବାପାଙ୍କର ବାଡ଼ି । ଦିଲ୍ଲୀର ସେଇ ଘଟଣାଟି ମୋର ଜୀବନ ସାରା ସ୍ମରଣୀୟ ।

ମୋ ପିଲାମାନେ ବହୁତ ଆଇସ୍-କ୍ରିମ୍ ଖାଉଥିଲେ, ପ୍ରାୟ ପ୍ରତିଦିନ । ଶିଶୁ ପୁଅଟି ସେତେବେଳେ ନେଭି-ନୀଳ ରଙ୍ଗର କାର୍ଡିଗେନ୍‌ଟିଏ ପିନ୍ଧୁଥିଲା । ତାର ବାଇଗଣି ଦେହକୁ ତାହା ସାଜୁଥିଲା ଅପୂର୍ବ । ମୁଁ ଭର୍ଜିନ୍ ମେରିଙ୍କ ସଦୃଶ ତାର ଟିକି ହାତଟି ଧରି ଗ୍ଲୁଲିଲା ବେଳେ ଗର୍ବ ଅନୁଭବ କରୁଥିଲି ।

ସେତେବେଳେ ମୋ ବଡ଼ ପୁଅକୁ ପନ୍ଦର ବର୍ଷ ହେଲାଣି । ଦିନେ ଘାସ ଉପରେ ବିଶ୍ରାମ କରୁଥିଲାବେଳେ ସେ ମୋତେ କହିଲା—"ମୁଁ କୌଣସି ବାଳିକା ସହିତ ଯିବାକୁ ଚାହେଁ···" ତା' ଓ ମୋ ଭିତରେ ଗୋପନୀୟତା- କିଛି ନଥିଲା । ସେ କହିଲା, ତାର ଏକ ସୁନ୍ଦରୀ ବାଳିକା ଆବଶ୍ୟକ । ଭଲ ହେବ ଯଦି ଝିଅଟିର କେଶ ସ୍ୱର୍ଣ୍ଣାଭ ଓ ଆଖି ନୀଳ ବର୍ଣ୍ଣର ହୋଇଥାଏ । ନାରୀର ସୌନ୍ଦର୍ଯ୍ୟ ସମ୍ପର୍କରେ ତାର ଧାରଣା ସେ ପିଲାଟି ଦିନରୁ ପଢ଼ି ଆସୁଥିବା ବ୍ୟଙ୍ଗ-ଚିତ୍ର ଓ ରଚନାବଳୀ ଉପରେ ଥିଲା ଆଧାରିତ । ଏହା ମୋ ପକ୍ଷରେ ଥିଲା ଏକ କଷ୍ଟକର ସ୍ୱୀକୃତି, ଏକ ଦୁଃସାଧ୍ୟ ପ୍ରାପ୍ତି । କିନ୍ତୁ ଯେପରିକି ଈଶ୍ୱର ମୋର ନିବେଦନ ଶୁଣିପାରିଲେ । ପରଦିନ ସକାଳେ ଆମ ଘରର ଦୁଆର ମୁହଁରେ ଜଣେ ପାଉଁଶିଆ କେଶୀ ବାଳିକା ବିରାଜମାନ ହେବା ଦେଖିପାରିଲି ।

ସେ ଆସିଥିଲା ଆମ ଘରକୁ ପୂର୍ବରୁ ଯାତାୟାତ କରୁଥିବା ଆଉ ଗୋଟିଏ ଝିଅ ସହିତ । ସେ ନବାଗତାର ପରିଚୟ କରାଇଦେଲା—"ଇଏ ଆନ୍ନା, ପୂର୍ବ ଜର୍ମାନୀରୁ ଆସିଛି ।" ସେଇ ଦିନଠାରୁ ସେ ହେଲା ମୋ ପୁଅର ବିଶିଷ୍ଟ ବାନ୍ଧବୀ । ସେମାନେ ଆମ ଘରର ଅଳିନ୍ଦରେ ବସି ଫରାସୀ ସାହିତ୍ୟ ଓ ମାର୍କସ୍‌ବାଦ ସମ୍ପର୍କରେ ଆଲୋଚନା କଲେ । ମୋ ଘର ଭିତରେ ପଦାର୍ପଣ କରିଥିବା ଆନ୍ନା ଥିଲା ପ୍ରକୃତରେ ଜଣେ ଉନ୍ନତ ମେଧା-ସମ୍ପନ୍ନ ବାଳିକା ।

ମୁନ୍ନୁ ପକ୍ଷରେ ତାହାହିଁ ଥିଲା କୈଶୋରର ପ୍ରଥମ ପ୍ରେମ-ସମ୍ପର୍କ। ଝିଅଟି ଯେତେବେଳେ ତା' କକା-ଖୁଡ଼ୀଙ୍କ ସହିତ କଲିକତା ପରିଦର୍ଶନରେ ସପ୍ତାହକ ପାଇଁ ଗଲା, ମୁନ୍ନୁ ତାଙ୍କ ସହିତ ଯିବା ପାଇଁ ଆମକୁ କହିଲା । କିନ୍ତୁ ସ୍ୱାମୀ କହିଲେ —ଏପରି ଏକ ପ୍ରେମକୁ ଉତ୍ସାହିତ କରିବା ପାଇଁ ଖର୍ଚ୍ଚାନ୍ତ ହେବା ସମ୍ଭବ ନୁହେଁ । ନିରୁତ୍ସାହିତ ହେବାରୁ ମୁନ୍ନୁ ଏତେକାଳ ଧରି ସଂଗ୍ରହ କରିଥିବା ତାର ସମସ୍ତ 'କମିକ୍'-ପତ୍ର ଗୁଡ଼ିକ ନେଇ ବିକିଦେଲା ଦୋକାନରେ । ସେଥିରେ ତୃତୀୟ ଶ୍ରେଣୀରେ କଲିକତା ଯିବାକୁ ତା' ପାଖରେ ଯଥେଷ୍ଟ ପଇସା ହୋଇଗଲା । ବାଟରେ ତାକୁ ଭାରି ଶୀତ ହେଲା । ସେ ଥରିଗଲା । ଶେଷରେ ଜଣେ ଶ୍ରମିକ ଦୟାପରବଶ ହୋଇ ତାକୁ ଢାଙ୍କିବା ପାଇଁ ବଡ଼ ଖଣ୍ଡିଏ ଦେଲା । ଫେରିବା ପରେ ସେ ହସି ହସି ତାର ସମସ୍ତ ଅସୁବିଧା କଥା ମୋ ଆଗରେ ବ୍ୟକ୍ତ କଲା । ମୋ ଛାତି ଗର୍ବରେ ପୂରି ଉଠିଲା ତା' କଥା ଶୁଣି ।

ସ୍ୱାମୀ କହିଲେ—'ତୁମେ ପୁଅର ଜୀବନ ସବୁଦିନ ପାଇଁ ନଷ୍ଟ କରିଦେଲ ।''

କିନ୍ତୁ—ଆନ୍ନା ସଦୃଶ ଜଣେ ଭଦ୍ର ଓ ସୁଧୀ ବାଳିକା ସହିତ ସେହି ପ୍ରେମ ମୁନ୍ନୁକୁ ଜଣେ ପୂର୍ଣ୍ଣାଙ୍ଗ ବୌଦ୍ଧିକ-ପୁରୁଷରେ ରୂପାନ୍ତରିତ କରିଥିଲା । ସେ ରାତିର ବିଳମ୍ବ ପ୍ରହର ଯାଏଁ ପଢ଼ିଲା । ଲେଖିବାକୁ ଲଗିଲା ରାଜନୈତିକ ଆଭିମୁଖ୍ୟ ଥିବା ପ୍ରବନ୍ଧ ସବୁ । କେତେକ ପତ୍ରିକାରେ ସେସବୁ ପ୍ରକାଶ ପାଇଲା ମଧ୍ୟ । ସ୍ୱାମୀଙ୍କର ବମ୍ବେ ବଦଳି ହୋଇଗଲାରୁ ମୁନ୍ନୁର ହୃଦୟ ଭାଙ୍ଗିଗଲା । ଅଳ୍ପ କେଇମାସ ପରେ ଆନ୍ନା ମଧ୍ୟ ଫେରିଗଲା ଜର୍ମାନି ତାର ପାଠପଢ଼ା ସ୍କୁଲ୍ ରଖିବା ପାଇଁ । ବର୍ଷେ-ଦିବର୍ଷ ଧରି ଦୁହିଙ୍କ ଭିତରେ ପତ୍ର-ବିନିମୟ ଚାଲିଥିଲା । କିନ୍ତୁ ପରେ ପରେ ଉଭୟ ଭିନ୍ନ ଭିନ୍ନ ପଥକୁ ଆଦରି ନେଇଥିଲେ ନିଜ ନିଜର ଦେଶରେ । କିନ୍ତୁ ଆନ୍ନାର ସଂସର୍ଗ ତାକୁ ଯେଉଁ ପୂର୍ଣ୍ଣାଙ୍ଗତା ଆଣି ଦେଇଥିଲା, ତାହାହିଁ ରହିଗଲା ଅକ୍ଷତ । ତାହାହିଁ ହେଲା ମୁନ୍ନୁ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ସ୍ୱରୂପ ।

ବମ୍ବେରେ ରିଜର୍ଭ୍ ବ୍ୟାଙ୍କ୍‌ର ମାଲିକାନା ଥିବା କାଡ଼େଲ୍ ରୋଡ୍‌ର ଗୋଟିଏ ଫ୍ଲାଟ୍‌ରେ ଆମେ ରହିଲୁ । ତଳ ମହଲାରେ । ଝରକାଗୁଡ଼ିକ ଥିଲା ଭଙ୍ଗା ଭଙ୍ଗା । ସେଇ ବାଟଦେଇ ଥଣ୍ଡାପବନ ସିର୍ ସିର୍ ହୋଇ ପଶି ଆସୁଥିଲା ଘର ଭିତରକୁ । କାରଣ ଆରବ ସାଗର ଥିଲା ଖୁବ୍ ନିକଟରେ । ବେଳାଭୂମି ଓ ଆମଘର ମଧ୍ୟରେ ଥିଲା ଗୋଟିଏ ପ୍ରାଚୀର । ଜୁଆର ପ୍ରଚଣ୍ଡ ହେଲେ ପିଟି ହେଉଥିଲା ତାର କାନ୍ଥରେ । ସମୁଦ୍ର ଜୁଆରର ଧକ୍କା ଖାଇ ଖାଇ ଭାଙ୍ଗା ହୋଇ ଯାଇଥିଲା ବିକଳାଙ୍ଗ ।

ସନ୍ଧ୍ୟା ହେଲେ ସେଠାକୁ କେହି ଆସୁ ନ ଥିଲେ କେବଳ କେତେକ ପ୍ରେମିକ ପ୍ରେମିକାଙ୍କ ବ୍ୟତୀତ; ବିଶେଷତଃ ପ୍ରେମ ପାଇଁ ଅନ୍ୟ କେଉଁଠିକି ଯିବାକୁ ଯାହାଙ୍କ ନିକଟରେ ଯଥେଷ୍ଟ ପଇସା ନ ଥାଏ । ତା’ଛଡ଼ା ସେଠାକୁ ଆସୁଥିଲେ କେତେକ ଲୋଫର୍ ଶ୍ରେଣୀର ଯୁବକ । ଅନ୍ଧାରରେ ଯୋଡ଼ି ଯୋଡ଼ି ବସିଥିବା ପ୍ରେମିକ-ପ୍ରେମିକାଙ୍କଠାରୁ କୌଣସି ମତେ ମନିପର୍ସ କିମ୍ବା ସୁନାହାରଟିଏ ଛଡ଼ାଇ ନେବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ବଡ଼ପୁଅ ସହିତ ମୁଁ ଦିନେ ଦିନେ ସମୁଦ୍ର କୂଳକୁ ବୁଲି ଯାଉଥିଲି । ଦିନେ ଆମକୁ ଏକ ବର୍ଷୀୟ ପରିବାର ପ୍ରେମିକ-ପ୍ରେମିକା ବୋଲି ଭୁଲ୍‌ରେ ମନେ କରିଥିଲେ । କାରଣ, ବଡ଼ପୁଅ ବେଶ୍ ଡେଙ୍ଗା । ତାର ଦୃଷ୍ଟି ମଧ୍ୟ ସେଇପରି ତୀକ୍ଷ୍ଣ ଥିଲା । ଆମ ଦୁହିଙ୍କୁ ଦେଖିଲେ କେହି ହେଲେ ମା-ପୁଅ ବୋଲି କହିବେ ନାହିଁ ।

ରାତିରେ ସାଗରଟା ମୋର ଶିରପ୍ରଶିରା ଭିତରକୁ ପ୍ରବେଶ କରିଯାଉଥିଲା ଓ ମୁଁ ପୀଡ଼ିତ ହୋଇ ପଡ଼ୁଥିଲି । ଖାଇବା ଟେବୁଲ୍ ନିକଟରେ ବସି କବିତା ଲେଖିବା ବ୍ୟତୀତ ମୁଁ ଅନ୍ୟକିଛି କରିପାରୁ ନ ଥିଲି । ପୂରା ସକାଳ ପାଞ୍ଚଟା ପର୍ଯ୍ୟନ୍ତ ବସି ବସି ଲେଖୁଥିଲି, ଦୁଧବାଲା ଆସି ଗେଟ୍ ଖୋଲିବା ପର୍ଯ୍ୟନ୍ତ । ଫାଟକ ଖୋଲିବା, ସାଇକେଲ୍ ରହିବାର ଶବ୍ଦ ଶୁଣିପାରୁଥିଲି ସ୍ପଷ୍ଟ । ତା’ ପରେ ମୁଁ ଯାଉଥିଲି ଶୋଇବାକୁ —ସ୍ୱାମୀ ଓ ଶିଶୁ ପୁଅର ନିକଟରେ ।

ପରିଶେଷରେ, ସେଠାରେ ରହିଲେ ମୁଁ ପାଗଳ ହୋଇଯିବି ଭାବି ଚର୍ଚ୍ଚଗେଟ୍ ନିକଟର କୌଣସି ଘରକୁ ବସା ବଦଳେଇ ଦେବାପାଇଁ ସ୍ୱାମୀଙ୍କୁ ଅନୁରୋଧ କଲି । ରିଜର୍ଭ ବ୍ୟାଙ୍କ୍‌ର ସେଠାରେ ମଧ୍ୟ ଘର ଥିଲା । ତାହା ଥିଲା ଏସୋ ପାର୍କ ଓ ସଚିବାଳୟର ମଝିରେ । ଏସୋ ପାର୍କ୍‌ରେ ସନ୍ଧ୍ୟାବେଳେ ଆୟାମାନେ ପିଲମାନଙ୍କୁ ଧରି ଖେଳାଇବାକୁ ଆଣନ୍ତି, ଘାସ ଉପରେ । ସେଠାରେ ଆମେ ବନ୍ଧୁତ୍ୱ ସ୍ଥାପନ କଲୁ ଆମ ପ୍ରତିବେଶୀଙ୍କ ସହିତ । ଦେଶମୁଖ, ମେନନ୍ ଓ ବାକ୍ ପରିବାର ସହିତ ଆମର ବନ୍ଧୁ-ଭାବ ଗଢ଼ିଉଠିଲା ।

ଲେଖକ ଯୁଆଡ଼େ ଯାଏ, ତା’ ପଛେ ପଛେ ଯାଏ ତାର କୁ-ସ୍ୱଭାବ । ଅ-ଲେଖକମାନେ ସାଧାରଣତଃ ଲେଖକମାନଙ୍କୁ ବିଶ୍ୱାସ କରନ୍ତି ନାହିଁ । ଏହାର କାରଣ—ଲେଖକ ଓ ଅଲେଖକଙ୍କ ମଧ୍ୟରେ କିଛିହେଲେ ସାମଞ୍ଜସ୍ୟ ନାହିଁ— ଚେହେରା ବ୍ୟତୀତ । ମନ ଗୋଟାଏ ଅଦୃଶ୍ୟ ଅବୟବ ହୋଇଥିବାରୁ ତାହା ପରିଗଣିତ ହୋଇପାରେନା । ଚଢ଼େଇମାନଙ୍କର ଉଡ଼ିବା-କ୍ଷମତା ମଧ୍ୟ ଏକ

ନିର୍ଦ୍ଦିଷ୍ଟ ସୀମାର ଅନ୍ତର୍ଗତ । ଭୂମି ସଂଲଗ୍ନ ପକ୍ଷୀମାନେ ବେଶୀ ଉଚ୍ଚକୁ ଯାଇପାରନ୍ତି ନାହିଁ କିମ୍ବା ବେଶୀ ସମୟ ଶୂନ୍ୟରେ ରହିପାରନ୍ତି ନାହିଁ । କାହିଁକି ଛଞ୍ଚାଣମାନେ ଏତେ ଉଚ୍ଚରେ ଉଡ଼ନ୍ତି ଓ କାହିଁକି ଏପରି ଚକ୍ରାକାରରେ ଘୂରନ୍ତି ଆକାଶରେ । ଭାବିଲେ ତାଙ୍କୁ ଆଶ୍ଚର୍ଯ୍ୟ ଲାଗେ ।

ଲେଖକର ଅନ୍ତ-ନିର୍ଯ୍ୟାସ ହିଁ ଅଲେଖକକୁ ପରିହାରକରେ । ସେସବୁଧରଣର ଲୋକଙ୍କ ଆଗରେ ଲେଖକ କେବଳ ତା' ପୋଷାକର ଅମନୋଯୋଗିତା ଓ ଆବେଗର ମାତ୍ରାଧିକ୍ୟତା ପ୍ରଦର୍ଶନ କରିଥାଏ । ପରିଶେଷରେ, ଲୋକଙ୍କ ଗୋପନ-ଭାବନା ପଢ଼ିପାରିବାର କ୍ଷମତା ମାନସ-ପେଶୀଗୁଡ଼ିକ ଅର୍ଜନ କରିସାରିବା ପରେ, ଲେଖକ ଏକ ଅଦୃଶ୍ୟ ଜୀବନ-ଧାରାକୁ ଆଶ୍ରା କରି ନିଜ ସ୍ୱତନ୍ତ୍ର ଧାରାକୁ ପରିସ୍ଫୁଟ କରେ ଓ ବଜାୟ ରଖେ । ଲେଖକ ସେଇପରି ଏକ ସ୍ୱପ୍ନାଳୁ ଜୀବ, ଯାହାଙ୍କ କାନ୍ଧରେ ତଥାପି ଲାଗି ରହିଚି ଡେଣାଟିଏ ।

ବାଧ୍ୟହୋଇ ଯେଉଁ ପରିବେଶରେ ମୁଁ ଚଳ-ପ୍ରଚଳ ହେଉଥିଲି, ସେଇସବୁ ଉପାଦାନ ଉପରେ ଯେତେ ବେଶି ବେଶି ଲେଖିଲି, ଦିନକୁ ଦିନ ସେତିକି ବେଶୀ ଏକୁଟିଆ ହୋଇଗଲି ମୁଁ । ମୋର ନିଃସଙ୍ଗତା ମୋ ମୁହଁର ଏକ ଲାଲ୍‌ଚିହ୍ନ ବୋଲି ମୁଁ ଅନୁଭବ କଲି । ଅନ୍ୟମାନଙ୍କ ସହିତ କୌଣସି ବନ୍ଧୁଘରେ ଡିନର୍ ହେଲେ ମୁଁ ନୀରବ ମୂର୍ତ୍ତିଟିଏ ପରି ବସି ରହୁଥିଲି । ମୋ ଗ୍ରୀବପାଖରେ ନିର୍ଦ୍ଦିଷ୍ଟ ଶବ୍ଦର ସଞ୍ଚାଳନ ଅନୁଭବ କରିପାରୁଥିଲି । ସ୍ୱାମୀ ମୋ ଅବସ୍ଥା ଅନୁମାନ କରିପାରିଲେ । ସେ ପ୍ରକାର କୌଣସି ସମାବେଶକୁ ମୋତେ ଆଉ ନେଲେନାହିଁ ସାଙ୍ଗରେ ।

ଯେଉଁ ଗୁମ୍ଫା ମୁଁ ନିଜେ ନିଜପାଇଁ ପ୍ରସ୍ତୁତ କରିଥିଲି, ଫେରି ଆସିଲି ସେଇଠାକୁ । ସେଠାରେ ବସି ଲେଖିଲି ଗଳ୍ପ ଓ କବିତା, ନିରାପଦ ଭାବରେ ଓ ଅଜ୍ଞାତ ଅବସ୍ଥାରେ । ମୋର ଗ୍ରୀବପାଖରେ ଥିଲି ବନ୍ଧୁ, ଖାଲି ବନ୍ଧୁ । କିନ୍ତୁ ଅର୍ଥ-ପୂର୍ଣ୍ଣ ପରାମର୍ଶ ଦେବାପାଇଁ ବନ୍ଧୁ କେହି ନ ଥିଲେ । ଅପାରମ୍ପରିକ ଭାବରେ ଚିନ୍ତା କରିବା ଦ୍ୱାରା ମୁଁ ଯେ କୁଳର ମର୍ଯ୍ୟାଦା ହାନି କରୁଛି, ବଂଶକୁ କଳଙ୍କିତ କରୁଛି, ସେପ୍ରକାର ଅଭିଯୋଗ ବାଢ଼ିବାକୁ କେହି ଆତ୍ମୀୟ ମଧ୍ୟ ନ ଥିଲେ ସେତେବେଳେ ।

# ବସ୍ତ୍ରାଳଙ୍କାର

## ମୋର ଶେଷତମ ପ୍ରେମିକ

ଶରତ ଋତୁର ଏ ଆରମ୍ଭ :
ସେ ତାର ଆପଣା ଶରତରେ ଭାସୁଛ,
ପଡ଼ପର ହୋଇଚ ହଳଦିଆ
ଓ ମୁକ୍ତ... ।

ଶରତକାଳ ସବୁକିଛୁ ହଳଦିଆ ହୋଇଯିବାର ଋତୁ । ଅନିଚ୍ଛା ସତ୍ତ୍ୱେ ଯେତେବେଳେ ମଧ୍ୟମ ବୟସରେ ପହଞ୍ଚିଲି, ଦୁଃଖର ସହିତ ମୁଁ ଅନୁଭବ କଲି ଯେ ବଦଳି ଯାଇଚ ମୋର କାନ୍ତି ଓ ମୋ ଅଙ୍ଗର ରୂପରେଖ । ମୋର ତ୍ୱକ୍‌ରେ ଆସିଯାଇଚ ସ୍ଥୂଳତା ।

ଅଂଗରୁ ସକାଳୁ ଉଠି ଡ୍ରେସର୍ ଉପରୁ ମୋର ଚଷମାଟି ଆଣିଲାବେଳେ ଦର୍ପଣରେ ବିମ୍ବିତ ମୋର ଛବିଆଡ଼େ ଗ୍ରହିଁ ଦେଉଥିଲି । ଠିକ୍ ସେଇବେଳରେ ମୋର ମୁଖ ଥିଲା ସତେଜତମ । ଯେପରିକି ଶାନ୍ତ ରଜନୀ ଓ ତାର ସମସ୍ତ ସ୍ୱପ୍ନ ବାଣ୍ଟି ଦେଇଥିଲେ ତାଙ୍କର ସୁନେଲି କଲ୍ୟାଣ, ଯେପରିକି ମୁହଁକୁ କୋମଳ କରିବା ଅଭିପ୍ରାୟରେ ଖସି ପଡ଼ିଥିଲା କାକର ବିନ୍ଦୁ । କିନ୍ତୁ ପରେ, ପଇଁତିରିଶ ବର୍ଷ ବୟସ ଗଡ଼ିଯିବା ଉତ୍ତାରେ, ରାତିରେ ମୁଁ ସ୍ୱପ୍ନ ଦେଖୁଥିଲି କ୍ୱଚିତ୍ । ଏବଂ ସକାଳେ ଦର୍ପଣରେ ଯେଉଁ ମୁହଁଟି ବିମ୍ବିତ ହେଉଥିଲା ତା' ଥିଲା...ସତେ ଯେମିତି କ୍ଳାନ୍ତ ।

ମୋର ଏପରି କଣ୍ ହେଲା ? ଆଶ୍ଚର୍ଯ୍ୟ । ସମ୍ଭବତଃ କୌଣସି ସୁନ୍ଦର ପୁରୁଷ ସହିତ ଏକ ଜଟିଳ ଅଥଚ ସନ୍ତୋଷଦାୟକ ପ୍ରେମ ବ୍ୟାପାରରେ ଜଡ଼ିତ ହେବାର ସମ୍ଭାବନା ହିଁ ନ ଥିଲା ।

ଏକ ସଫଳ ସମ୍ମୋହନ ପାଇଁ ଯେଉଁ ଉପଯୁକ୍ତ ଶବ୍ଦ, ଯେଉଁ ଉପଯୁକ୍ତ ଗ୍ରହାଣୀ ଓ ଯେଉଁ ଉପଯୁକ୍ତ ଅଙ୍ଗଭଙ୍ଗୀ ଦରକାର ତାହା କଣ୍ ମୁଁ ହରାଇ ବସିଥିଲି ? ସମ୍ମୋହନର ଶକ୍ତି କଣ୍ ଆଉ ମୋର ନ ଥିଲା ?

ତା'ପରେ—

ଗୋଟିଏ ଝଡ଼ର ଶକ୍ତି ନେଇ ସେ ଆସିଲେ ଓ ବିଜୟ କଲେ ମୋତେ । ସେ ହିଁ ମୋର ଶେଷତମ ପ୍ରେମିକ । ସବୁଠାରୁ ଦୁଷ୍ଟ । ରାଜାଙ୍କ ଉପରେ ସେ ରାଜା

ପଶୁଙ୍କ ମଧ୍ୟରେ ସେ ବାଇସନ୍ ବା ବନ୍ୟ ମହିଷ ପରି । ସେ କୃଷ୍ଣ, ଅଥଚ କମନୀୟ । ତାଙ୍କର ଦୁଇ ଆଖିର ମଧ୍ୟସ୍ଥଳରେ ଥିଲା ଗୋଟିଏ ଚନ୍ଦ୍ରାକୃତି ଚିହ୍ନ ।

ଚର୍ଚ୍ଚଗେଟ୍‌ର କୌଣସି ଏକ ଲୁଗା ଦୋକାନ । ସେ ଆସୁଥିଲେ ପଦାକୁ । ମୁଁ ଯାଉଥିଲି ଭିତରକୁ । ତାଙ୍କର ମୁହଁଟି ଥିଲା ମୋର ପରିଚିତ । ମୁଁ ତାଙ୍କ ଆଗ୍ରହରେ ଗୃହିଁ ରହିଲି । ତାଙ୍କର ଅଗଣିତ ପ୍ରେମ ଓ ଯୌନ ବ୍ୟାପାର ସମ୍ବଳିତ ଅନେକ ପ୍ରେମ-କାହାଣୀ ସେତେବେଳେ ଘୂରି ବୁଲୁଥାଏ । ମୋ ଦୃଷ୍ଟିରେ ସେ ଥିଲେ ଜଣେ ଚମତ୍କାର ପଶୁ ।

ମୋର ଗୃହିଣୀ ତାଙ୍କୁ ବିଚଳିତ କଲା । ମୁଁ କାହିଁକି ତାଙ୍କୁ ଏପରି ତୀକ୍ଷ୍ଣ ଦୃଷ୍ଟିରେ ଦେଖୁଚି ଜାଣିବା ପାଇଁ ସେ ବାରମ୍ବାର ପଛକୁ ବୁଲି ଗୃହିଁଲେ । କୌଣସି ସାଧାରଣ ରମଣୀକାର ସାଦୃଶ୍ୟ ମୋଠାରେ ନ ଥିଲା, କାରଣ ମୁଁ ତାହା ନ ଥିଲି । ମୋର ଗୋଟିଏ କ୍ରିୟାଶୀଳ ମସ୍ତିଷ୍କ ଥିବାରୁ ସାଧାରଣତଃ ବହୁ ପୁରୁଷମାନଙ୍କୁ ଆକୃଷ୍ଟ କଲାଭଳି ମୋର ମୁହଁଟି ବର୍ତ୍ତୁଳ, ଉଜ୍ଜ୍ୱଳ କମ୍ବା ଫୁଲପରି କୋମଳପାରି ନ ଥିଲା ।

ମୋର ଭୂଷଣ ଥିଲା ସରଳ, ବର୍ଣ୍ଣ ପୁଣି ଶ୍ୟାମଳ, ଏବଂ କାମୋତ୍ତେଜକ ସାଜସଜ୍ଜା ଓ ପ୍ରସାଧନ ମୋତେ ଭଲ ଲାଗୁ ନଥିଲା । ମୋର ମୁହଁର ଛବି ତାଙ୍କ ମାନସରୁ ନିଶ୍ଚୟ ବିନା ବିଳମ୍ବରେ ଲିଭିଯାଇଥିବ ।

ଅକ୍ଟୋବର ମାସ ।

ଆମର ଜଣେ ବନ୍ଧୁଙ୍କ ଜନ୍ମ-ଦିନ ଉତ୍ସବ । ସେଦିନ ବନ୍ଧୁଙ୍କ ଅନୁରୋଧରେ ଅନ୍ୟାନ୍ୟ ଅନେକ ମହିଳାଙ୍କ ସମାବେଶରେ ମୁଁ ପିଇବାକୁ ବାଧ୍ୟ ହୋଇଥିଲି । ମାତ୍ର ଘଣ୍ଟାକ ଭିତରେ ମୁଁ ହୋଇପଡ଼ିଲି ଅସୁସ୍ଥ । ଘରେ ପହଞ୍ଚିବା ମାତ୍ରେ ହେଲି ଶଯ୍ୟାଶାୟୀ । ଦେହରେ ଉତ୍ତାପର ମାନ ୧୦୫ ଡ଼ିଗ୍ରୀ । ପରଦିନ ସକାଳ ପର୍ଯ୍ୟନ୍ତ ଉତ୍ତାପ ସେଇପରି ଅଧିକା ହୋଇରହିଲା । ଡାକ୍ତର ସମସ୍ୟାରେ ପଡ଼ି ମୋ ଉପରେ ପେନ୍‌ସିଲିନ୍‌ର ପ୍ରୟୋଗ କଲେ, ଯଥାଶୀଘ୍ର । କମ୍ବଳ ଘୋଡ଼ି ହୋଇ ବିଛଣାରେ ଶୋଇ ଶୋଇ ବହି ପଢ଼ିପାରିବାର ଯଥେଷ୍ଟ ଶକ୍ତି ସେତେବେଳେ ମଧ୍ୟ ମୋର ରହିଥିଲା ।

ସେଇ ସମୟରେ ବନ୍ଧୁ ନସିମ୍ ଏଜେକଏଲ୍ ମୋତେ ଦେଖିବାକୁ ଆସିଥିଲେ । ଏଠି ସେଠି ବିଛୁଡ଼ି ହୋଇ ପଡ଼ିଥିବା ପୁସ୍ତକର ସୁଲଭ ସଂସ୍କରଣ ଗୁଡ଼ିକ ପଢ଼ି ପଢ଼ି, ମୋ ସହିତ ଏକ ଗ୍ଲାସ୍ ଫଳରସ ପାନ କରି, ସେ ଦିନୁଟିଏ ବିତାଇ ଦେଲେ ମୋର କକ୍ଷରେ । ଯେ କୌଣସି ଅସୁସ୍ଥ ବ୍ୟକ୍ତିଙ୍କ ପାଇଁ ନସିମ୍ ପ୍ରକୃତରେ ଜଣେ ଉଲ୍ଲେଖଯୋଗ୍ୟ ସାଥୀ । ସେ ଯେମିତି ଭଦ୍ର, ସେମିତି

ଦୟାଶୀଳ । ଶ୍ରୋତାର ସ୍ୱାସ୍ଥ୍ୟ ସବୁକୁ କଷ୍ଟ ଲାଗିଲାଭଳି ଉଚ୍ଚ ସ୍ୱରରେ ସେ ଆଦୌ ଗପନ୍ତି ନାହିଁ ।

ଦୀର୍ଘ ଦଶଦିନ ପୀଡ଼ିତ ରହିବା ପରେ ମୋର ରକ୍ତ ପରୀକ୍ଷା ହେବାରୁ ସେଥିରେ ମାତ୍ରାଧିକ ପରିମାଣରେ—'ଲ୍ୟୁକୋସାଇଟ୍‌ସ୍' ଥିବା ଜଣା ପଡ଼ିଲା । ଡାକ୍ତର ମଧ୍ୟ ଚିନ୍ତିତ ହୋଇ ପଡ଼ିଲେ । ଯେଉଁ ବିଶେଷଜ୍ଞ ଦେଖିବାକୁ ଆସିଲେ ସେ ମଧ୍ୟ ଆଶଙ୍କା ପ୍ରକାଶ କଲେ । 'ଲ୍ୟୁକୋମିଆ' ହେବା ସନ୍ଦେହ କରାଗଲା । ଠିକ୍ ମଧ୍ୟାହ୍ନ ଭୋଜନର ଅବ୍ୟବହିତ ପୂର୍ବରୁ ମୋତେ ନିଆଗଲା ବମ୍ବେ ହସ୍‌ପିଟାଲକୁ । ପିଲାମାନେ ଅଲଗା କୋଠରୀରେ ଖେଳୁଥିଲେ । ସେମାନଙ୍କଠାରୁ ମୁଁ ବିଦାୟ ଆଣିପାରି ନ ଥିଲି । କାର ଭିତରୁ ମୁଁ ରାସ୍ତା ଓ ରାସ୍ତାଧାରର ଚଳନ୍ତି-ହେଲା ବସ୍ତୁସବୁକୁ ନଜର କରୁଥିଲି, ଯେପରିକି ମୃତ୍ୟୁ ପରେ ମୁଁ ପ୍ରେତ ରୂପରେ ଠିକ୍ ରାସ୍ତାରେ ପିଲାମାନଙ୍କ ପାଖକୁ ଫେରିପାରିବି । ମୁଁ ଯେ ମରିବାକୁ ଯାଉଛି ସେପରି ବିଶ୍ୱାସ ମୋ ଠାରେ ଘନୀଭୂତ ହୋଇ ଯାଇଥିଲା ।

ହସ୍‌ପିଟାଲ୍‌ରେ ଗୋଟିଏ ଶୀତ-ତାପ ନିୟନ୍ତ୍ରିତ କୋଠରୀରେ ମୁଁ ରହିଲି । ତା' କାନ୍ଥର ରଙ୍ଗ ସବୁଜ, ପର୍ଦ୍ଦା ବି ସବୁଜ । ମୋତେ ତାହା ଗୋଟିଏ ଜଳ-ତଳର କକ୍ଷପରି ଲାଗିଲା । ଶୁଭ୍ର ରଙ୍ଗର ଡ୍ରେସର୍ ଟିଏ ଓ ଗୋଟିଏ ଅଧିକା ଶଯ୍ୟା ସେଠାରେ ଥିଲା । ତହିଁରେ ରୋଗୀର ଆତ୍ମୀୟ ଚାହିଁଲେ ଶୋଇପାରିବେ । ମୁଁ ଚାଦର ତାଙ୍କି ହୋଇ ଶୋଇ ପଡ଼ିଲି । ଡାକ୍ତର ଗୋୟାଲ୍ ଥିଲେ ମୋର ଚିକିତ୍ସକ । ପୋଷାକ ପରି ପ୍ରତି ସେ କମ୍ ସଚେତନ ନଥିଲେ । ମୋତେ ଆରୋଗ୍ୟ କରିବାର ପ୍ରତିଶ୍ରୁତି ସେ ଦେଲେ ।

ଲାଗିଥିବା ଅନ୍ୟ କୋଠରୀଟିରେ ପୀଡ଼ିତ ଥିଲା ଶିଶୁଟିଏ । ସେ ଘାତର ପକ୍ଷୀପରି ବିଚିତ୍ର ଶବ୍ଦ କରୁଥିଲା । ସେ ଶବ୍ଦ ଆଦୌ ମୁଁ ଭୁଲିପାରିବି ନାହିଁ । ପିଲାଟି ପାଇଁ ଜଣେ ଘରୋଇ ନର୍ସ ମଧ୍ୟ ନିଯୁକ୍ତ ହୋଇଥିଲା ବାପା-ମା'ଙ୍କ ତରଫରୁ । ନର୍ସ୍‌ଟି ବେଳେ ବେଳେ ପଶି ଆସୁଥିଲା ମୋର କକ୍ଷକୁ । ମୋତେ ଦେଖି ସମ୍ବେଦନାରେ ସେ ମୁଣ୍ଡ ଝୁଙ୍ଗାରୁ ଥିଲା । ଦୁଃଖରେ ପ୍ରକାଶ କରୁଥିଲା— "ଲ୍ୟୁକୋମିଆ କେଉଁଠି ଭଲ ହେଲାଣି···।" ସେ ନିଜ ଇଚ୍ଛାରେ ମୋତେ ତାର କେଇଖଣ୍ଡ—'ଟ୍ରୁ କନ୍‌ଫେସନ୍‌ସ୍'—ପତ୍ରିକା ପଢ଼ିବାକୁ ଦେଇଥିଲା । ବହୁତ ବହୁତ ଛବି ରହିଥିଲା ସେଥିରେ ।

ମୁଁ ତାକୁ ପଚାରିଲି—'ପିଲାଟିର ବାପ-ମା କାହିଁ ତ ଆସୁନାହାନ୍ତି । ତାଙ୍କୁ ପାଇଲେ ପିଲାଟା ଟିକିଏ ଖୁସି ହୁଅନ୍ତା ତ ।'

ସେ କହିଲା—"ସେମାନେ ସବୁ ଧନୀ ଲୋକ । ହସ୍‌ପିଟାଲ୍‌ରେ ତାଙ୍କୁ ଛିନ୍ଦ ହେବନି ।"

ସେଦିନ ରାତିସାରା ପିଲାଟିର କାନ୍ଦଣା ମୁଁ ଶୁଣୁଥିଲି । କି କରୁଣ ! ପାହାନ୍ତା ବେଳକୁ ମୋତେ ଟିକିଏ ନିଦ ଲାଗି ଯାଇଥିଲା । ନିଦ ଭାଙ୍ଗିଲା ବେଳକୁ ଆଉ କାନ୍ଦଣାର ଧ୍ୱନି ଶୁଣାଯାଉ ନ ଥିଲା । ସେଇ କୋଠରୀରୁ ଭାସି ଆସୁଥିଲା ଘରସଫା ହେବାର ଶବ୍ଦ···। ସେଇ ଘରୋଇ ନର୍ସ୍‌ଟି ମୋ.କୋଠରୀରୁ ପତ୍ରିକା-ଗୁଡ଼ିକୁ ଫେରାଇ ନେବାକୁ ଆସି କହିଲେ—"ପିଲାଟି ଭୋର୍ ରାତିଟାରେ ଚାଲିଗଲା । ମୋର କର୍ତ୍ତବ୍ୟ ବି ଶେଷ । ଏଥର ମୁଁ ଯିବି ।" ପ୍ରତ୍ୟହ ସକାଳ ବେଳା ଗବେଷଣାଗାରର ଛାତ୍ରମାନେ ମୋତେ ଆସି ଛ'ଟା ବେଳେ ରକ୍ତ ନେବାପାଇଁ ନିଦରୁ ଉଠାଉଥିଲେ । ତାଙ୍କର ଟ୍ରେ ଓ ଟ୍ରଲି ଠେଲି ଠେଲି, ସବୁଜିକ ଆଲୁଅ ଜାଳି ସେମାନେ ପ୍ରାୟ ଚିତ୍କାର ହିଁ କରୁଥିଲେ—'ଖୁନ୍ : ଖୁନ୍' (ରକ୍ତ-ରକ୍ତ) । ରକ୍ତ ଦେଇ ସାରିବା ପରେ ସେମାନେ ମେହେନ୍ତରକୁ ପଠାଉଥିଲେ ମଳ-ମୂତ୍ରାଦି ନେବା ପାଇଁ । ଅନେକ ସମୟରେ ଚକ-ଲଗା ଖଟିଆରେ ଶୁଆଇ ମୋତେ ଏକ୍ସ-ରେ ପାଇଁ ନିଆଯାଉଥିଲା । ଜ୍ୱର ହିଁ ରହିଲା । ମୋ ଭାଇ ଓ ଭଉଣୀ ଉଭୟ ଥିଲେ ଉଲ୍ଲେଖଯୋଗ୍ୟମାନର ଡାକ୍ତର । ସେମାନଙ୍କ ବମ୍ବେ ଡାକରା ହେଲା । ଯକୃତ୍, ଫୁସ୍‌ଫୁସ୍ ଓ ହୃତ୍‌ପିଣ୍ଡ—ସବୁଠି କିଛି ନା କିଛି ଦୁର୍ବଳତା ଥିଲା ।

ଚିକିତ୍ସା ବିଜ୍ଞାନ ସମ୍ବନ୍ଧରେ ଖଣ୍ଡିଏ ହେଲେ ବି ବହି ପଢ଼ିନଥିବା ମୋ ସ୍ୱାମୀ ତଥାପି କହୁଥିଲେ ମୁଁ ଭଲ ହୋଇଯିବି । ମୋର ରୁମ୍ ନମ୍ବର ଥିଲା ୫୭୫ । ତାହା ସୌଭାଗ୍ୟର ସଙ୍କେତ ବୋଲି ପ୍ରମାଣିତ ହେଲା । ମୁଁ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବାରୁ ଡାକ୍ତର ଓ ବିଶେଷଜ୍ଞମାନେ ମଧ୍ୟ ବିସ୍ମୟ ପ୍ରକାଶ କଲେ । ମୋତେ ହସ୍‌ପିଟାଲ୍‌ରୁ ନିଆଗଲା ବିମାନ ଘାଟୀକୁ, ଓ ପଠାଇ ଦିଆଗଲା ଦିଲ୍ଲୀ । ତାର କାରଣ, ମୋ ଭାଇଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେମାନେ ମୋତେ ଆହୁରି କିଛିଦିନ ରଖିବାକୁ ଚାହୁଁଥିଲେ । ଦିନେ ରାତିରେ ମୁଁ ଥୋଡ଼େ ସବୁଜ ରଙ୍ଗର ବାନ୍ତି କଲି । ତା'ପରେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ।

ସ୍ୱାସ୍ଥ୍ୟ ତା' ନିଜ ବାଟରେ ଆଣିଦିଏ କାନ୍ତି ଓ ଔଜ୍ଜ୍ୱଲ୍ୟ । ଆରୋଗ୍ୟ ହେବା ହେବା ପରେ ମୁଁ ପୁଣି ହୋଇ ଉଠିଲି ରମଣୀୟା । ବିମାନଘାଟୀରେ ଧକା ଖାଇଲି ପୁଣି ତାଙ୍କର ସହିତ, ଯାହାଙ୍କ ପ୍ରତି ମୁଁ ଏକଦା ଆକୃଷ୍ଟ ହୋଇଥିଲି, ଓ ଯିଏ ମୋତେ ଆଡ଼ ଦୃଷ୍ଟିରେ ନ ଚାହିଁ ପଛ କରି ଚାଲିଯାଇଥିଲେ ଦିନେ । ତାଙ୍କର ରୂପ-ପିପାସାର ଅନେକ କାହାଣୀ ବିଷୟରେ ମୁଁ ଥିଲି ସଚେତନ । ସାପ ତାର ସମ୍ମୋହିତ ଖାଦ୍ୟକୁ ଆକର୍ଷଣ କଲାପରି ସେ ମୋତେ ତାଙ୍କ ଆଡ଼କୁ ଟାଣି ନେଲେ । ମୁଁ ତାଙ୍କର ଦାସୀ ପାଲଟି ଗଲି । ସେଦିନ ରାତିରେ ବିଛଣାରେ

ଶୋଇ ମୁଁ ଖାଲି ତାଙ୍କ କୃଷ୍ଣ-ବାହୁ ଓ କାମନା-ଦୀପ୍ତ ଆଖି କଥାହିଁ ଭାବିବାକୁ ଲାଗିଲି । ଅଳ୍ପଦିନ ପରେ ସାକ୍ଷାତ ହେଲା ତାଙ୍କ ସହିତ ଓ ମୁଁ ବାନ୍ଧି ହୋଇ-ପଡ଼ିଲି ତାଙ୍କର ବାହୁ ଭିତରେ ।

ତାଙ୍କର ମୁଦ୍ରିତ ନୟନ ଯୁଗଳକୁ ଚୁମ୍ବନ କରି ମୁଁ ଅନୁଚ୍ଚ ସ୍ୱରରେ କହିଲି—"ତୁମେ ହିଁ ମୋର କୃଷ୍ଣ ।" ସେ ହସିଲେ । ତାଙ୍କର ବାହୁ ମଧ୍ୟରେ ମୁଁ ନିଜକୁ କୁମାରୀ କନ୍ୟା ପରି ମନେ କଲି ।

ତାଙ୍କ ପ୍ରେମର ଶରତ ପୂର୍ବରୁ କଣ୍ କେବେ ଆସିଥିଲା ? ଗ୍ରୀଷ୍ମରତୁ ତାଙ୍କ ବାହୁବନ୍ଧନରେ ସନ୍ଧ୍ୟା ସମାଗତ ହେବା ଆଗରୁ ଥିଲା କି କେବେ ଗୋଟାଏ ପ୍ରଭାତ ? ମୁଁ ସ୍ମରଣ କରି ପାରୁ ନ ଥିଲି । ଚକ୍ଷୁ ଭିତରେ ମୁଁ ତାଙ୍କୁ ସବୁଦିନେ ହିଁ ରଖିଥିଲି । ସେ ଥିଲେ ମୋ ବାଲ୍ୟକାଳୀନ ସ୍ୱପ୍ନର ସେଇ ଶ୍ୟାମଳ ଦେବତା । ରାତିରେ ନଗରୀର ଅସଂଖ୍ୟ ରମଣୀ ତାଙ୍କ ପାଇଁ କାନ୍ଦୁଥିଲେ । ମୁଁ କହୁଥିଲି—'ହେ କୃଷ୍ଣ; ହେ କାହ୍ନୁ...ମୋତେ ଛାଡ଼ି ତୁମେ ଅନ୍ୟ କାହା ପାଖକୁ ଯାଅନା... ଯାଅନା ।'

ଯେଉଁଦିନ ତାଙ୍କର ସାକ୍ଷାତ ନ ପାଏ, ମୁଁ ତାଙ୍କୁ ଚିଠି ଲେଖେ । କିନ୍ତୁ ଚିଠି ପତ୍ରକୁ ସେ ଘୃଣା କରୁଥିଲେ । କହୁଥିଲେ—'ଏପରି ଭାବ ପ୍ରବଣ ହୋଇ ଯାଅନା । ଏପରି ମାମୁଲି ଚିଠି ଲେଖିବା କଣ ଦରକାର...।' ତତ୍କ୍ଷଣାତ୍ ମୁଁ ତାଙ୍କୁ ପରିତ୍ୟାଗ କରିପାରି ଥା'ନ୍ତି । କିନ୍ତୁ ମୁଁ ତାଙ୍କ ନିକଟରେ ହିଁ ରହିଲି, ଚାହିଁଲି ତାଙ୍କର ଲୋମ-ହୀନ ବକ୍ଷ ଦେଶର ଖୁବ୍ ନିକଟକୁ ଯିବାକୁ, ମୋର ଲୁହ-ଛଳଛଳ ଆଖିକୁ ଲୁଚାଇ ଦେବାକୁ ତାଙ୍କ ବାହୁର ଗହ୍ୱରରେ । ପ୍ରତିଥର ବିଦାୟ ବେଳେ, ମୁଁ ତାଙ୍କୁ ପଚାରୁଥିଲି,—'ପ୍ରିୟ ! ପୁଣି କେବେ ଭେଟ ହେବ ?' ସେ ତାଙ୍କର ଲୁହା ରଙ୍ଗର ବାଳ କୁଣ୍ଡାଉ କୁଣ୍ଡାଉ, ଦର୍ପଣରେ ମୋ ଆଖି ସହିତ ଆଖି ମିଳାଇ କହୁଥିଲେ—"ପ୍ରିୟତମା ! ଦୁଇଦିନ ପରେ...।"

ତାଙ୍କର କୋଠରୀରେ ଥିଲା ଅଠରଟି ଦର୍ପଣ, ମୋର ଶ୍ୟାମଳ ଦେହର ସ୍ନାନ ପାଇଁ ଅଠରଟି ସରୋବର ଯେମିତି । ସେଇ କକ୍ଷର ପରେ ଥିଲା ଗୋଟିଏ ଅବରୁଦ୍ଧ ବାରଣ୍ଡା । ସେଇଠି ଠିଆ ହୋଇ ଆମେ ଦୁହେଁ ସମୁଦ୍ର ଦେଖୁଥିଲୁ ।

କେତେଥର ଯେ ସମୁଦ୍ରକୁ ଲକ୍ଷ୍ୟ କରି ମୁଁ ପ୍ରକାଶ କରିଛି—

ହେ ସମୁଦ୍ର ! ଅବଶେଷରେ ମୁଁ ପାଇଛି ପ୍ରେମ । ପାଇଛି ମୋର କୃଷ୍ଣଙ୍କୁ...

## ବୈଷ୍ଣାଳଣି

## ପରପୁରୁଷ···

ସେଇ ପକ୍ଷିଣୀଟିକୁ···
ତୁମେ ପୋଷା ମନେଇବାକୁ ଚାହୁଁଥିଲ
କେବଳ ପ୍ରେମର ନିଦାଘ ଆଲିଙ୍ଗନରେ ରଖିନେବାକୁ,

ଯେପରିକି ଅନ୍ୟସବୁ ଋତୁ
ଓ, ଛାଡ଼ିଆସିଥିବା ତାର ସଂସାରକୁ କେବଳ ନୁହେଁ
ସେ ଭୁଲିଯିବ···ତାର ସ୍ୱଭାବ, ତାର ଉଡ଼ିବା
ଓ ଆକାଶର ଅସୀମ ପଥସବୁକୁ ।

ମୁଁ କିନ୍ତୁ ତୁମ ନିକଟକୁ ଆସି ନ ଥିଲି
ଆଉଣେ ଏକ ପୁରୁଷ ବିଷୟରେ ଜାଣିବାକୁ
ଆସିଥିଲି ଜାଣିବାକୁ ମୁଁ କିଏ
ଶିଖିବାକୁ ଉଡ଼ିବାର ଉଚ୍ଚାରଣ
ମାତ୍ର, ତୁମେ ଶିଖାଇଲ କେବଳ, ତୁମ ବିଷୟରେ ।

ତୁମକୁ ଖୁସି କଲା ମୋ ଦେହ,!
ମୋ ଓଠରେ ତୁମେ ଜିହ୍ୱା ଘାତ କଲ
ବର୍ଷି ପଡ଼ିଲ ନିଜେ ମୋ ଦେହର କୋଣ-ଅନୁକୋଣରେ
ମୋର କାମନାରେ ତୁମେ ମିଶାଇ ଦେଲ
ତୁମର ତିକ୍ତ-ମଧୁର ରସ ।

ମୋତେ କହିଲ—ପକ୍ଷୀ । ମୁଁ ଶିଖିଲି···
ତୁମ ଘ'ରେ ସାକାରିନ୍ ମିଶେଇବା
ଓ ଯଥା ସମୟରେ ଭିଟାମିନ୍ ଦେବା

ଜଉଁ କୁହୁକ ବଳରେ ମୁଁ ହୋଇଗଲି ବାମନଟିଏ
ତୁମର ପ୍ରମତ୍ତ ଅଦ୍ଭୁମିକାର ବିଶାଳ ଛାୟାତଳେ ।

ଦୂରେଇଗଲା ମୋର ନିଜସ୍ୱ ଇଚ୍ଛା
ଉଭେଇଗଲା ମୋର ନିଜସ୍ୱ ଯୁକ୍ତିବୋଧ
ଓ, ତୁମ ପ୍ରଶ୍ନସବୁର ମୁଁ ଦେଲି ଖାପ୍‌ଛଡ଼ା ଉତ୍ତର ।

ମନେ ପଡ଼ୁଛି···ନିଦାଘର ଆରମ୍ଭରେ
ଝଡ଼ର ପବନର ଅବତରଣ
ମନେପଡ଼ୁଛି ପୋଡ଼ାପତ୍ରର ଧୂଆଁ ଓ ବାସ୍ନା

ତୁମର କୋଠାରେ ଆଲୋକ ସବୁବେଳେ କୃତ୍ରିମ
ତୁମର କୋଠାରେ ଝରକା ସବୁବେଳେ ଅବରୁଦ୍ଧ
ଶୀତ-ତାପ ନିୟନ୍ତ୍ରକ ଯନ୍ତ୍ରଟିର ବା କି କରାମତି !
ଗୃହଆଡ଼େ ଖାଲି ତୁମ ନିଃଶ୍ୱାସର ପୁରୁଷ ଗନ୍ଧର ଗ୍ଲାନି,

ଫୁଲଦାନୀର କଣ୍ଟା ଫୁଲରେ ମଣିଷ ଝାଳର ବାସ୍ନା···

ଆଉ ଗାଇବା ନାହିଁ···, ଆଉ ନାଚିବା ନାହିଁ ।
ମୋ ମନର ପୁରାତନ ରଙ୍ଗମଞ୍ଚ ଏବେ ଅନ୍ଧକାର ।

ହଁ, ବଳିଷ୍ଠ ପୁରୁଷର କୌଶଳ ସବୁବେଳେ ଏକାପରି
ତା'ର ବଳିଷ୍ଠ ଉପାୟରେ ସେ ପରିବେଷଣ କରେ ପ୍ରୀତି,

କାରଣ ପାଣିଧାରରେ ଠିଆ ହୋଇଥିବା ବୃକ୍ଷପରି ପ୍ରେମଟା
ଏକ ବ୍ୟଥାତୁର ମୁହୂର୍ତ୍ତରେ ନିଃସଙ୍ଗ ।

ତଥାପି, ସେ ଖୋଜିବା ଉଚିତ ଏକ ପରିଣାମ
ଏକ ନିର୍ମଳ ଓ ସମ୍ପୂର୍ଣ୍ଣ ସ୍ୱାଧୀନତା

ଏବଂ, ସେ ଗୃହେଁ···ଦର୍ପଣମାନଙ୍କର ଭାଙ୍ଗିଯିବା
ସେ ଲୁହେଁ···ଦୟାଶୀଳ ହାତ
ପୋଛିନେଉ ସବୁ ଜଳକଣା ।

ନଗର-ବାସିନୀ ଅଧିକାଂଶ ରମଣୀଙ୍କ ସଦୃଶ ମୁଁ ମଧ୍ୟ ଅଳ୍ପଦିନ ପାଇଁ ପରକୀୟା-ପ୍ରେମର ପ୍ରୟାସ କରିଥିଲି । କିନ୍ତୁ ତା'ପରେ ମୋତେ ଆଉ ଭଲ ଲାଗିଲା ନାହିଁ । ମୋ ପ୍ରେମିକଙ୍କ କ୍ରିୟା-କଳାପରେ ଅବନତି ଆରମ୍ଭ ହୋଇଯାଇଥିଲା । ପ୍ରେମ-ଭାବ ବଦଳରେ ତାଙ୍କପ୍ରତି ମୋଠାରେ ଜାଗି ଉଠିଲା ଦୟା ।

ତାଙ୍କର ଏକଦା ଅନୁରାଗିଣୀମାନେ ମଧ୍ୟ ଦୂରେଇ ରହୁଥିଲେ । ତାଙ୍କ ଫୋନ୍ ରହୁଥିଲା ନୀରବ । କେହି ତାଙ୍କର ସାହଚର୍ଯ୍ୟ ଲୋଡ଼ୁ ନ ଥିଲେ ଆଉ । ଏକ ନିର୍ବାସିତ ରାଜାର ବିଷାଦିତ ଆଭା ହିଁ ଥିଲା ତାଙ୍କର ଭୂଷଣ । ମୁଁ ତାଙ୍କୁ ମୋ ଜୀବନ ସମର୍ପଣ କରିବାକୁ ଚାହିଁଲି । କିନ୍ତୁ ତାହା ତ ଏକ କଳଙ୍କିତ ପୁରସ୍କାର, ସମ୍ଭବତଃ ମୂଲ୍ୟହୀନ ବି । ତାଙ୍କ ପାଇଁ କେବଳ ଗୋଟିଏ ମାତ୍ର ଗୋପନ ନିକୁଞ୍ଜ ରହିଥିଲା, ତାହା ତାଙ୍କ ବଳିଷ୍ଠ ବାହୁଦୁଇର ଆକୁଞ୍ଚନ ଦ୍ୱାରା ପ୍ରସ୍ତୁତ କ୍ଷୁଦ୍ରକକ୍ଷ ଏବଂ ତାଙ୍କ ପିପାସୁ ଚକ୍ଷୁପାଇଁ···ରହିଥିଲା କେବଳ ମୋର ଦେହର ଲୋମ-କୂପଗୁଡ଼ିକୁ ଦେଖିବାର ବାଇଗଣି ଅନ୍ଧତା ।

ଏପରିକି ମୁଁ ତାଙ୍କୁ ଯେତେବେଳେ ନିବିଡ଼ ଭାବରେ ଜାକି ଧରୁଥିଲି ଦେହରେ ଦେହ ମିଶାଇ ସେତେବେଳେ ସେ ଅସ୍ପଷ୍ଟ ସ୍ୱରରେ କହୁଥିଲେ—ମୁଁ ଦେଖୁଚି ମୋର କାମନା ସବୁ ବ୍ରଣ ପରି ଫୁଟି ଉଠୁଚି, ଖୋଲି ଯାଉଚି ଫାଟକ, କାନ୍ଥସବୁ କମ୍ପି ଉଠୁଛନ୍ତି, ସବୁ ଆଇନକାନୁନ୍ ଧୂଳିରେ ପ୍ରକୀର୍ଣ୍ଣ, କିନ୍ତୁ ଏଇ ରାଜ୍ୟରେ କିଛି କରି ପାରିବାର କ୍ଷମତା ମୋର ନାହିଁ··· । ଆମେ ଦୁହେଁ ଆଲିଙ୍ଗନରେ ଅନୁବଦ୍ଧ ଥିଲାବେଳେ ତାଙ୍କର ଦର୍ପଣଗୁଡ଼ିକର ଗାଢ଼-ନୀଳ ସରୋବରରେ ଆମେ ବୁଡ଼ିଯାଉଥିଲୁ ଏକ ମୃତ୍ୟୁହୀନ ଉଦ୍ଦେଶ୍ୟ ପରି, ବାରମ୍ବାର ତାହାର ପୁନରାବୃତ୍ତି ଘଟୁଥିଲା, ଦିଶୁଥିଲା ପ୍ରତିବମ୍ବର ପ୍ରତିବମ୍ବ, ଛାୟାର ଛାୟା, ସ୍ୱପ୍ନର ସ୍ୱପ୍ନ······

ଏବଂ, ତଥାପି ମୋ ଦେହର ଅମର୍ଯ୍ୟାଦା ମୁଁ ଚାହୁଁ ନ ଥିଲି । ମୋର ମାମୁଲି ନାରୀ ଆକୃତି ଏକ ସୁନ୍ଦର ସଂପର୍କକୁ ଛିନ୍ନ କରିବା ପାଇଁ ପୁନର୍ବାର ଜାଗିଉଠିଲା । ହଁ, ତାହାହିଁ ତ ଏକ ଯନ୍ତ୍ରଣାଦାୟକ, କ୍ଳାନ୍ତ, ଅବୋଧ୍ୟ ଅସ୍ତ୍ରପରି ସବୁଦିନେ କାଟିଆସିଚି ଅନେକ ସୁନ୍ଦର ଯୁଗ୍ମତାକୁ, ଚୁକ୍ତିକୁ, ମର୍ମକୁ ହଁ ହଁ ସବୁଦିନେ···ସବୁଦିନେ ।

ଦୁଃଖରେ ନିଜକୁ ପଚାରିଲି—ମୋର ଦେହଟା କଣ ସବୁଦିନେ ଶାନ୍ତତର, ପ୍ରାଜ୍ଞତର ମାନସ ଉପରେ ସବାର ହୋଇ ରହିଥିବ ! ତା'ପରେ—ଦିନେ ଯାହାକୁ ମୁଁ ଘୃଣା କରୁଥିଲି ସେଠାରେ ମୁଁ ଆବିଷ୍କାର କଲି ସୌନ୍ଦର୍ଯ୍ୟ । ଓଃ···ତାଙ୍କର ସେଇ ନିଷ୍ଫଳ ମୁହୂର୍ତ୍ତିଗୁଡ଼ିକ, ଓ ଘନଘନ ପ୍ରଶ୍ୱାସର ଶବ୍ଦ ସବୁ ! ଏବଂ ନୀରବତା, ଯାହା ଆତ୍ମାର ପ୍ରାଚୀନ କ୍ଷତସବୁକୁ ସୁସ୍ଥତର କରୁଥିଲା ଅଳ୍ପ ସମୟ ପାଇଁ ! ତାଙ୍କର ଦେହ ମୋ ପକ୍ଷରେ ଏକ କାରାଗାରରେ ପରିଣତ ହୋଇଗଲା । ତାଙ୍କ ଦେହ ବାହାରେ ମୁଁ ଅନ୍ୟକିଛି ଦେଖିପାରିଲି ନାହିଁ । ତାଙ୍କର କୃଷ୍ଣିମା ମୋତେ ଅନ୍ଧ କରିଦେଲା । ତାଙ୍କର ପ୍ରେମ-ପୂର୍ଣ୍ଣ ଶବ୍ଦ ଯୋଗୁ ମୋ ପାଇଁ ରୁଦ୍ଧ ହୋଇଗଲା ପ୍ରାଜ୍ଞ ପୃଥିବୀର କୋଳାହଳ ।

ଏ ସମସ୍ତ ଘଟଣା ଶେଷ ହେବାର କେତେ ବର୍ଷପରେ ଦିନେ ମୁଁ ନିଜକୁ ପଚାରିଲି—କାହିଁକି ମୁଁ ତାଙ୍କୁ ପ୍ରେମିକ ରୂପେ ଗ୍ରହଣ କରି ନେଇଥିଲି ? ତାଙ୍କ ପ୍ରେମ କରିବାର ଅକ୍ଷମତା ବିଷୟରେ ମୁଁ ତ ଭଲଭାବରେ ସଚେତନ ଥିଲି ଆଗରୁ ? ତେବେ··· ! ମୁଁ ନିଜେ ଭାବିହେଲି ନିଜ ପ୍ରଶ୍ନର ଉତ୍ତର ପାଇଁ । ପ୍ରୀତିର ଗୋଟାଏ ଆରମ୍ଭ ଓ ଗୋଟାଏ ଶେଷ ଅଛି, କିନ୍ତୁ କାମ-ପିପାସାର ସେପରି କିଛିନାହିଁ । ମୋର ନିରାପତ୍ତା ପ୍ରୟୋଜନ ଥିଲା, ମୋର ସ୍ଥାୟିତ୍ୱ ଆବଶ୍ୟକ ଥିଲା, ମୋର ଦରକାର ଥିଲା ମୋ କାନ୍ଧରେ ଦୁଇଟି ବଳିଷ୍ଠ ବାହୁର ଛନ୍ଦଣି ଓ କାନରେ ଏକ ମଧୁର ସ୍ୱରର ଗୁଂଜରଣ । ଶାରୀରିକ ସହଂତ କିଛିଟା ଗର୍ବବୋଧ ବହନ କରିବାକୁ ବାଧ୍ୟ, କିନ୍ତୁ ତାହା ଆତ୍ମା ପକ୍ଷରେ ଭାରି ସଙ୍କୁଚିତ ହୋଇଯାଏ । ନାନା ଭାବରେ ବିକୀର୍ଣ୍ଣ ହୋଇଯିବା ସମ୍ଭବତଃ ମୋ ଦେହ ପକ୍ଷରେ ଆବଶ୍ୟକ ଥିଲା, ଯାହାର ଫଳ ସ୍ୱରୂପ ଆତ୍ମା ଏକ ପରିବର୍ତ୍ତନ ପାଇଁ ହୋଇ ଯାଇଥିଲା କୋମଳତର ।

ଅବଶେଷରେ ସମ୍ଭୋଗର ଚଉକ ଗୁଡ଼ି ଉଠିଗଲା ବିନମ୍ରଚିତ୍ତର ରମଣୀଟିଏ । ଚାଲିଗଲା ଦୂରକୁ । ବିଦାୟ ମାଗିବାକୁ ଥରେ ବି ଚାହିଁଲା ନାହିଁ ପଛକୁ । ଯେତେ ଶୀଘ୍ର ମୁଁ ଶାରୀରିକ ଅବସ୍ଥାକୁ ଆୟତ୍ତ କରି ନେଇଥିଲି, ସେତିକି ଶୀଘ୍ର ମୁଁ ମନଟାକୁ ବି ସଜାଡ଼ି ନେଲି । ଖେଳରେ ତାଙ୍କୁ ହିଁ ବହୁତ ବେଶି କ୍ଷତି ସହିବାକୁ ପଡ଼ିଲା । ଯାହା ଅମୂର୍ତ୍ତ ନୁହେଁ, ସେପରି କୌଣସି ଉପହାର ଗ୍ରହଣ କରିବାରେ ମୋର ବିଶ୍ୱାସ ନ ଥିଲା । ତାଙ୍କ ଭିତରେ ମୁଁ କାମଜ ରୋଗ ପରି ବର୍ଜିତ ହେବାକୁ ଚାହୁଁଥିଲି । ମୁଁ ଚାହୁଁଥିଲି—ସେ ଦୁରାରୋଗ୍ୟ ପ୍ରେମ ବ୍ୟାଧିରେ ପୀଡ଼ିତ ହୁଅନ୍ତୁ ସବୁଦିନେ । ପ୍ରେମ-ମଗ୍ନା ସବୁ ନାରୀଙ୍କଠାରେ ଏଇ ବିଶିଷ୍ଟ ନିର୍ଦ୍ଦୟତା ରହିଚି । ସେ କହୁଥିଲେ—"ତୁମେ ଜଣେ ପାଗଳୀମା, କିନ୍ତୁ ଦୀର୍ଘାୟୁ ହେଉ ତୁମର ପାଗଳାମି···" ।

ହଁ, ମୁଁ ଯେ ତାଙ୍କୁ ଭଲ ପାଉଥିଲି ଏହା ସତ । ପାଗଳ ଭାବରେ ନୁହେଁ, ବିବେଚନାର ସହିତ । ମୋ ଦେହ ଓ ମନୋଗତ ପ୍ରଜ୍ଞାର ଦିଗ୍‌ଦର୍ଶନରେ ମୁଁ ହେଉଥିଲି ପରିଚାଳିତ । ତାଙ୍କର ଦେହ ସ୍ପର୍ଶକରିବା ମାତ୍ରେ ମୋର ପୁରାତନ ପ୍ରେମାନୁଭୂତି ସବୁ ଓଲଟପାଲଟ ହୋଇ ଯାଇଥିଲା । ସେପରିକି ତାଙ୍କର କଳାବର୍ଣ୍ଣର ଦେହଟା ହିଁ କେବଳ ଥିଲା ଜୀବନ୍ତ । ଅନ୍ୟସବୁ ମୁହଁମାନେ ନୀରବ ହୋଇ ଯାଇଥିଲେ । ତାଙ୍କ ପାଇଁ କୌଣସି ଶୁଦ୍ଧି-ମନ୍ତ୍ରପାଠ କରିବା ଦରକାର ପଡ଼ିଲା ନାହିଁ । ତା'ଛଡ଼ା, ଅଠରଟି ଦର୍ପଣ-ଲଗା କକ୍ଷ ଭିତରେ କାହାର ସମୟ ଥିଲା କେଉଁକଥା ସ୍ମରଣ କରିବାକୁ ?

ହେ ନଗରବାସୀ ପିତା, ବନ୍ଧୁ ଓ ମାତବାଦମାନେ ! ଯଦି ମୁଁ ପାପ କରିଚ, ତେବେ କ୍ଷମା କରନା ମୋ ପାପକୁ । ଯଦି ମୁଁ ନିଷ୍ପାହ, କ୍ଷମା କରନା ମୋର ନିଷ୍ପାହତାକୁ । ରକ୍ତପରି ଲୋହିତ ଅଗ୍ନିରେ ମୋତେ ଜାଳିଦିଅ ସ୍ୱତରେ, ଗର୍ବରେ ଉଦ୍ଧତ ମୋର ଦ୍ରାବିଡ-ଚର୍ମକୁ ଜାଳିଦିଅ ଏବଂ ଜାଳିଦିଅ ମୋ ଅନ୍ତରର ସମସ୍ତ ଅକାର୍ଯ୍ୟକୁ ।

ଅଥବା, ମୋତେ ପୋତିଦିଅ ତୁମ ଘର ପଛର ଉଦ୍ୟାନରେ, କବରର ଗହ୍ୱରକୁ ପୂର୍ଣ୍ଣ କରିଦିଅ ବମ୍ବେର ଲାଲ୍ ଧୂଳିରେ, ମୋର ଉଦର ଦେଶରେ ରୋପଣ କରି ଦିଅ କୋମଳ ଗଛ । କାରଣ, ତାଙ୍କର ଓ ମୋର ସାକ୍ଷାତ ହେଲା ବହୁତ ବିଳମ୍ବରେ, ସନ୍ତାନଟିଏ ପାଇ ପାରିଲୁ ଆମେ, ତାଙ୍କର ଓ ମୋର ପ୍ରୀତି ଥିଲି ସମୁଦ୍ରର ଲିପି, ପବନ ବହି ଆଣିଥିବା ଏକ ସଙ୍ଗୀତର ମୂର୍ଚ୍ଛନା···

ସେଇ ଶେଷତମ ମାନବିକ ବନ୍ଧନରୁ ମୁକ୍ତି ପାଇବା ପରେ ମୁଁ କୃଷ୍ଣଙ୍କ ଆଡ଼କୁ ମୁହାଁଇଲି । ମୁଁ ଅନୁଭବ କଲି—ମୋ ଅଭିନୟ ଶେଷ ହୋଇଚି, ଦର୍ଶକମାନେ ବି ଫେରିଗଲେଣି, ପ୍ରେକ୍ଷାଳୟ ଶୂନ୍ୟ··· । ତା'ପରେ ଆସିଲେ ଦେବତା । ତାଙ୍କର ମୁକୁଟ ନ ଥିଲା, ବେଶ ପୋଷାକ ନ ଥିଲା । ଶାନ୍ତଭାବରେ ପ୍ରବେଶ କଲେ ସେ ମଞ୍ଚକୁ । ମୁଁ ତାଙ୍କୁ ପଚାରିଲି—'ଏବେ ତୁମେ କେଉଁ ଭୂମିକାରେ ଅଭିନୟ କରିବାକୁ ଆସିଚ ? ତୁମର ମୁହଁଟା ତ ଚହ୍ଲା ଚହ୍ଲା ଲାଗୁଚି ।' ସେ କହିଲେ—"ନା, ମୁଁ କୌଣସି ଭୂମିକାରେ ଅଭିନୟ କରିବାକୁ ଆସିନି । ମୁଁ ସେଇ ମୁଁ ।"

ମୋ ମନର ପୁରାତନ ପ୍ରେକ୍ଷାଗୃହରେ, ସେଇ ଶୂନ୍ୟତାରେ ପ୍ରତିଧ୍ୱନିତ ହୋଉଥିବା ତାଙ୍କର ସ୍ୱର ବଡ଼ ମଧୁର ଲାଗିଲା ମୋତେ । ସର୍ବଶେଷରେ, ସେ ଆସିଲେ । ତାଙ୍କର ଦାବି ମୁଁ । ତା'ପରେ ସେ ନିତ୍ୟ ଦେଖାଦେଲେ ମୋର ସ୍ୱପ୍ନରେ । ଅନେକ ସମୟରେ ପଦ୍ମାସନରେ ବସି ଦୀପ ଜାଳି ମନ୍ତ୍ର ଆବୃତ୍ତି କରି ବନ୍ଦନା କଲି ତାଙ୍କୁ, ଗୁଣଗାନ କଲି ତାଙ୍କର ।

ମୋର ଓଜନ କମିଗଲା । ନିଃଶ୍ୱାସ ନେଇ ନ ପାରି ମୁଁ ପୀଡ଼ିତ ହେଲି । ପୁଣି ମୋତେ ନିଆଗଲା ବମ୍ବେ ହସ୍ପିଟାଲ୍‌ର ସେଇ କୋଠରୀ ନମ୍ବର ୫୭୫ କୁ । ଡ଼ାକ୍ତର କହିଲେ—ଆଶଙ୍କାର କାରଣ ନାହିଁ । ମୋତେ—ମିଓକାର୍ଡ଼ିଟିସ୍ ହୋଇଚି ବୋଲି ସେ କହିଲେ ।

କ୍ରମାଗତ ଅନେକ ପରୀକ୍ଷା ପରେ ମୋର ଦେହରେ ଦୁଇଥର ଅସ୍ତ୍ରୋପଚାର କରାଗଲା । ଦ୍ୱିତୀୟ ଅସ୍ତ୍ର-ଉପଚାରର ଅବ୍ୟବହିତ ପୂର୍ବରୁ ନିକଟରେ ସାନଭଉଣୀ ବସି ଦୁର୍ଗାକବଚମ୍ ପାଠ କରୁଥିଲା । ସେ କହିଲା—"ତୁମ ଆରୋଗ୍ୟ ପାଇଁ ମୁଁ ପ୍ରାର୍ଥନା କରୁନାହିଁ । ଯଦି ମରିବା ହିଁ ତୁମର ଏକମାତ୍ର ପରିଣାମ,

ତେବେ ମୃତ୍ୟୁ ଲୋକରେ ସେ ତୁମର ସୁରକ୍ଷା କରିବେବୋଲି ମୁଁ ପ୍ରାର୍ଥନାକରୁଛି ।’ ମୁଁ ଅନେକ ଶାନ୍ତ ଅନୁଭବ କଲି । ମୋତେ ମୁକ୍ତ ମୁକ୍ତ ଲାଗିଲା । ମହିମାମୟୀ ଦେବୀ ଦୁର୍ଗାଙ୍କର ମୂର୍ତ୍ତି ମନେ ମନେ ଆଙ୍କିବାକୁ ଚେଷ୍ଟା କଲି । ଉଜ୍ଜ୍ୱଳ ମଣି-ମୁକ୍ତା ଖଚିତ ଅଳଙ୍କାରରେ ଭୂଷିତ ଦେବୀଙ୍କର ରକ୍ତବର୍ଣ୍ଣାଭ ରୂପ ମୋ ଆଖି ଆଗରେ ଝଲସି ଉଠିଲା । ସେଇ ରୂପ-ଦର୍ଶନ କରିବା ଅବସ୍ଥାରେ ମୁଁ ଅଚେତ ହୋଇ ପଡ଼ିଲି ଅପରେସନ୍ ଟେବୁଲ୍ ଉପରେ ।

କେଇ ଘଣ୍ଟା ପରେ ମୋ ଚେତା ଆସିଲା । ଆଖି ଖୋଲିବା ମାତ୍ରେ ମୋ ଉପରକୁ ଝୁଙ୍କି ପଡ଼ିଥିବା ଏକ ସୁନ୍ଦର ମୁହଁ ଦେଖିବାକୁ ପାଇଲି । ମୁଁ ପଚାରିଲି- "ଆପଣ ଦୁର୍ଗା ?" ସେ କହିଲେ,"ହଁ, କିନ୍ତୁ ତୁମେ କିପରି ମୋ ନାଁ ଜାଣିଲ ।"

ପରେ ମୁଁ ଜାଣିଲି ସେ ଡାକ୍ତରାଣୀ । ପ୍ରଥମେ ବାପ-ମା ତାଙ୍କର ନାମ ଦେଇଥିଲେ ଦୁର୍ଗା । ବାହାଘର ପରେ ତାଙ୍କର ନାମ ପରିବର୍ତ୍ତିତ ହୋଇଛି— ରମା’କୁ । ମୁଁ ଯେ ତାଙ୍କୁ ଭ୍ରମ୍ବଶତଃ ଦୟାମୟୀ ଦେବୀ ଦୁର୍ଗା ବୋଲି ଭାବିଥିଲି ତା’ ସେ ଜାଣିପାରିଲେ ନାହିଁ ।

କୋଠରୀ ନମ୍ବର—୫୬୫ ଥିଲା ମୋର ବେଶ୍ ପରିଚିତ । ସେଠାକୁ ଯାଇ ମୁଁ ଘରକୁ ଯିବାର ଆନନ୍ଦ ଲାଭ କଲି । ଡାକ୍ତରମାନେ ବି ମୋତେ ଅଧିକ ଦୟା ପ୍ରଦର୍ଶନ କଲେ । ସେମାନେ ମୋ ହାତ ଧରି ବଡ଼ ସ୍ନେହରେ କଥାବାର୍ତ୍ତା କଲେ । ‘ବେନ୍-ସନ୍ ଆଣ୍ଡ ହେଜେସ’ ସିଗାରେଟ୍ ଟାଣି ଅବଶେଷଟିକ ତଳେ ଏଠି ସେଠି ପକାଉଥିବା ସେଇ ଚନ୍ଦାକିଆ ଯୁବକ ଡାକ୍ତର ଜଣକଙ୍କ କଥା ମୋର ବିଶେଷ କରି ମନେ ଅଛି । ମୋ ହାତକୁ ସ୍ପର୍ଶକରୁଥିବା ତାଙ୍କ ମୋଟା ଆଙ୍ଗୁଳି ଗୁଡ଼ିକର ବାସ୍ନା ମୋତେ ଭଲ ଲାଗୁଥିଲା ।

ସକାଳେ ପ୍ରାର୍ଥନା କରିବାରେ ମୋର ଘଣ୍ଟାଟିଏ କଟିଯାଉଥିଲା । ଚକଲାଗି ଖଟିଆରେ କୃଷ୍ଣଙ୍କ ମନ୍ଦିରକୁ ଯିବାର ଅନୁମତି ମୋତେ ଦେଇଥିଲେ ଡାକ୍ତରମାନେ । ସେଠାରେ ମୁଁ ଦେବତାଙ୍କ ମୁଖର ଅନିର୍ବଚନୀୟ ଶୋଭା ଦର୍ଶନ କରୁଥିଲି । ପଚାରୁଥିଲି—"ମୋତେ ତୁମନିକଟକୁ ଫେରାଇ ନେବାର ସମୟ କଣ୍ ହୋଇନି ? ଏ ପୃଥିବୀ ଭୋଗ କରିବା ମୋର ଯଥେଷ୍ଟ ହେଲାଣି, ଯଥେଷ୍ଟ ଭକ୍ତି ଉପହାର ମୁଁ ପାଇସାରିଲଣି ପୃଥିବୀରୁ ।"

ସ୍ୱାମୀ ଭାବିଲେ ମୋର ମାନସିକ କ୍ଷୟ ଘଟିବାରେ ଲାଗିଛି । ମୋତେ ଶାନ୍ତ ଓ ଚଞ୍ଚଳ ରହିବାର ଔଷଧ ଦିଆଯାଇ ବିଛଣାରେ ତିନିମାସ କାଳ ବିଶ୍ରାମ ନେବାକୁ ପରାମର୍ଶ ଦିଆଗଲା । ବିଛଣାରେ ଶାୟିତ ଅବସ୍ଥାରେ ମୁଁ ଦେବତାଙ୍କର ମହିମାକୁ ମନେ ପକାଇଲି । ତାଙ୍କର ପ୍ରସାରିତ ଚକ୍ଷୁ ଓ ତାଙ୍କର ସଙ୍କେତ-ସୂଚକ ହସ ଝଲସି ଉଠୁଥିଲା ମୋର ମନର ପରଦାରେ ।

ମୋର ଧୈର୍ଯ୍ୟ ଶକ୍ତିର ଅବନତି ଘଟୁଥିଲା । ହସ୍‌ପିଟାଲ ରୁ ଘରକୁ ପୁଣି ଫେରିବା ଅଥବା ପୁନର୍ବାର ସ୍ୱାସ୍ଥ୍ୟ ଫେରି ପାଇବାର ଉଦ୍ଦେଶ୍ୟ—ମୁଁ ବୁଝିପାରିଲି ନାହିଁ । କିଛିଦିନ ପରେ, କେବେ କେବେ ଦର୍ପଣ ସମ୍ମୁଖରେ ବସି ନିଷ୍ପ୍ରଭ ଓଷ୍ଠରେ ରଙ୍ଗ ଲଗାଉଥିଲା ବେଳେ ସହସା କେମିତି ଗୋଟାଏ ଅସ୍ୱସ୍ତି ଅନୁଭବ କରୁଥିଲି । ଦର୍ପଣରେ ବିମ୍ବିତ ମୋର ନିଃସଙ୍ଗ ଚକ୍ଷୁଗୁଡ଼ିକ ଦିଶୁଥିଲା କୁହୁଡ଼ିଆ । ମୋ ନିଃସଙ୍ଗତାର ଗଭୀରତାକୁ ମୁଁ ଲକ୍ଷ୍ୟ କରୁଥିଲି । ତା'ପରେ ଭାବିଲି ମୁଁ କୌଣସି ଶବର ଓଠରେ ଲେପୁଚି । ମୃତ୍ୟୁ ଆସି ମୋର ଦେହର ସବୁଜିମାକୁ ଆଉଜି ଠିଆ ହେଲାଣି । ଏକ ପ୍ରକାରର ଧୂପ ବାସ୍ନାରେ ଆମ୍ଭା କେବଳ ପୂର୍ଣ୍ଣ କରିଚି ମୋର ଦେହ । ମୃତ୍ୟୁ ମୋତେ ସ୍ପର୍ଶ କରିବା ମାତ୍ରେ, ଏଇ ବାସ୍ନା ମୋର ଦେହ ଗୁଡ଼ି ଗୁଳିଯିବ ଓ ତା'ସ୍ଥାନରେ ରହିଯିବ କେବଳ ଏକ ଅସହ୍ୟ ଦୁର୍ଗନ୍ଧ । ଏପରିକି ଯେଉଁ ପୁଅମାନେ ମୋର ଗାଲରେ ଚୁମା ଦେଉଛନ୍ତି, ସେମାନେ ବି ଭୟ କରିବେ ।

ଯେଉଁଦିନ ମୋର ଦ୍ୱିତୀୟ ପୁଅକୁ କହିଲି ଯେ ମୃତ୍ୟୁ ପରେ ହସ୍‌ପିଟାଲ୍‌ରୁ ତୁମମାନଙ୍କ ନିକଟକୁ ମୁଁ ଭୂତ ହୋଇ ଫେରିବାର ଯୋଜନା କରିଚି, ସେଦିନ ସେ ଉତ୍ତର ଦେଇଥିଲା —ଦୟାକରି ସେମିତି କରିବନି, ଆମେ ତୁମକୁ ଦେଖି ଖୁବ୍ ଡରିଯିବୁ । ତାର ସେଇକଥା ମଥିତ କରିଥିଲା ମୋର ହୃଦୟ । ସେଇ ମୁହୂର୍ତ୍ତରେ ମୁଁ ଅଧିକ ଅଜ୍ଞ ଓ ଅଧିକ ସରଳ ହୋଇ ପଡ଼ିଥିଲି । ଅତ୍ୟନ୍ତ ସରଳ ଭାବରେ ମୁଁ ଶପଥ କରିଥିଲି ସ୍ୱାମୀଙ୍କ ନିକଟରେ ଯେ ଜନ୍ମ ଜନ୍ମ ଧରି ତାଙ୍କର ପତ୍ନୀ ରୂପରେ ଦେଖାଦେବ ।

ବାସ୍ତବରେ ସେ କିଏ ? ମୁଁ କିଏ ? ମୋର ପୁଅ ବୋଲାଉଥିବା ଏଇ ପିଲା ତିନୋଟି ବା କିଏ ? ଆମେ ସମସ୍ତେ କ୍ଷୟଶୀଳ ଶରୀରର ବୋଝ ବହି ଚାଲିଚୁ । ସମସ୍ତ ଅବାସ୍ତବ ସମ୍ପର୍କକୁ ଏଇ ଶରୀର ହିଁ ଛିନ୍ନ କରିଦିଏ । ସମ୍ପର୍କର ବି ମୃତ୍ୟୁ ଅଛି । କେବଳ ଈଶ୍ୱରଙ୍କ ସହିତ ଆମର ସମ୍ପର୍କରେ ହିଁ ଅଛି ସ୍ଥାୟିତ୍ୱ । ସେଇ ଦେବତା ହିଁ ମୋର ସାଥୀ । ଅସଂଖ୍ୟ ରୂପରେ ସେ ଆସିବେ ମୋ ନିକଟକୁ । ଅନେକ ରୂପରେ ମୁଁ ତାଙ୍କ କାମନାକୁ ଚରିତାର୍ଥ କରିବ । ଏଇ ବିଶ୍ୱର ବହୁ ଭିନ୍ନ ପଥ ମୁଁ ଅତିକ୍ରମ କରିବ । ନିନ୍ଦା କରିବ ନାହିଁ କାହାର । ବୁଝିବାକୁ ଚେଷ୍ଟା କରିବ ସବୁ ପଥର ତାତ୍ପର୍ଯ୍ୟ । ତା'ପରେ—ମୁଁ ହୋଇଯିବ ସେଇ ଦେବତାଙ୍କର ଅଂଶବିଶେଷ । ତା'ପରେ, ଆଉ ମୋ ପାଇଁ ରହିବ ନାହିଁ କୌଣସି ଫେରି ଆସିବା··· ।

## ଚଉରାଳିଶି

### ମୁଁ କେବେ ବି ଗଣିକା ନଥିଲି…

ଆତ୍ମାରେ ପୁରାତନ ରୋଗ
ଆମର ଉତ୍ତରାଧିକାର :
ସୂର୍ଯ୍ୟ ବୁଡ଼ିବାପରେ, ଗୀର୍ଜା, ମସଜିଦ୍ ବା ମନ୍ଦିରରୁ
ଦୈବ ଧ୍ୱନି ଭାସି ଆସିବା ପରେ
ଘୃଣାରେ, ବିନା ଯୁକ୍ତିରେ ଆମେ ବିକୃତ ହୃଦୟ ନେଇଯିବୁ
ଆମର ବୁଝାମଣା ଅସ୍ପଷ୍ଟ :
ଆମର ମନେହେବ ଯେ ଧ୍ୱନିସବୁ
ପୂର୍ବପୁରୁଷଙ୍କ ମାନସିକ-ବିକୃତିର ଚରମ ଭିନ୍ନସ୍ୱର ମାତ୍ର
କେବଳ କହୁଚି ଯେ ତାକୁ ହତ୍ୟା କର ଯେ ଅବିଶ୍ୱାସୀ ।

ହେ ଈଶ୍ୱର ତୁମର ନାମ ନିଷ୍କଳଙ୍କ ରଖ
ଅବିଶ୍ୱାସୀର ରକ୍ତରେ ପରିଚ୍ଛନ୍ନ ଧର୍ମହେଉ ଶୁଭଙ୍କର
କଲ୍ୟାଣପ୍ରାପ୍ତ ହେଉ ଆମର ପବିତ୍ର ନଗରୀ
ଅକ୍ଷୁଣ୍ଣ ରହୁ ତାର ଗୌରବ…

ବାଂଲା ଦେଶର ମୁକ୍ତିସଂଗ୍ରାମ ଚାଲିଥିଲା ବେଳେ ମୋର ବଡ଼ଝିଅ କାମଲ ରୋଗରେ ପୀଡ଼ିତ ହେଲା । କୌଣସି ଏକ ବିଶେଷ ଅନ୍ଧକାରାଚ୍ଛନ୍ନ ସନ୍ଧ୍ୟାରେ ମୁଁ ବାରଣ୍ଡାରେ ଠିଆହୋଇ ସାଇରେନ୍‌ର ଶବ୍ଦ ଶୁଣିପାରିଲି । ଧୂସର ଘରଗୁଡ଼ିକର ଆରପଟରେ ବିସ୍ତୃତ ସମୁଦ୍ର ମୋତେ ଆଲ୍‌କାତରା ପରି କଳା ଦିଶୁଥିଲା ।

ଅନେକ ସମୟରେ ଆମେ ସବୁ ବସି ଯୁଦ୍ଧର ଗତି ଓ ପ୍ରକୃତି ଆଲୋଚନା କରୁଥିଲୁ । ଯଦି ବମ୍ବେ ଉପରେ ବିମାନ ଆକ୍ରମଣ ହୁଏ, ତେବେ ପଶ୍ଚିମରୁ ଆମର ନିକଟରେ ଥିବା ସାଗର ଉପର ଦେଇ ପାକିସ୍ଥାନ-ବିମାନ ସବୁ ମାଡ଼ି ଆସିବେ । ଆମର ଘର ଡକ୍‌ର ପାଖାପାଖି । ବାମପଟକୁ ସଚିବାଳୟ, ମନ୍ତ୍ରୀମାନଙ୍କର ଦପ୍ତର । ଡାହାଣକୁ ନବ ନିର୍ମିତ ବେତାର ଓ ଟେଲିଭିଜନ କେନ୍ଦ୍ର । ତେଣୁ ଆମ ଉପରକୁ ମାଡ଼ି ଆସିପାରିଲେ ପାକିସ୍ଥାନ ବୋମା-ବର୍ଷୀ ବିମାନଗୁଡ଼ିକ ପ୍ରକୃତରେ ବାଜିମାତ୍ କରିପାରିବେ ।

ପ୍ରାସାଦର ଅନ୍ତେବାସୀମାନଙ୍କ ତରଫରୁ ସବୁ ଘରକୁ ଜଣାଇ ଦିଆଯାଇଥିଲା ସତର୍କତା ଅବଲମ୍ବନ କରିବାକୁ । ସାଇରେନ୍ ବାଜିବା ମାତ୍ରେ ସମସ୍ତେ ଯେମିତ ତଳମହଲାର ପାହାଚ ତଳେ ଆଶ୍ରୟ ନିଅନ୍ତି ଓ କେହି ଯେପରି ସେଇ ଜରୁରି ସମୟରେ ଲିଫ୍ଟ ବ୍ୟବହାର ନ କରନ୍ତି । ତେଣୁ ମୁଁ ମନ୍ଦିରବେଳେ ପୀଡ଼ିତ ପୁଅକୁ ଧରି ରହୁଥିଲି ଷଷ୍ଠ ମହଲାରେ । ଯଦି ଦୁର୍ଯୋଗ ଆମେ ମର୍ଯ୍ୟାଦାର ସହିତ ମରିବ । ପାହାଚ ତଳେ ଏତେ ଲୋକଙ୍କ ଭିତରେ ଡରିମରି ଗେଞ୍ଜି ହେବାକୁ ମୁଁ ପସନ୍ଦ କରୁ ନ ଥିଲି ।

ମୁଁ ନ ଯିବାରୁ—ଆମ ପରିବାରର ଅନ୍ୟମାନେ ମଧ୍ୟ ଆମ ବୁଢ଼ିଙ୍କ୍ସ ଛାଡ଼ି ତଳକୁ ଯିବାକୁ ଚାହିଁଲେ ନାହିଁ । ଆମେ ସମସ୍ତେ—ବକ୍ସରୁମ୍ ମଧ୍ୟରେ ଆଶ୍ରୟ ନେବାକୁ ସ୍ଥିର କଲୁ । ତଳେ ସପ ପକାଇ ଶୋଇ ଦିଆଗଲା ରୋଗଣା ପୁଅକୁ । ପାଣି, ପାଉଁରୁଟି ଓ ପ୍ରାଥମିକ ଚିକିତ୍ସାର ସରଞ୍ଜାମ ପ୍ରସ୍ତୁତ ରଖିନେଲୁ ଆକରେ ।

ପ୍ରଥମେ ସାଇରେନ୍ ଶୁଣିବା ବେଳେ ମୁଁ ଅଳିନ୍ଦରେ ରହିଥିଲି । ଅଳ୍ପ କେଇମିନଟ୍ ପାଇଁ ସମୁଦ୍ରାୟ ନଗରୀଟିରେ ଏକ କୃତ୍ରିମ ନୀରବତା ବିରାଜମାନ କରିଥିଲା । ଆକାଶର ଅନ୍ଧକାର ମନେହେଲା ଓଦାଳିଆ । ଗୋଟିଏ ବି ତାରା ଦିଶୁ ନ ଥିଲେ । ତା'ପରେ ଆକାଶ ପଥକୁ ଆସିଲେ ଗୁଡ଼ାଏ ଟିକି ଲାଲ୍‌ବତୀ ଉତ୍ତର-ପଶ୍ଚିମ ଦିଗରୁ । ତା'ପଛକୁ ଆଉରି କେତେକ ଲାଲ୍ ଆଲୋକ ସଙ୍ଗଠିତ ହୋଇ ମାଡ଼ିଆସୁଥିବା ଦେଖାଗଲା । ମୁଁ ଭାବିଲି—ସେସବୁ ନିଶ୍ଚୟ ପାକିସ୍ଥାନ-ବୋମାବର୍ଷୀ ବିମାନ । ମୁଁ ଭିତରକୁ ଯାଇ ଅନ୍ୟମାନଙ୍କୁ ଖବର ଦେଲି ଯେ ପାକିସ୍ଥାନ ବିମାନ ଖୁବ୍ ନିକଟକୁ ଆସିଗଲେଣି । ମୋର ସ୍ୱାମୀ ଓ ଦ୍ୱିତୀୟ ପୁଅ ପୁରାପୁରି ଭୟ-ଭୀତ ହୋଇଗଲା ପରି ଦିଶିଲେ । ଗୋଟିଏ ମିନିଟ୍‌ପରେ ପ୍ରଚଣ୍ଡ ବିସ୍ଫୋରଣର ଶବ୍ଦ ଶୁଣାଗଲା । ବୋମା ଯେ ଆମ ଉପରେ ପଡ଼ିଲାଣି ସେପରି ବିଶ୍ୱାସ ପ୍ରତିଷ୍ଠିତ ହୋଇଗଲା ଆମ ମନରେ ।

ସେ ସମୟରେ ଆମର ବୈଠକଖାନାରେ ବ୍ରୋଞ୍ଜ ନିର୍ମିତ ଗଣେଶ ମୂର୍ତ୍ତିଟିଏ ଥିଲା । ପ୍ରତିଦିନ ସକାଳେ ସ୍ନାନ ପରେ ମୁଁ ତାଙ୍କୁ ପୂଜା କରୁଥିଲି । ମୁଁ ଧୂପ ଜାଳି ତାଙ୍କର ସମ୍ମୁଖରେ ବସି ପ୍ରାର୍ଥନା କଲି । ସାନ ପୁଅ ଆସି ବସି ପଡ଼ିଲା ମୋର କୋଳରେ । ଯେଉଁ ସିନ୍ଦୂର ମୁଁ ଦେବ-ବିଗ୍ରହର ଦେହରେ ଦେଇଥିଲି, ସେସବୁ ମୋତେ ସେ ସମୟରେ ରକ୍ତ ପରି ଦିଶିଲା । ମୋର ଗାନ୍ଧାରୀ କଣ୍ ନିଜେ ଜଣେ ଆହତ ସୈନିକ ଥିଲେ ?

ସାଇରେନ୍‌ର ଶିଶୁ-ସୁଲଭ କାନ୍ଦଣା ମୋତେ ବିଚଳିତ କରିଦେଲା । ଭୟରେ କାନ୍ଦୁଥିବା ଏକ ଶିଶୁର ଶବ୍ଦ ପରି ଥିଲା ତାର ଧ୍ୱନି । ତା'ପରେ ମୁଁ ଆବିଷ୍କାର କଲି ଯେ ମୁଁ ବମ୍ବେ ନଗରୀକୁ ଭଲ ପାଏ ଏବଂ କଦାପି ଚାହେଁନା ତା'ର ଧ୍ୱଂସ । ମାଲବାରରେ ଶିଶୁମାନଙ୍କୁ ଗାଧୋଇ ଦେଲାବେଳେ ଧାଈମାନେ ଗୀତଟିଏ ଗାଆନ୍ତି, ଯଥା—

'କୁନି କୁନି ଗୋଡ଼ରେ ବଢ଼ି ବଢ଼ି ଯା
କୁନି କୁନି ହାତରେ ବଢ଼ି ବଢ଼ି ଯା ।'

ମୁଁ କ୍ରନ୍ଦନରତ ନଗରୀଟିକୁ ମୋ କୋଳକୁ ନେଇ ତାକୁ ଗୁନି କରିବାର ଗୀତ ବୋଲିବାକୁ ଚାହୁଁଥିଲି । ଆମ ପ୍ରାସାଦର ଘୃଷ୍ଟପେଟ ଶବ୍ଦରେ ପ୍ରକମ୍ପିତ ହୋଇଗଲାବେଳେ ମୁଁ ତା ଉପରେ ଢାଳି ଦେଉଥିଲି ମୋର କଲ୍ୟାଣର ଧାରା । ରେ ପ୍ରିୟନଗର ! ତୋର ହାଟ-ବଜାରକୁ ପୂର୍ଣ୍ଣ କରନ୍ତୁ ନୂତନ ବଣିକମାନେ । ଧନବନ୍ତ ଭକ୍ତମାନେ ପ୍ରତିଦିନ ତୋର ମନ୍ଦିରଗୁଡ଼ିକରେ ଘଣ୍ଟା ବଜାନ୍ତୁ । ଦିନୁ ଦିନ ଅଧିକ ସୁନ୍ଦର ଓ କୋମଳ ହୁଅନ୍ତୁ ତୋର ଗଣିକାମାନେ । ଶିଶୁଙ୍କର ହାସ୍ୟ-ରୋଳରେ ମୁଖରିତ ହୋଇଯାଉ ତୋର ଉଦ୍ୟାନ ସବୁ । ତୋର ସମୁଦ୍ର ଧାରରେ ବିଚରଣ କାରିଣୀ ଉଦ୍ଧତ ନାରୀମାନେ ଅଧିକରୁ ଅଧିକ ସୁନ୍ଦର ଓ ଅଧିକ ଗର୍ବୋଦ୍ଧତ ହୋଇ ଯାଆନ୍ତୁ ।

ଆଣ୍ଟି-ଏୟାରକ୍ରାଫ୍‌ଟ ବନ୍ଧୁକ ଦ୍ୱାରା ପ୍ରତିଶବ୍ଦିତ ହେବାରୁ ବିମାନଗୁଡ଼ିକ ବିଫଳରେ ଫେରିଗଲେ । ସମ୍ବାଦ ପାଇ ଆମେ ଶାନ୍ତିରେ ନିଃଶ୍ୱାସ ମାରିଲୁ । ଆମ ଘରେ ପ୍ରତି ସନ୍ଧ୍ୟାରେ ଅର୍ଥନୀତିଜ୍ଞ ଓ ଲେଖକଙ୍କର ସମାବେଶ ହୋଇଥାଏ । ଆମ ଭିତରୁ କେତେକ ବାଂଲା ଦେଶକୁ ସହାୟତା କରିବା ନୀତି ଯୋଗୁ ସରକାରଙ୍କୁ ସମର୍ଥନ କରୁ ନ ଥିଲେ । ଖୋଲାଖୋଲି ଭାବରେ ପ୍ରକାଶ କଲେ— ପ୍ରକୃତରେ ଆମେ ବାଂଲାଦେଶକୁ ଆମ ଗଳାର ଏକ ଯନ୍ତ୍ରଣା ରୂପରେ ଗ୍ରହଣ କରିଥିଲୁ । ବାଂଲା ଦେଶକୁ ସହାୟତା କରିବା ଦ୍ୱାରା ଆମର ଅର୍ଥନୀତି ଯେ ଦୁର୍ବଳ ହୋଇଯିବ ଏହା ଆମେ ଜାଣିଥିଲୁ । ଆନ୍ତର୍ଜାତିକ ସ୍ତରରେ ଏକ ଖ୍ୟାତି ବ୍ୟତୀତ ଆମର ପାଇବାର ଥିଲା ଅଧିକା କଣ୍ । ଆମ ଦେଶରେ ତ ବୁଭୁକ୍ଷୁ ଅସଂଖ୍ୟ, ଗୃହହୀନ ଅସଂଖ୍ୟ । ପଥପ୍ରାନ୍ତରେ ଶୋଇବା ଲୋକ ଥିଲେ ଅଗଣିତ । ଅନେକ ସମୟରେ, ତାଜମହଲ ହୋଟେଲରୁ ରାତ୍ରିଭୋଜନ ସାରି ଫେରିଲା ବେଳେ ଖୋଲାରେ ବୁଢାମାନେ ଜାକଜୁକ ହୋଇ ବର୍ଷା ସହିତ ସଂଗ୍ରାମ କରିବା ଓ କାଶି କାଶି ବେଦମ୍ ହୋଇଯିବାର ଦୃଶ୍ୟ ମୁଁ ଅନେକଙ୍କ

ଘରର ଦ୍ୱାର-ଦେଶରେ ଦେଖିଛି । ଘରେ ପହଞ୍ଚି ବାରଣ୍ଡାରେ ଠିଆ ହୋଇ ଲକ୍ଷ୍ୟ କରୁଥିଲି ସଚିବାଳୟ, ବେତାର କେନ୍ଦ୍ର ଓ ଷ୍ଟେଟବ୍ୟାଙ୍କ ଅଫ୍ ଇଣ୍ଡିଆର ପ୍ରସାଦସବୁକୁ । ସବୁ ଶୂନ୍ୟ । ଏତେ ସବୁ ସ୍ଥାନ କେବଳ ନଷ୍ଟ ହେଉନାହିଁ କି ?

ବର୍ଷା ଓ ଶୀତ କାଳରେ ଗୃହହୀନମାନଙ୍କୁ ଏହି ବିରାଟ ପ୍ରାସାଦ ଗୁଡ଼ିକର ନିମ୍ନ ହଲ୍ ଗୁଡ଼ିକ ରହିବା ପାଇଁ ଛାଡ଼ିଦେବା ଲାଗି ସରକାର କାହିଁକି କୌଣସି ଆଇନ୍ କରୁ ନାହାନ୍ତି ଭାବି ଆଶ୍ଚର୍ଯ୍ୟ ହେଉଥିଲି । ପ୍ରତି ହୋଟେଲ ତାର ଦୈନିକ ଆୟର ଏକ ଦଶମାଂଶ ବ୍ୟୟକରି ଗରିବମାନଙ୍କୁ ଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା କରିବା ଆବଶ୍ୟକ ନୁହେଁ କି ! ଦାନ ଭାରତୀୟ ସଂସ୍କୃତିର ପ୍ରାଚୀନଧାରା । ତାର ପୁନର୍ଜାଗରଣ କ୍ଷତିକାରକ ନୁହେଁ । ବିଶେଷ କରି ଏପରି ଏକ କଠିନ କାଳରେ । ବ୍ରିଟିଶମାନଙ୍କ ପ୍ରଭାବରେ ସହରବାସୀମାନଙ୍କର ଭିକ୍ଷାବୃତ୍ତି ପ୍ରତି ମନୋଭାବରେ ପରିବର୍ତ୍ତନ ଘଟିଛି । ଫାଟକ ନିକଟରେ ହାତ ପତେଇ ମାଗୁଥିବା ଲୋକ ପ୍ରତି ସେମାନେ ଆଜି ଗାଳି ବର୍ଷଣ କରୁଛନ୍ତି । ଯେଉଁମାନେ ଆପଣା ପେଟରୁ କାଟି ଗରିବଙ୍କୁ ବିତରଣ କରନ୍ତି ସେମାନେ ତାଙ୍କୁ ଚିତ୍କାର କରି କୁହନ୍ତି —'ଭିକ୍ଷା ବୃତ୍ତିକୁ ଉତ୍ସାହିତ କରନ୍ତୁ ନାହିଁ ।'

ଏଇ ନିର୍ବୋଧତା ଆଜି ଫେସନରେ ପରିଣତ ହୋଇଯାଇଛି । ଏଥିପାଇଁ ସମ୍ବାଦପତ୍ରଗୁଡ଼ିକୁହିଁ ନିନ୍ଦା କରାଯିବା ଉଚିତ । ଯଦି କୌଣସି ସମ୍ବାଦ ପତ୍ର କୌଣସି ବଦାନ୍ୟ ବ୍ୟକ୍ତିଙ୍କ ଦାନ ବିତରଣ ସମ୍ବାଦ ସମ୍ବେଦନାର ସହିତ ଛାପନ୍ତେ ତେବେ ଅନେକ ସେଇ ବ୍ୟକ୍ତିଙ୍କ ଆଦର୍ଶର ଅନୁସରଣ କରନ୍ତେ, ଅତି କମ୍ ରେ ଖ୍ୟାତି ଓ ପ୍ରଚାରର ଉଦ୍ଦେଶ୍ୟରେ । କେହି ଜଣେ ଗରିବଙ୍କୁ କିଛି ବସ୍ତ୍ର, ଶୀତରେ କମ୍ବଳ ଦେଇଛି, ଅଥବା ରାସ୍ତା କଡ଼ର ଅଳିଆ ଗଦାରୁ ଖୁଣ୍ଟି ଖାଉଥିବା ଶିଶୁଙ୍କୁ କେହି ଦେଇଛି କିଛି ଫଳ—ଶ୍ରେଷ୍ଠ ହେଲେ ବି ଏପରି ଗପଟିଏ ସମ୍ବାଦ ପତ୍ରର ସ୍ତମ୍ଭରେ ଦିନେ ପଢିବାକୁ ମୋର ପ୍ରଚଣ୍ଡ ଆଗ୍ରହ । ଖବର କାଗଜରେ ଆମେ କେବଳ ଅନ୍ୟାୟ ଧର୍ଷଣାଦିର ସମ୍ବାଦ, ଅଥବା ମନ୍ତ୍ରୀ ମାନଙ୍କର ବିଭିନ୍ନ ସମ୍ମେଳନରେ ପ୍ରଦତ୍ତ ଫମ୍ପା ଭାଷଣ ହିଁ ପଢିବାକୁ ପାଉଁ । ଖବର କାଗଜ ଗୁଡ଼ିକ ପ୍ରକୃତରେ ବିରକ୍ତିକର । ଭଲକାମ ବିଷୟ କାହିଁକି ଯେ ଛପା ନ ଯାଏ ? ଆମ ଘରର ପଶ୍ଚିମ ପଟରେ ପାର୍କ୍ଟିଏ । ସବୁଦିନେ ଦୁଇଜଣ ସ୍ୱକରଙ୍କୁ ନେଇ ସେଠାକୁ ଜଣେ ବୁଢ଼ା ଆସନ୍ତି ଓ ଫଳ ବିତରଣ କରନ୍ତି ଗରିବ ଶିଶୁମାନଙ୍କୁ । ତାଙ୍କର ଆସିବା ସମୟକୁ ପ୍ରତିଦିନ ଅପେକ୍ଷା କରି ରହିଥାନ୍ତି ଶିଶୁମାନେ । ସେ ଦୃଶ୍ୟ ଦେଖି ମୁଁ ବହୁତ ଗର୍ବ ଅନୁଭବ କରେ ।

ରୋଗ ଓ ଯନ୍ତ୍ରଣା ମୋତେ ପ୍ରାଞ୍ଜଳ କରିଛି । ପ୍ରେମକୁ ସଂକୀର୍ଣ୍ଣ ପରିସରରେ ଆବଦ୍ଧ କରି ରଖିବାର କଳା ମୁଁ ଭୁଲିଗଲି । ଆମକୁ ସାକ୍ଷାତ କରିବାକୁ ଆସୁଥିବା ସମସ୍ତଙ୍କୁ ମୁଁ ସହଜରେ ଭଲ ପାଇବାର କ୍ଷମତା ଅର୍ଜ୍ଜନ କରିପାରିଥିଲି । ଏପରିକି ମୋ ସ୍ୱାମୀଙ୍କ ପାଇଁ ମୁଁ ହୋଇ ଉଠିଥିଲି ମା'ଅପରି । ମୋର ପରିବର୍ତ୍ତନ ସହିତ ସେ ନିଜକୁ ଖାପ ଖୁଆଇ ନେଇ ପାରିଥିଲେ । କାରଣ, ତାଙ୍କ ଆଖିକୁ ମୋର ଭଙ୍ଗା ଦେହର କଙ୍କେଇଟା ବି ଦିଶୁଥିଲି ସୁନ୍ଦର । କିଛି ବର୍ଷ ତଳେ ଅବସ୍ଥା ଯାହାଥିଲି ତାହା ଆଉ ରହିଲି ନାହିଁ । ନିରପେକ୍ଷ ଭାବରେ ଅବସ୍ଥା ସବୁର ଭଲ ଓ ମନ୍ଦ ମୁଁ ବିଗ୍ଚର କରିଥିଲି । କନା କଣ୍ଢେଇଟିର ଠାଏ ଠାଏ ସିଲେଇ ଖୋଲି ଯାଇଥିଲେ ଯେଉଁ ଅବସ୍ଥା ଉପୁଜିଥାଏ, ମୋର ଦେହଟା ଥିଲା ସେଇପରି । ଅସ୍ତୋପଚ଼ାରର ଦାଗ ମୋ ଉଦରର ନିମ୍ନ ଭାଗକୁ ମଣ୍ଡିତ କରିଥିଲା । ତା'ଥିଲା ଯେପରିକି ଶିଶୁଟିଏ ଆଙ୍କିଥିବା ପୃଥିବୀର ସ୍ଥୂଳ ମାନଚିତ୍ରଟିଏ ସଦୃଶ । ମୋର ବିକ୍ଷୋଜ ମଧ୍ୟ ସାମାନ୍ୟ ଝୁଲି ପଡ଼ିଥିଲା । ତଥାପି ମୋର ଏଇ ରୂପ ମୋ ସ୍ୱାମୀଙ୍କୁ ସୁନ୍ଦର ଦିଶୁଥିଲା । ମୁଁ ଧର୍ମପରାୟଣ ହେବା ମାତ୍ରେ ସେ ଚିଡ଼ି ଉଠୁଥିଲେ ।

ସାପ କାତି ଛାଡ଼ିଲା ଭଳି ମୁଁ ପରିତ୍ୟାଗ କରିଥିଲି ମୋର ପାଶବିକ କାମନା ସବୁକୁ । ମୁଁ ଆଉ ପ୍ରତାରଣା ମଧ୍ୟ କରିପାରୁ ନଥିଲି । ଶଯ୍ୟା ପାଇଁ ମୁଁ ଆଉ ଉପଯୁକ୍ତ ନଥିଲି, ପୁରୁଷଙ୍କୁ ଆକର୍ଷଣ କରିବା ଭଳି ମୋର ରୂପ ବି ଆଉ ନଥିଲା । କିନ୍ତୁ ଅନେକ ଲୋକ ମୋର କବିତା ପଢୁଥିଲେ । ପ୍ରେମର ସ୍ୱାଧୀନତା ସମ୍ପର୍କରେ ମୋର ନିବନ୍ଧ ସବୁ ଅନେକଙ୍କୁ ଭାବମଗ୍ନ କରୁଥିଲା । ଅନେକ ବ୍ୟକ୍ତି ଟେଲିଫୋନ୍‌ରେ ମୋଆଗରେ ଭିନ୍ନ ସ୍ୱାଦର ପ୍ରସ୍ତାବ ଉପସ୍ଥାପନ କରୁଥିଲେ । ମୋ ସମ୍ପର୍କରେ ଏକ ଭ୍ରମ-ଧାରଣା ସୃଷ୍ଟି ହେବାଥିଲା ସ୍ୱାଭାବିକ । ମୁଁ ତ କେବେ ବି ରୂପଜୀବୀ ନ ଥିଲି । ଯୌନ ପ୍ରତି ମୋର ଆଦୌ ଆଗ୍ରହ ନଥିଲା । କେବଳ ସ୍ୱାମୀଙ୍କୁ ମୁଁ ତାହା ଉପହାର ସ୍ୱରୂପ ପ୍ରଦାନ କରୁଥିଲି ତୃପ୍ତି କରିବା ପାଇଁ । ଅନେକ ପରିଚିତ ବ୍ୟକ୍ତି ମୋତେ ସ୍ପର୍ଶ କରିବାର ଉଦ୍ୟମ କରିଥିଲେ ଓ କାମନାର ଇଙ୍ଗିତ ଦେଇଥିଲେ । ସେସବୁ ଆଚରଣ ମୋତେ ଭୟଭୀତ କରିଥିଲା । ଯେଉଁଦିନ ତାଙ୍କର ଆଚରଣ ବିରୋଧରେ ମୁଁ ବିରକ୍ତି ପ୍ରକାଶ କଲି ସେମାନେ ହୋଇ ଉଠିଲେ ମୋର ତିକ୍ତତମ ସମାଲୋଚକ ଓ ମୋ ନାମରେ ଅପବାଦର ପ୍ରଚାର କଲେ । ମୁଁ ଯଦି ପ୍ରକୃତରେ ଗଣିକାଙ୍କ ରୁଚିପ୍ରଦେଶ କେଳି-ପ୍ରବୀଣା ହୋଇଥା'ନ୍ତି ଏବଂ ଯଦି ସେମାନଙ୍କ କାମନାଗ୍ନିକୁ ଶାନ୍ତ କରିପାରିଥାନ୍ତି, ତେବେ ଯୌନ ଉଦାସୀନତା ଯୋଗୁ ମୁଁ ଯେଉଁ ଘୃଣା ଓ ଅପବାଦ ଅର୍ଜ୍ଜନ କରିଛି, ତାହା ଘଟି ନଥାନ୍ତା ।

## ପଇଁ ଗ୍ଲାନି

### ଚବ୍ବିଶ ବର୍ଷର ତପସ୍ୟା ଶୁଖୁଆ ଖୋଳଠରେ ଗଲା ?

ସ୍ୱାମୀ କହନ୍ତି
ଜାଦୁ ବଟିକା ଖାଇଲେ
ଅଧିକ ରମଣୀୟ ଦିଶେ ମୁଁ ।

ମୋର ଆଳାପ ହୋଇ ଉଠେ ରହସ୍ୟ ଭରା
ଶବ୍ଦ ସବୁ ଉଚ୍ଛଳ ହୋଇ ବାହାରନ୍ତି
ସ୍ୱପ୍ନର ଚହ୍ଲର ଭିତରୁ
ହଂସ ଗତିରେ…………

ଏବଂ ମୋର ପ୍ରତ୍ୟଙ୍ଗମାନେ
ଆଦର ପାଆନ୍ତି ତାଙ୍କର କାମନାକୁ ।

ଶକ୍ତିଥିଲେ ମଧୁର ନାନା-ବାଦ୍ୟ ଗୀତ ଗାଇ
ସେ ଶୁଆଇ ପକାନ୍ତେ ମୋତେ
ଗୀତର ମଧୁରତାରେ…
ସ୍ୱାମୀ କହନ୍ତି :
ଜାଦୁ ବଟିକା ଖାଇଲେ
ମୁଁ ଅଧିକ ସୁନ୍ଦର ।

ପାରମ୍ପରିକ ଦୃଷ୍ଟିରୁ ଦେଖିଲେ ମୋର ବିବାହ ବିଫଳ ହୋଇଥିଲା । ଆମ ଦୁହିଙ୍କ ମଧ୍ୟରେ ରହିଥିଲା ନୀରବତା, ଯାହା ମୋତେ ଅଖଣ୍ଡବୋଧ ହେଉଥିଲା । କେବଳ ସାନପୁଅ ବିଷୟ ନେଇ ଅଥବା ସଉଦାପତ୍ରର ହିସାବ ପ୍ରସଙ୍ଗରେ ମୁଁ ମଝିରେ ମଝିରେ ଯାହା କଥା କହୁଥିଲି, ଅଳ୍ପ କେଇଟି ଶବ୍ଦରେ । ବେଶ୍…।

ରବିବାରର ଦ୍ୱି-ପ୍ରହର ଓ ରାତିଗୁଡ଼ିକର କ୍ରୀଡ଼ା-ସାମଗ୍ରୀ ରୂପେ ମୋର ମୂଲ୍ୟ କମିଯାଇଥିଲା ଅନେକ ତଳକୁ । କାମୋତ୍ତେଜନା ଅନୁଭବ କରିବା ଦୂରେ ଥାଉ ମୁଁ ତାର ଛଳନା ମଧ୍ୟ କରିପାରୁ ନ ଥିଲି । ସ୍ୱାମୀଙ୍କ କାମବାସନାକୁ

ଚରିତାର୍ଥ କରିବା ଉଦ୍ଦେଶ୍ୟରେ ନିଜକୁ ଉପଯୁକ୍ତ କରିବା ଲାଗି ଆବଶ୍ୟକ ପଡ଼ୁଥିଲା ଶକ୍ତିଶାଳୀ ଟ୍ରାଙ୍କ୍ୱିଲାଇଜର୍‌ର ।

ଦୀର୍ଘ ବତିଶ ବର୍ଷ ଧରି, ଲୟୋଲା କଲେଜରୁ କୃତିତ୍ୱର ସହିତ ଅର୍ଥନୀତିରେ ଏମ୍. ଏ. ପାଶ୍ କରିବା ପରଠାରୁ ସେ ତ ଭାରତୀୟ କୃଷକମାନଙ୍କ ପାଇଁ ଓ ରିଜର୍ଭ ବ୍ୟାଙ୍କ୍ ପାଇଁ କାମ କରି ଆସୁଥିଲେ । ମୋର ଯାହା ମନେ-ପଡୁଛି, ଆରମ୍ଭରୁ ସେ ଥିଲେ ଜଣେ ଅଫିସ-ସମ୍ପୃକ୍ତ ଜୀବ । ଏପରିକି ଘରକୁ ସେ ଅଫିସର ଫାଇଲ୍ ଆଣୁଥିଲେ । ତାଙ୍କର ତକିଆ ତଳେ ବିଛଣା ଓ ଶଯ୍ୟାର ଉପରେ ଅଫିସ୍‌ର ଫାଇଲ୍-ପତ୍ର ରହିବାଟା ମୋ ପକ୍ଷରେ ଥିଲା ବିରକ୍ତିକର । ଫାଇଲ୍‌ଗୁଡ଼ିକୁ ମୁଁ ସଉତୁଣୀ ପରି ମନେ କରୁଥିଲି ।

ଯେତେବେଳେ ମୁଁ ଥିଲି ତରୁଣୀ ଓ ମୋର ମାନସିକ ଆବେଗର ସ୍ଥିରତା ପାଇଁ ତାଙ୍କର ସାନ୍ନିଧ ଗୃହୁଁଥିଲି ସବୁବେଳେ, ସେତେବେଳେ ସେ ମୋତେ ଛ'ମାସ ପାଇଁ ପଠାଇ ଦେଇଥିଲେ ବୁଢ଼ୀ-ମା'ଙ୍କ ନିକଟରେ ରହିବା ପାଇଁ ନୀଳପତ୍ତିକୁ, କେବଳ ତାଙ୍କ ପ୍ରିୟ ଉପରିକ ଅଫିସରଙ୍କ ଇଚ୍ଛା ଅନୁସାରେ ଗ୍ରାମ୍ୟଋଣ ଅନୁସନ୍ଧାନ ସମିତିର ବିବରଣୀକୁ ସମ୍ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ । ତାହା ହୁଏତ ବ୍ୟକ୍ତିଗତ କ୍ଷେତ୍ରରେ ଉପରିକ ଅଫିସରମାନଙ୍କ ନିକଟରେ ତାଙ୍କୁ ଦୃଢ଼ ଓ ନିର୍ଭରଯୋଗ୍ୟ ବ୍ୟକ୍ତି ରୂପେ ସୁପ୍ରତିଷ୍ଠିତ ହେବାରେ ସହାୟକ ହୋଇଥିଲା, କିନ୍ତୁ ତାଙ୍କ ଭିତରେ ଦିନେ ଯେଉଁ ଗର୍ବ ଓ ମମତ୍ୱର ସନ୍ଧାନ କରିଥିଲି ମୁଁ - ଆମଭିତରେ ଯେଉଁ ପାରସ୍ପରିକ ସ୍ନେହରେ ଢଆରି ମର୍ଯ୍ୟାଦା-ପୂର୍ଣ୍ଣ ସମ୍ପର୍କ ଦିନେ ଗଢି ଉଠିଥିଲା—ସେସବୁ ଧ୍ୱଂସ ହୋଇଗଲା ସେଥିରେ ।

ତେଣୁ ପରବର୍ତ୍ତୀ ସୋପାନରେ—ଦିନେ ଯେତେବେଳେ ସେ ମୋ ଆଗରେ ପ୍ରକାଶକଲେ ଯେ ତାଙ୍କ ଉପରିକ ଅଫିସର ବିନା କାରଣରେ ତାଙ୍କ ପ୍ରତି ନିର୍ଦ୍ଦୟ ହୋଇଛନ୍ତି, ମୁଁ କେବଳ ତାଙ୍କ ପ୍ରତି ଛଳନାପୂର୍ଣ୍ଣ ସମ୍ବେଦନା ଜ୍ଞାପନ କଲି । ଜୋର୍‌ରେ ହସିବାକୁ ମୋର ଇଚ୍ଛା ହେଉଥିଲା । କେବଳ ତାଙ୍କର ବିଷଣ୍ଣ ମୁହଁଟି ଦେଖି ମୁଁ ନିଜକୁ ଆୟତ୍ତ କରିନେଲି । ରିଜର୍ଭ ବ୍ୟାଙ୍କ୍ ପ୍ରତି ତାଙ୍କର ପରିବର୍ତ୍ତିତ ମନୋଭାବ ଦେଖି ବିସ୍ମିତ ହେଲି ମଧ୍ୟ । ରିଜର୍ଭ ବ୍ୟାଙ୍କ୍‌ର ସେବାରେ ତାଙ୍କୁ ଅକାଳ ବାର୍ଦ୍ଧକ୍ୟ ଛୁଇଁଲାଣି । ସ୍ଥାନେ ସ୍ଥାନେ ପକ୍ୱ କେଶ ତାଙ୍କର ମୁଖ ମଣ୍ଡଳକୁ ଭିନ୍ନ ଧରଣର କଲାଣି । ଦାନ୍ତଗୁଡ଼ିକ ବି ବଡ଼ ବିବର୍ଣ୍ଣ ଓ ଅସୁନ୍ଦର ଦିଶିଲାଣି । ସେସବୁ ପ୍ରତି ତାଙ୍କର ଧ୍ୟାନ ନଥିଲା । 'କୃଷି-ବିବରଣୀ' ହିଁ ଥିଲା ତାଙ୍କ ଜୀବନର ବଡ଼କଥା ।

ସହସା ବଡ଼ ଦୁଃଖ ଲାଗିଲା ତାଙ୍କ ପାଇଁ । ମୁଁ ପଚାରିଲି—"ତୁମ ଉପରିସ୍ଥ ଏପରି ନିର୍ଦ୍ଦୟ ହେବା ଓ ଏପରି ଘୃଣା କରିବାର କାରଣ କଣ ?" କ୍ଷୀଣ ସ୍ୱରରେ ସେ କହିଲେ—"ମୁଁ ଜାଣେ ନା··· । ସେ ବୋଧହୁଏ ମୋର ରଙ୍ଗ, ମୋର ଚେହେରାକୁ ଭଲ ପାଉ ନାହାନ୍ତି··· ।"

ପ୍ରତି ସନ୍ଧ୍ୟାରେ ସେ ଘରକୁ ଫାଇଲ୍ ନେଇକରି ଆସୁଥିଲେ ଏବଂ ସପ୍ତାହରେ ଥରେ ଦୂର ସହରକୁ ବିମାନଯୋଗେ ଯାଉଥିଲେ, ସାଙ୍ଗରେ କାଗଜ ପତ୍ର ନେଇ । ତଥାପି ତାଙ୍କ ପ୍ରତି ଉପରିସ୍ଥଙ୍କର ଦୟା ନ ଥିଲା, ତାଙ୍କର ଦୋଷ ଧରିବା ପାଇଁ ସେ ଛିଦ୍ର ଖୋଜୁଥିଲେ । ସ୍ୱାମୀଙ୍କୁ ବାହାର କରି ସେଇ ସ୍ଥାନରେ ଜଣେ ଆପଣାର ପ୍ରିୟଜନକୁ ବସାଇବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ମୋର ସ୍ୱାମୀଙ୍କ ମତ ଥିଲା ଯେ ବିଦେଶୀ ସାହାଯ୍ୟ ଦ୍ୱାରା କେବଳ ବଡ଼ ଧରଣର କୃଷକମାନେ ଲାଭବାନ୍ ହେବେ, କ୍ଷୁଦ୍ର କୃଷକମାନେ ଆଦୌ ଉପକୃତ ହୋଇପାରିବେ ନାହିଁ । କିନ୍ତୁ ଅମଲାତନ୍ତ୍ରରେ ସ୍ୱାଧୀନ-ଚିନ୍ତାର ସ୍ଥାନ ନାହିଁ । ଏଣୁ ତାଙ୍କୁ ଅନେକ ଅସୁବିଧା ଓ ଅପ୍ରିୟତାର ସମ୍ମୁଖୀନ ହେବାକୁ ପଡ଼ିଲା, ତାଙ୍କର ସ୍ୱତନ୍ତ୍ର ମତଟି ପାଇଁ ।

ଅନ୍ୟ ପରିବାରର ବ୍ୟକ୍ତି ହୋଇଥିଲେ ହୁଏତ ସ୍ୱାମୀ ସହଜ ଓ ସରଳ ଭାବରେ ଅନ୍ୟମାନଙ୍କୁ ଖୁସିକରି ନିଜ ଚାକିରୀ ଶାନ୍ତିରେ ବଜାୟ ରଖି ଉପାର୍ଜନ କରିପାରିଥା'ନ୍ତେ । କିନ୍ତୁ ମୋର ଓ ବଡ଼ ପୁଅର ଅଗାଧ ବିଶ୍ୱାସ ଥିଲା ସମାଜବାଦ ଉପରେ । ଆପଣା ନିକଟରେ ମଣିଷ ନିଜେ ସଚ୍ଚୋଟ ରହିବା ଉଚିତ ବୋଲି ଭାବୁଥିଲୁ ।

ଦିନେ ଉଡ଼ାଜାହାଜ ଅପେକ୍ଷାରେ ଇଣ୍ଟରନ୍ୟାସନାଲ ବ୍ୟାଙ୍କ୍‌ର ଅନେକ ଅଫିସର ଉପସ୍ଥିତ ଥିଲେ ବିମାନଘାଟି ପାରେ । ସେଠାରେ ସ୍ୱାମୀଙ୍କ ପ୍ରତି ତାଙ୍କର ଉପରିସ୍ଥ ଅତ୍ୟନ୍ତ କ୍ରୂର ବ୍ୟବହାର ପ୍ରଦର୍ଶନ କଲେ । କିନ୍ତୁ ଯୁକ୍ତିଯୁକ୍ତ କାରଣ ମଧ୍ୟ ନ ଥିଲା । ତାଙ୍କର ଅନ୍ୟାନ୍ୟ ସହ-କର୍ମୀମାନେ ଉପସ୍ଥିତ ଥିଲେହେଁ ମୂକ ଓ ନୀରବ ଦର୍ଶକ ହୋଇ ରହିଥିଲେ ଓ ଅନ୍ୟ ଆଡ଼େ ଖସିଯାଇଥିଲେ । ମୋ ସ୍ୱାମୀ ଉପାୟ ନ ଦେଖି ନିକଟସ୍ଥ ବୁଥ୍‌ରୁ ମୋତେ ଟେଲିଫୋନ୍ କଲେ । ତାଙ୍କର ସ୍ୱର ଜଣେ ରୁଗ୍ଣ ବ୍ୟକ୍ତିର ସ୍ୱରପରି ଶୁଭୁଥିଲା ସେତେବେଳେ ।

ତାଙ୍କର ବର୍ଣ୍ଣନା ଶୁଣି ମୁଁ ରାଗିଗଲି । ସେଇ ଫୋନ୍‌ରେ କହିଲି—'ତୁମେ ଇସ୍ତଫା ଦେଇ ଦିଅ । ଏଇ ମୁହୂର୍ତ୍ତରେ । ଆମେ ନିଜପଡକୁ ଫେରିଯିବା । ମର୍ଯ୍ୟାଦାର ସହିତ ସେଠି ରହିବା ।' କେତେକ ମନ୍ତ୍ରୀ, ରାଜନୈତିକ ନେତା ଓ ଲୋକସଭା ସଦସ୍ୟ ଆମର ପାରିବାରିକ ବନ୍ଧୁ ଥିଲେ । ଜଣେ ସଚ୍ଚୋଟ, ପରିଶ୍ରମୀ ଓ ପ୍ରତିଭାବାନ୍ କର୍ମଚାରୀ ପ୍ରତି ଅନ୍ୟାୟ କରାଯାଉଛି ବୋଲି ତାଙ୍କର ହୃଦ୍‌ବୋଧ ହେଲେ ହେଁ ସେମାନଙ୍କ ମଧ୍ୟରୁ କେହି ହେଲେ ସାହାଯ୍ୟ କରିବାକୁ ଆଗେଇ ଆସିଲେ ନାହିଁ । ମୋର ଛ'-ଫୁଟ ଉଚ୍ଚତା ବିଶିଷ୍ଟ ସ୍ୱାମୀଙ୍କ ତୁଳନାରେ ତାଙ୍କର ଅଫିସରଙ୍କ ଚେହେରା ଓ ବ୍ୟକ୍ତିତ୍ୱ ଥିଲା ନିତାନ୍ତ ଗୌଣ ।

ଏଇସବୁ ଘଟଣା ଦୁର୍ଘଟଣାଗୁଡ଼ିକୁ ଭୁଲିଯିବା ପାଇଁ ଅନୁରୋଧ କରିବାର ଫଳ କିଛି ନ'ଥିଲା । ଦିନକୁ ଦିନ ସ୍ୱାମୀଙ୍କର ସ୍ୱାସ୍ଥ୍ୟର କ୍ଷୟ ଘଟିଲା । ତାଙ୍କଠାରୁ ନିମ୍ନ-ଶ୍ରେଣୀର ଲୋକଙ୍କ ଦ୍ୱାରା ସେ ଏପରି ନିର୍ଯ୍ୟାତିତ ହେବା ମୋ ପକ୍ଷରେ ଓ ବଡ଼ ପୁଅ ପକ୍ଷରେ ଥିଲା ଅସହ୍ୟ । ମୁଁ ମୋର ଜିନିଷ ପତ୍ର ଧରି ସାଙ୍ଗରେ ସବାସାନ ପୁଅଟିକୁ ଧରି ଚାଲିଗଲି ମାଲବାରକୁ ।

ମୁଁ ଚାହୁଁଥିଲି—ସ୍ୱାମୀ ଇସ୍ତଫା ଦେବା କଥା ଗମ୍ଭୀର ଭାବେ ଚିନ୍ତା କରନ୍ତୁ । ମାଲବାରରେ ଆମ ଘରେ ରହିବା ବରଂ ଭଲ ବୋଲି ଚିନ୍ତାକରନ୍ତୁ । ଜଣେ ଗରୀବ ଦ୍ରାବିଡ଼ ପକ୍ଷରେ ଅନ୍ୟର ଦୟା ଅସ୍ୱାସ୍ଥ୍ୟକର ଖାଦ୍ୟ ସଦୃଶ । ଏପରି ଅବସ୍ଥାରେ ସେ ଅତି କମ୍‌ରେ ଅନୁଭବ କରିବା ଉଚିତ ବୋଲି ଭାବୁଥିଲି । ତାଙ୍କର ସହ-କର୍ମୀମାନେ ତାଙ୍କୁ ବାଛନ୍ଦ କରିଥିଲେ । ସ୍ୱାମୀଙ୍କୁ ମାତ୍ର ତିନୋଟି ଘଣ୍ଟା ମଧ୍ୟରେ ଚାକିରି ଛାଡ଼ିବାକୁ ଆଦେଶ ଦିଆଗଲା । ତାଙ୍କୁ କେହି ଜଣେ ହେଲେ ବି ସମ୍ବେଦନା ଜଣାଇଲେ ନାହିଁ । ମାନବିକ ମର୍ଯ୍ୟାଦା ଉପରେ ଆମଭଳି ଯେଉଁମାନେ ଯଥେଷ୍ଟ ଗୁରୁତ୍ୱ ଆରୋପ କରନ୍ତି, ଅନେକ ସମୟରେ ଏଇଭଳି ଏକୁଟିଆ ହୋଇଯିବାକୁ ପଡ଼େ ସେମାନଙ୍କୁ ।

ଡକ୍ଟର କେ. ଏନ୍. ରାଜାଙ୍କ ସହାୟତାରେ କାମ କରିବାକୁ ମୋ ବଡ଼ ପୁଅ ଗଲା ତ୍ରିବାନ୍ଦ୍ରମ୍ । ଏଥିରେ ମୁଁ ଆନନ୍ଦିତ ହେଲି । ଜଣଙ୍କ ସ୍ୱାତନ୍ତ୍ର୍ୟର ସଫଳ ବିକାଶରେ ସାହାଯ୍ୟ କରିବାରେ ମୁଁ ବିଶ୍ୱାସ କରେ । ବଞ୍ଚିବାକୁ ହେଲେ ନିଜକୁ ଆପଣା ବୌଦ୍ଧିକତାଠାରୁ ଦୂରେଇ ନେଲେ ଚଳିବ ନାହିଁ । ସେଥିପାଇଁ ନିଜର ସମଧର୍ମୀ ବୁଦ୍ଧି-ଜୀବୀଙ୍କ ସହିତ ଏକତ୍ର ଜୀବନ ଯାପନ କରିବାକୁ ହେବ । ସମ୍ଭବତଃ ସେଥିପାଇଁ ଭନକାନ୍ ଗ୍ରାଣ୍ଟ୍, ରୋଜର୍ ଫ୍ରାଇ, କ୍ଲାଇଭ୍ ବେଲ୍, ଲିଟନ୍ ଭର୍ଜିନିଆ ଉଲ୍‌ଫ୍, ଲିଓନାର୍ଡ଼ ଉଲ୍‌ଫ୍, ମାକ୍‌ସନ୍ ସିଡ଼୍‌ନି ଟର୍ନର୍ ଏବଂ ଅନ୍ୟମାନେ

ଏକକ ବ୍ଲୁମ୍‌ସବେରି ଗୋଷ୍ଠୀର ସଭ୍ୟ ଭାବରେ ଜୀବନ ନିର୍ବାହ କରୁଥିଲେ । ତାଙ୍କ ଗୋଷ୍ଠୀ ଭିତରକୁ ଅନ୍ୟ କାହାର ଅନୁପ୍ରବେଶକୁ ସେମାନେ ପସନ୍ଦ କରୁ ନ ଥିଲେ । କାରଣ, ସେମାନେ ଜାଣିଥିଲେ, ସେଇ ବୌଦ୍ଧିକ ଗୋଷ୍ଠୀର ସୀମା ଅତିକ୍ରମ କଲେ ସେମାନଂକୁ କେବଳ ବିଚ୍ଛିନ୍ନତା ବୋଧ ଓ ଏକାକିତ୍ୱ ବୋଧର ଯନ୍ତ୍ରଣା ଭୋଗ କରିବାକୁ ପଡ଼ିବ ।

ମାଲବାରରେ ମୁଁ ପହଂଚିଲା କ୍ଷଣି ଆତ୍ମୀୟମାନେ ମୋତେ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଲେ । କାହିଁକି ମୋସହିତ ସ୍ୱାମୀ ନାହାନ୍ତି ? ଖୋଲାଖୋଲି ଭାବରେ ଲିଖିତ ମାଲୟାଲମ୍ ଭାଷାରେ ମୋର ଯେଉଁ ଆତ୍ମ-ଜୀବନୀ ଏକ ବିଶିଷ୍ଟ ପତ୍ରିକାରେ ପ୍ରକାଶିତ ହେଉଛି, ତାହାର ପରିଣାମ ସ୍ୱରୂପ ଶେଷରେ ଏ ବିଚ୍ଛେଦ ଘଟିଚି କି ? ଦୀର୍ଘ ଚବିଶ ବର୍ଷର ବୈବାହିକ ଜୀବନ ଶେଷରେ ପରିତ୍ୟାଗରେ ଛିଣ୍ଡିଲା ନା କଣ୍ ?

କିନ୍ତୁ ସେମାନଙ୍କ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ମୁଁ ପୁରାତନ ଘରଟିକୁ ସଫା କରିବାରେ ମନଦେଲି । କାନ୍ଥରେ ଟଙ୍ଗା ହୋଇଥିବା ସବୁ ଫଟୋ ଗୁଡ଼ିକ ସନ୍ଧିରେ ସେତେବେଳକୁ ବିରୁମାନେ ବସା ବାନ୍ଧି ସାରିଥିଲେ । ବାଦୁଡ଼ି ମାନେ ସବୁ ଦିନବେଳେ କଳାଫଳ ପରି ଝୁଲୁଥିଲେ, ଓ ରାତିରେ ଘୂରି ବୁଲୁଥିଲେ । ଶିଶୁ ପୁଅଟି ସେମାନଂକୁ ଓ ବଲେଇମାନଂକୁ ଦେଖି ବଡ଼ ଡରିଗଲା । ବିଲେଇ ମୂଷା ଧରିବା ମାନେ ଯେଉଁସବୁ ଶବ୍ଦ ଓ ଚିଁ ଗୁଁ ଶୁଣାଯାଉଥିଲା ସେଥିରେ ଆମେ ମା ଓ ପୁଅ ଭୟରେ ଥରି ଉଠୁଥିଲୁ ।

ପ୍ରଥମ ଦିନ ରାତିରେ ପୁଅ କହିଲା—'ମା ଚାଲ ବମ୍ବେ ଫେରିଯିବା । 'ମୁଁ ତାକୁ ସିଲ୍‌କ ଶାଢ଼ୀରେ ଘୋଡ଼େଇ ପାଖକୁ ଟାଣିଆଣି ଶୋଇଲି । କହିଲି— "ଏଇଟା ଆମର ଘର । ଆମ ନିଜର---- ।"

ନଡ଼ିଆପତ୍ରରେ ପବନର ସଙ୍ଗୀତ ବଡ଼ ମଧୁର । ଅନ୍ୟଠି ତାହା ମିଳେନା ଶୁଣିବାକୁ । ପବନ ଭାସିଆସେ ଗଛର ଆଗ ସବୁକୁ ଛୁଇଁ ଛୁଇଁ । କେତେବେଳେ ଛୁଇଁ ଛୁଇଁ ଆସେ ଛୋଟିଆ ସରୋବରକୁ । କେତେବେଳେ ବା ଆସେ ସମୁଦ୍ରରୁ ବହିଆଣେ ମାଛର ଗନ୍ଧ । ମାଛଧରା ନୌକାର ଆଲ୍‌କାତରାର ବାସ୍ନା ବି ଭାସି ଆସେ ବେଳେ ବେଳେ ।

ଆମ କଥା ବୁଝିବା ପାଇଁ ମୁଁ ସାତଜଣ ଚାକରଙ୍କୁ ନିଯୁକ୍ତ କଲି । ଘରଟା ଖାଁ ଖାଁ ଲାଗୁଥିଲା । ସ୍ଥାନୀୟ ଲୋକେ ଘର ମଧ୍ୟରେ ଭୂତ ରହିଲାଣି ବୋଲି କହୁଥିଲେ । ଅନେକ ଗଳ୍ପ ମଧ୍ୟ ହେଇ ବିଷୟରେ ଖେଳିଯାଇଥିଲା ।

ମୋର ପ୍ରଧାନ ଗୃହକର୍ତ୍ତ୍ରୀ ବୁଢ଼ୀର ବୟସ ସତୁରି ହୋଇଯାଇଥିଲା । ସେ କହିଲା—ସହରୀ ପୋଷାକ ନ ପିନ୍ଧି ମୋର ଗ୍ରାମ୍ୟ ଓ ନାୟାର୍ ପରିବାରର ପାରମ୍ପରିକ ପୋଷାକ, ଓ ବହୁତ ବହୁତ ଗହଣା ପିନ୍ଧିବା ଉଚିତ । ନ ହେଲେ, ଗାଧୋଇଲାବେଳେ ଅନ୍ୟମାନେ ସବୁ ହସିବେ । ତା'ର କଥା ଶୁଣି ମୁଁ ବି ପାରମ୍ପରିକ ଶାଢ଼ିରେ ନିଜକୁ ଭୂଷିତ କଲି । ଶାଢ଼ୀସବୁ ଦେଇଦେଲି ଜଣେ ଟାଇପିଷ୍ଟ୍‌କୁ । କାରଣ ସେ ସହରକୁ ଯିବାପାଇଁ ଇଚ୍ଛା କରୁଥିଲା ଗୃହକର୍ତ୍ତ୍ରୀ ପାଇଁ । ମୁଁ ପୂର୍ବ-କାଳର ରମଣୀମାନଙ୍କ ଢଙ୍ଗରେ ହାତବୁଣା ଧଳାକପଡ଼ା ନିମ୍ନଭାଗରେ ଓ ଅଢ଼େଇହାତର କପଡ଼ା ଉପର ଭାଗରେ ପିନ୍ଧିଲି । ପିନ୍ଧିଲି ଧଳା ବ୍ଲାଉଜ୍ ଏବଂ ବହୁତ ସୁନାଗହଣା । କପାଳରେ ଚନ୍ଦନର ଗାର ଲଗାଇଲି ।

ଗୃହକରମାନେ ମଧ୍ୟ ମୋ ଉପରେ ଖୁସି ଥିଲେ । ଆମର ପୂର୍ବର ଜମିସବୁକୁ ପୁନର୍ବାର ଦଖଲକୁ ଆଣି ଆରମ୍ଭ କଲି କୃଷି । ହଳିଆ—ମୂଲିଆଙ୍କ ସହିତ ଗଳି ଚାଲକୁ । ଆଣୁ ଏ କାଦୁଅରେ ଠିଆହୋଇ ସେମାନଙ୍କୁ ଆପ୍ୟାୟିତ କରିବା ଲାଗି ଗାଥା-ଗୀତିକା ବୋଲିଲି । ସେମାନେ ବି ଖୁସିରେ ଚିତ୍କାର କଲେ—“ଆମ ନାଲାପତ୍ତର ସାଆନ୍ତାଣୀ ଫେରି ଆସିଛନ୍ତି ।” ସେତେବେଳେ—ଘରଠାରୁ, ଜମିଠାରୁ ଓ ଗାଁର ଗଛ-ଲତାଠାରୁ ଦୂରରେ ରହି, ବମ୍ବେ କଲିକତା ଓ ଦିଲ୍ଲୀରେ ବିତାଇଥିବା ବର୍ଷଗୁଡ଼ିକ ପାଇଁ ଅନୁତାପ କଲି ମୁଁ ।

ଏକଦା ନାଲାପତ୍ତର ସବୁ ବଡ଼ ଗଛଗୁଡ଼ିକର ଗଣ୍ଡିରେ ଭୂମିରୁ ଦୁଇଫୁଟ ଉଚ୍ଚରେ ଛୁରି ସାହାଯ୍ୟରେ ଖୋଦିତ ହୋଇଥିଲା ମୋ ନାଁ । କିନ୍ତୁ ସେସବୁ ମଧ୍ୟରୁ କେବଳ ନିର୍ମଳି ଗଛ ବ୍ୟତୀତ ଆଉ କୌଣସିଟି ନ ଥିଲା । ସବୁ କଟାହୋଇ ସାରିଥିଲା । ଏକଦା ଯେଉଁଠି ବହଳିଆ ଗଛମାନଙ୍କର ଗୁଚ୍ଛ ଥିଲା, ତାହାସବୁ ଦିଶୁଥିଲା ଫାଙ୍କା ଓ ନିର୍ଜୀବ । ମୋତେ କାନ୍ଦ ଲାଗିଲା ତା' ଦେଖି । ଏପରିକି ମୋ ବୁଢ଼ୀ-ମାଙ୍କ ଶୟନ କକ୍ଷ ନିକଟକୁ ଯେଉଁ ପୁରାତନ ଆମ୍ବଗଛଟି ଥିଲା ତାହା ବି ଆଉ ସେଠି ନ ଥିଲା । ବୁଢ଼ାପା ଓ ବୁଢ଼ୀମାଙ୍କ ଆବେଗ ସହିତ ସଂଶ୍ଳିଷ୍ଟ ଥିଲା ଗଛଟି । ତା'ର ମୃତ୍ୟୁ ମୋ ବୁଢ଼ୀ-ମାଙ୍କ ଅନୁପସ୍ଥିତିପରି ଥିଲା ମୋ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ । ଯେମିତିକି ଆଉ ଗୋଟିଏ ବୁଢ଼ୀ-ମାର ମୃତ୍ୟୁ ହୋଇଯାଇଛି ।

ପୁରାତନତାର ସଙ୍କେତ ଖୋଜି ଖୋଜି ମୁଁ ଜଣେ ହଜିଲା ରମଣୀ ପରି ଘୂରି ବୁଲିଲି । ଶୈଶବର ଘରକୁ ତା ଥିଲା ମୋର ଭାବାତ୍ମକ ଯାତ୍ରା । ନୈର୍ବ୍ୟକ୍ତିକ

ସହରକୁ ମୁଁ ଆଉ ଫେରିବାକୁ ଚାହୁଁ ନଥିଲି । ଚାହୁଁ ନ ଥିଲି ସହରର ଆତଙ୍କ ଓ ଆଶଙ୍କା ପୂର୍ଣ୍ଣ ପରିବେଶକୁ ପ୍ରତ୍ୟାବର୍ତ୍ତନ । ପୁନର୍ବାର ମୁଁ ଉପନୀତ ହୋଇଥିଲି ଅଭ୍ରାନ୍ତ ଅବସ୍ଥାରେ ।

ସର୍ପ-ବେଢୀକୁ ପରିଷ୍କାର କରାଇ ଦେଲି । ଜାଳିଲି ସେଠି ପଥରର ଦୀପ । ବଢ଼େଇ ତାକି ଅମାରଟିକୁ ମରାମତି କରିଦେଲି । ବୁଢ଼ୀ-ମାଙ୍କ ସମୟରୁ ତା' ଭିତରେ ଶସ୍ୟ ରହି ଆସୁଥିଲା । ସାନପୁଅଟା ବି ବଢ଼େଇ ଠାରୁ କାରିଗରି କାମ ଶିଖିନେଲା । ଦୁଇଟି ଗାଈ ମଧ୍ୟ କିଣା ହେଲା ।

ଆମର ଶାନ୍ତି ବିଷୟରେ ଆଉ କିଛି କହିବାକୁ ନ ଥିଲା । ଛୁଟିରେ ଆସି ସ୍ୱାମୀ ଆମକୁ ମୋଟା ସୋଟା ହୋଇଯାଇଥିବା ଦେଖିଲେ । ରିଜର୍ଭ ବ୍ୟାଙ୍କ୍‌ରୁ ଇସ୍ତଫା ଦେଇ ସେ ମଧ୍ୟ ଆମ ସହିତ ରହିବାକୁ ଆଗ୍ରହ ପ୍ରକାଶ କଲେ । କିନ୍ତୁ, କହିଲେ—"ଆଉ ବର୍ଷେ ଟିଏ ଅପେକ୍ଷା କରିବା । ଚନେନ୍‌ର କଲେଜ ପଢ଼ା ସରୁ । ବମ୍ବେରେ ରହିବା ଆମର ଉଚିତ ନ ଥିଲା, ନିଶ୍ଚୟ ... ।"

ତାଙ୍କର ମତ ଥିଲା ଯଥାର୍ଥ । ସହରର ରଙ୍ଗୀନ ଶାଢ଼ୀ ପିନ୍ଧିବା ମୋ ପକ୍ଷରେ ଆଦୌ ଉଚିତ ନ ଥିଲା । କେବଳ ଶୁଭ୍ର ବସନ ଓ ଗହଣା ହିଁ ସବୁବେଳେ ମୁଁ ପିନ୍ଧି ରହିଥା'ନ୍ତି । ରିଜର୍ଭ ବ୍ୟାଙ୍କ୍‌ର ଗୋଟିଏ କ୍ଷୁଦ୍ର ଫ୍ଲାଟ୍‌ର ଗୃହିଣୀ ହେବା, ସମାନ୍ୟ ସଉଦା ପଇସର ଖର୍ଚ୍ଚ ପାଇଁ ଚିନ୍ତିତ ହେବା କିଣ୍ ଆମର ଦରକାର ଥିଲା ? ନଲ୍ଲପଡର ପବିତ୍ରତାରେ ଗଢ଼ିଉଠିଚି ମୁଁ ଏବଂ ନଲ୍ଲପଡ ହେଉଛି ମୋର । ଅନ୍ୟମାନଙ୍କ ହାତରେ ଘରଟିର ପରିଚାଳନା ଭାର ଦେଇ ମୁଁ ଭୁଲ୍ ହିଁ କରିଥିଲି । ଘରର ଆତ୍ମା ସେଥିରେ ଆହତ ହୋଇଥିଲା । ତାହାରି ଆତ୍ମାର ରକ୍ତ ମୋତେ ହିଁ ବାନ୍ଧିବାକୁ ପଡ଼ିଥିଲା ନିର୍ବୋଧ ଭାବରେ ।

# ଛୟାଳିଶି

## କେବଳ ଧନୀମାନେ ମୋତେ ଘୃଣା କରୁଥିଲେ ଓ
## ମୋ ନାମରେ ଅପବାଦ ରଟନା କରୁଥିଲେ···

ବିଶେଷ ହୃତ୍-ଚିକିତ୍ସା-କେନ୍ଦ୍ର
ଯେଉଁଠି ସବୁ ମାଛ ଆଖିପରି
ଅନାବୃତ ବଲ୍ବ ଜଳୁଥା'ନ୍ତି,

କାନ୍ଥର ବାହାରେ ଶୀତ ଯେ କ୍ରମେ ପଡ଼ିଲା
ଓ ଦିନ ଯେ
ବିଚ୍ଛୁରିତ ହୋଇ ପଡ଼ିଲାଣି
ଜନାକୀର୍ଣ୍ଣ ପଥ ସବୁରେ
ତା' ପ୍ରତି ଭ୍ରୂ-କ୍ଷେପ ନାହିଁ ।

ବିଶେଷ ହୃତ୍-ଚିକିତ୍ସା କେନ୍ଦ୍ର
ଯେଉଁଠି କ୍ଳାନ୍ତ ପଥିକ ଶିବିର ପକାଏ,
ତା' ପାଇଁ ମରୁ-ଝଡ଼, ଶୀତକ ଲାଗି

ବିଶ୍ରାମ ଆଉ ଥରେ ଓଟ ପିଠିରେ ବସିବା ପୂର୍ବରୁ
ଉତ୍ତପ୍ତ ବାଲୁକା ପଥ ଅତିକ୍ରମ କରିବା ପାଇଁ,
ଯେଉଁଠି ପ୍ରତ୍ୟେକ ଧଳା ତମ୍ବୁରେ ଶୁଅନ୍ତି
କର୍କଶ ମରୁ ଚନ୍ଦ୍ରର ତଳେ,
ବେକଯାଏଁ କନ୍ଦରେ ପୋତି ହୋଇ,
ଯେପରିକି ଶିରସ୍ତ୍ରାଣ-ସ୍ଥାନ ମଧ୍ୟରେ
ସେ ପ୍ରତୀକ୍ଷା କରୁଛି କାର୍ଯ୍ୟାଦେଶର,

ଏବଂ ବିଛଣା ତଳେ ଦର-ଗଢ଼ା ଦୁଃସ୍ୱପ୍ନମାନେ,

ଏବଂ ଦୂରରେ ଖାମଖିଆଲ ବାଦ୍ୟନାଦ ପରି
ହୃଦୟ ଧକ ଧକ;

ଏଇ ନୃତ୍ୟ-ଚକ୍ରଯନ୍ତ୍ରା-କେନ୍ଦ୍ର :
ଯେଉଁଠିକି କଳା ବର୍ଣ୍ଣର ଡେଙ୍ଗା ଡାକ୍ତର
ଆସନ୍ତି, ଅର୍ଦ୍ଧରାତ୍ରରେ,
ନିରୀକ୍ଷଣ ପାଇଁ, ଧଇଁସଇଁ,
ସ୍ୱପ୍ନରୁ ଉଠି;

ଆଖିରେ ତାଙ୍କ ବଲ୍ବ ଝଲ୍‌ଝଲ୍ କରେ,
ତାଙ୍କର ବସ୍ତୃସ୍କ ମୂର୍ଦ୍ଧ ଝଲ୍‌ଝଲ୍ କରେ
ତକିଆ ଉପରେ ମୁଣ୍ଡ ତାଙ୍କର
ଗଡ଼ୁଥାଏ ଓ ଆଖିର ଭ୍ରୂ-ଲତାରେ
ନିଦ ସଞ୍ଚରେ,
ତାଙ୍କ ବଳିଷ୍ଠ କାନ୍ଧ,
ତାଙ୍କ ଆଣ୍ଠୁ, ଏବଂ ଗାଇପରି
ମୁଣ୍ଡ ହଲାନ୍ତି ସେ ଓ ଗୁଳିଯାଆନ୍ତି···

ଆମ ରାଜ୍ୟର ଗୁରୁଜମାନେ ନୈତିକତା ସମ୍ପର୍କରେ ମୋର ନବୀନ ଧାରଣାକୁ ସମର୍ଥନ କରୁଥିଲେ । କିନ୍ତୁ ମୋର ଆତ୍ମୀୟଙ୍କର ମୁଁ ଥିଲି ଚକ୍ଷୁ-ଶୂଳ । କାରଣ ତାଙ୍କର ସମ୍ମାନ ପକ୍ଷରେ ମୁଁ ଏକ ଆତଙ୍କ ବୋଲି ସେମାନେ ମନେ କରୁଥିଲେ ।

ମାତ୍ର ଦୁଇ ଦଶନ୍ଧି ପୂର୍ବେ ମାଲବାରରେ ପ୍ରଚଳିତ ରାଜା-ରାଜୁଡ଼ାଙ୍କ ଶାସନ ମଧ୍ୟରେ ସେମାନେ ବଢ଼ିଥିଲେ, ଏବଂ ଅନେକଙ୍କର ତାହା ଅସ୍ଥି-ମଜ୍ଜାଗତ ହୋଇଯାଇଥିଲା । ସେମାନେ ସବୁ ଥିଲେ ସ୍ୱଚ୍ଛଳ ଏକାନ୍ନବର୍ତ୍ତୀ ପରିବାରର ଅନ୍ତର୍ଗତ । ଅବସର ଥିଲା ପ୍ରଚୁର, ଏବଂ ଦାସ-ଦାସୀଙ୍କ ଯୁବତୀ କନ୍ୟାମାନଙ୍କ କୋମଳ ରସରେ ଚରିତାର୍ଥ ହେଉଥିଲା ସେମାନଙ୍କର ଦୁର୍ବାର କାମଲାଳସା । ମୁଁ କାଳେ ସେମାନଙ୍କର ଅ-କୀର୍ତ୍ତି ବିଷୟରେ ଲେଖିଦେବି ବୋଲି ସେମାନେ ଡରୁଥିଲେ । ଯଥାର୍ଥରେ ଯାହାସବୁ ଅନୀତି ପଦବାଚ୍ୟ ସେସବୁ ତ ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କର ବାହୁତଳେ ହିଁ ଘଟିଯାଉଥିଲା ।

ସେମାନେ ଆପତ୍ତି ଜଣାଇଲେ ମୋ ବାପା-ମାଙ୍କ ନିକଟରେ । କେବଳ ଅପଦସ୍ଥ ନୁହେଁ ସେମାନେ ଅସହାୟ ହୋଇ ପଡ଼ୁଥିଲେ । କାରଣ ସେମାନେ

ଜାଣିଥିଲେ ଯେ ମୁଁ ସତକଥାହିଁ ଲେଖିବି ଓ ନିଜର ପୁଅଙ୍କଠାରୁ ମୁଁ ମୋ ଲେଖାକୁ ଅଧିକ ଭଲପାଏ ବୋଲି । ଯଦି ଆବଶ୍ୟକ ପଡ଼େ ସ୍ୱାମୀ ଓ ପୁତ୍ରଙ୍କୁ ପରିତ୍ୟାଗ କରି ଲେଖିକା ରୂପେ ଜୀବନଯାପନ କରିବାକୁ ମୁଁ ବାହାରି ଯିବାକୁ ମଧ୍ୟ ପ୍ରସ୍ତୁତ ।

ମୋ ଲେଖା ଉପରେ ମୋର ମଧ୍ୟ ନିୟନ୍ତ୍ରଣ ନ ଥିଲା । କେତେକ ଋତୁରେ କାହାକୁ ଅପେକ୍ଷା ନ କରି ଦେହରେ ଯିମିତି ପ୍ରକାଶ ପାଇଲା ପରି ଲେଖା ଆସିଯାଉଥିଲା ଆପେ ଆପେ । ସନ୍ଧ୍ୟାର ଅନ୍ଧାରରେ ଗ୍ରାମର କେତେକ ବୟସ୍କ ବ୍ୟକ୍ତି ଆସୁଥିଲେ ମୋ ଘରକୁ ଓ ଆରାମଚୌକିରେ ବସି ରହୁଥିଲେ । ଯେହେତୁ ସ୍ୱାମୀ ନ ଥିଲେ, ଓ କେତେକ ପ୍ରେମ ଘଟଣା ବିଷୟରେ ମୁଁ ଆତ୍ମ-କଥାରେ ସ୍ପଷ୍ଟ ଲେଖିଥିଲି, ସେଥିପାଇଁ ସେମାନଙ୍କର ଉଦ୍ଦେଶ୍ୟ ଥିଲା ଭିନ୍ନ ଧରଣର । ଅବଶେଷରେ ଚାକର-ଚାକରାଣୀଙ୍କ ସହାୟତାରେ ମୋତେ ସେମାନଙ୍କୁ ବିନା ଗଣ୍ଡଗୋଳରେ ବିଦା କରିବାକୁ ପଡ଼ୁଥିଲା ।

ଦିନକୁଦିନ ମୋର ଶତ୍ରୁସଂଖ୍ୟା ବଢ଼ିବାକୁ ଲାଗିଲେ । ପ୍ରଥମ କେଇ ସପ୍ତାହରେ ତା' ମୁଁ ଜାଣିପାରି ନ ଥିଲି । ଥରେ, ଆଞ୍ଚଳିକ ଚଳଚ୍ଚିତ୍ର ପୁରସ୍କାର ସମିତିର ଏକ ଅଧିବେଶନରେ ଯୋଗଦେବା ଲାଗି ମୁଁ ତ୍ରିବାନ୍ଦ୍ରମ୍ ଯାଇଥିଲି । ସେଇ ଅବକାଶରେ ମୋତେ ତୁଣିଗାରେଡ଼ି ବଳରେ ମାରିବାର ଉପାୟ କରି ସେମାନେ ମୋ ଘର ଆଗର କୌଣସି ଏକ ସ୍ଥାନରେ ଏକ ଶ୍ମଶାନର ଆଟିକା ପୋତିଦେଲେ । ଚାକରମାନେ ମୋତେ ସମ୍ବାଦ ଦେଲେ, କିନ୍ତୁ ନ ଜାଣିଲା ଭଳି ରହିବାକୁ ମୁଁ ଉଚିତ ମନେ କଲି । ଦିନେ ଆମ କୂଅ ମୂଳରେ ଗୋଟିଏ ମୁଣ୍ଡହୀନ ବିଲେଇର ଶବ ପଡ଼ିଥିବା ଦେଖାଗଲା । ନିକଟକୁ ଯାଇ ଦେଖିଲି,— ତା' ସହିତ ଲଗିଚି ଖଣ୍ଡିଏ ତମ୍ବାପାତ, ଯେଉଁଥିରେ ମୋ ନାମ ଖୋଦିତ ହୋଇଚି । ତା'ଛଡ଼ା ଗୋଟିଏ ଅଣ୍ଡା, କିଛି ହଳଦି ଏବଂ ସିନ୍ଦୂର ଭଳି ଦିଶୁଥିବା ଆଉରି ମେଞ୍ଚାଏ କଣ ଲଗିଚି ତା' ଦେହରେ । ଅପ-ଶକ୍ତିଗୁଡ଼ିକୁ ଘଉଡ଼େଇବା ପାଇଁ ମୁଁ ମଧ୍ୟ କିଛି ଗୁଣି-ଝୁଣିର ସାହାଯ୍ୟ ନେବାକୁ ଠିକ୍ କଲି । ବାଲ୍‌କୋନିର କାନ୍ଥରେ ଟାଙ୍ଗିଲି କାଳୀଙ୍କର ଫଟୋଟିଏ । ପ୍ରତିଦିନ ଲାଲ୍‌ଫୁଲର ଲମ୍ବା ମାଳକରି ଝୁଲାଇଲି କାଳୀଙ୍କର ବେକରେ । ଫୁଲସବୁ ମଣିଷର ଅନ୍ତବୁଜୁଳା ଭଳି ଦିଶୁଥିଲା ଦୂରକୁ । ଦୂରରେ ଧାନ ବିଲର କଡ଼େ କଡ଼େ ଯାଉଥିବା ଲୋକଟି ବି ଦେଖିପାରୁଥିଲା ସେ ଦୃଶ୍ୟ । ସେଇ ଦୃଶ୍ୟ ଗ୍ରାମବାସୀଙ୍କୁ ଭୟଭୀତ କଲା ।

ଭଲ ଧରଣର କୁକୁରଟିଏ ରଖିବା ପାଇଁ ଇଚ୍ଛା କଲି, କିନ୍ତୁ ପାଇଲି ନାହିଁ । ଅନେକ ଚାକର ରଖିଲି । ତା' ଭିତରୁ ଦୁଇଜଣ ଶତ୍ରୁଙ୍କଠାରୁ ଲାଞ୍ଚ

ଖାଇ ମୋତେ ବିଷ ଦେବାକୁ ଯୋଜନା କଲେ । କିନ୍ତୁ ଗରିବ ଲୋକମାନେ ଯାହାଠାରୁ ଶ୍ରଦ୍ଧା ପାଇଥା'ନ୍ତି ତା' ପ୍ରତି ନିର୍ଦ୍ଦୟ ଓ ନିଷ୍ଠୁର ସହଜରେ ହୋଇ ପାରନ୍ତି ନାହିଁ । ସେମାନେ ମୋତେ କେବଳ ଅଳ୍ପ ମାତ୍ରାରେ ବିଷ ଦେଇ ପାରିଥିଲେ । ସକାଳେ ସୁସ୍ଥ ଓ ଜୀବିତ ଅବସ୍ଥାରେ ମୁଁ ଯେତେବେଳେ ପାହାଚରୁ ଓହ୍ଲାଇ ଆସିଲି, ମୋତେ ଦେଖି ସେମାନଙ୍କ ମୁହଁରେ ଏକ ପ୍ରକାର ଆଶ୍ୱସ୍ତିର ଭାବ ଖେଳି ଯାଇଥିବା ମୁଁ ଲକ୍ଷ୍ୟ କଲି ।

ଚାକରମାନେ ମୋତେ ଶ୍ରଦ୍ଧା କରୁଥିଲେ । ମୂଲିଆମାନେ ଶ୍ରଦ୍ଧା କରୁଥିଲେ । ଘୃଣା କରୁଥିଲେ କେବଳ ଧର୍ମ ବ୍ୟକ୍ତିମାନେ । ସେଇମାନେ ହିଁ ମୋ ନାମରେ ନାନା ପ୍ରକାର ଅପବାଦ ରଚନା କରୁଥିଲେ ।

ପ୍ରକୃତରେ ମୋ ଜୀବନ ଥିଲା ସରଳ ଓ ଜଟିଳତାବିହୀନ । ସକାଳେ ଚାକରାଣୀ ମୋ ପାଇଁ ଗୋଟିଏ ଟ୍ରେ-ରେ ଚା' ସରଞ୍ଜାମ ଧରି ଆଣୁଥିଲା । ଚା'ପରେ ମୁଁ ଫୁଲ ଓ ପରିବା ପରୀକ୍ଷା କରିବାକୁ ଯାଉଥିଲି । ଗାଈଙ୍କୁ ଖାଇବାକୁ ଦେଉଥିଲି ନିଜେ । ତା'ପରେ—ଗାଧୁଆ ବେଳଯାଏଁ ସାନ ପୁଅ ସହିତ କିଛି ନା କିଛି ଖେଳ ଖେଳୁଥିଲି । ତେଲ ଲଗାଇ ଗାଧୁଆ ପରେ ଠାକୁର ଘରେ ପୂଜା ଓ ପ୍ରାର୍ଥନା । ଗଣପତି, ସୂର୍ଯ୍ୟ ଓ ଲକ୍ଷ୍ମୀ ଥିଲେ ମୋର ପୂଜ୍ୟ । ଜଣେ ନାମ୍ବୁଦ୍ରି ବ୍ରାହ୍ମଣ ତାଙ୍କ ଯଥା ରୀତିରେ ପ୍ରତିଦିନ ପୂଜା କରୁଥିଲେ । ବାରଟା ବେଳେ ଖାଇବା ଓ ଅପରାହ୍ନର ଚା'—ଆସିବା ଯାଏଁ ଶୋଇବା—ପରେ ମୁଁ ଘଣ୍ଟାଏ କାଳ ବସି ଲେଖୁଥିଲି କିମ୍ବା ସଂସ୍କୃତ ପଢୁଥିଲି । ତା'ପରେ—ଫୁଲକୁ ଓ ଗଛଗୁଡ଼ିକର ତଳେ ତଳେ ସାନ ପୁଅକୁ ଧରି କିଛି ସମୟ ବୁଲାବୁଲି । ସାଢ଼େ ସାତଟାରେ ରାତ୍ରି-ଭୋଜନ । ପରେ—ରାତି ନ'ଟା ଯାଏଁ ପଢ଼ାପଢ଼ି ।

ଏପରିକି ମିସେସ୍ ଗ୍ରଣ୍ଡି ମଧ୍ୟ ମୋ ନୀତି ଦୋଷ-ଯୁକ୍ତ ବୋଲି କହିପାରି ନ ଥାନ୍ତେ । କିନ୍ତୁ ଗାଁ-ସାରା ଚାଲିଥିଲା ମୋର ବିଷୟରେ ଫୁସ୍-ଫାସ୍ । ମୋର କୋମଳ ମନରେ ସେ ସବୁର ଆଘାତ ଥିଲା ପ୍ରଚଣ୍ଡ । ସେଇସବୁ ଅସହ୍ୟ ବେଦନା ଦିନେ ରୂପ ପାଇଲା ସାଂଘାତିକ ହୃତ୍-ପୀଡ଼ାରେ । ହୃଦ୍-ରୋଗରେ ଆକ୍ରାନ୍ତ ହୋଇ ମୁଁ ଛଟପଟ ଭାବରେ ଭୂମିରେ ଶୋଇପଡ଼ିଲି । ମୋର ଶିଶୁ ପୁଅ ଟ୍ରଙ୍କ୍-କଲ୍ କଲା ଭାଇଙ୍କୁ । ଭାଇ ମୋହନ ଦାସ କାଲିକଟ୍‌ରୁ ଆସିଲେ । ସେ ମୋତେ ନର୍ସିଂ ହୋମ୍‌କୁ ନେଇଗଲେ ।

କାର୍‌ରେ ତିନି ଘଣ୍ଟାର ବାଟ । ପୁଅ ମୋ ପାଖରେ ହାତଧରି ବସି ଅବିରଳ କ୍ଷୀଣ ସ୍ୱରରେ କାନ୍ଦୁଥାଏ । ମୁଁ ନିଜକୁ କହିଲି—ନା' ମୁଁ ମରିବାକୁ

ପ୍ରସ୍ତୁତ ନୁହେଁ । ଏଇ ସୁନ୍ଦର ଶିଶୁଟି ମାତୃହରା ହେବା ଉଚିତ ନୁହେଁ । ମୋର ଧ୍ୟାନ ଅମଳ ହେବା ଦରକାର । ନୂତନ ରୂପେ ମୁଁ ମୋର ଜୀବନ ଏଇମାତ୍ର ଆରମ୍ଭ କରୁଛି ତ କରୁଛି ।

କାଲିକଟ୍‌ରେ ଏକ ଘରୋଇ ଚିକିତ୍ସା ସଦନରେ ମୁଁ ଭର୍ତ୍ତି ହେଲି । ଚିକିତ୍ସା ସଦନର ମାଲିକ ଥିଲେ ଆମ ଦେଶର ଜଣେ ଶ୍ରେଷ୍ଠ ହୃତ୍-ରୋଗ ବିଶେଷଜ୍ଞ । ଅବସ୍ଥା ଆୟତ୍ତ ହେବାପରେ ମୋତେ ଏକ ଭିନ୍ନ କୋଠରୀରେ ରଖାଗଲା । ତାହାର ଝରକା ଦେଇ ଦିଶୁଥିଲା ଲାଲ୍ ସଡ଼କଟିଏ । ମୁଁ ବିଛଣା ଉପରେ ବସି ତାହା ଦେଖି ପାରୁଥିଲି ।

ସେଇ ରାସ୍ତାରେ ରଙ୍ଗୀନ ଲୁଗାପଟା ପିନ୍ଧି ଲୋକମାନେ ଯା-ଆସ କରୁଥିଲେ,—ବେଳେ ଅଧେ କାରଟିଏ । ମୋ କୋଠରୀର ଦ୍ୱାର ଦେଶରେ— 'ନୋ ଭିଜିଟରସ୍'—ଫଳକ ଝୁଲୁଥିଲା ଅର୍ଥାତ୍, କେହି ମୋତେ ଦେଖା କରିବା ମନା । ଏଣୁ ମୃତ୍ୟୁ ମଧ୍ୟ ପଶିପାରୁ ନ ଥିଲା ଭିତରକୁ । କିନ୍ତୁ ଦିନେ—ଦିପହର ବେଳେ ମୁଁ ସ୍ୱପ୍ନ ଦେଖିଲି ଯେ ମୃତ୍ୟୁ ଗୋଟିଏ କାଠହଣା ପକ୍ଷୀ ରୂପରେ ଆସି ଥଣ୍ଟ ମାରେ ଲାଗିଚି ମୋର ହାଡ଼କୁ । କିଛିକ୍ଷଣ ପରେ ପକ୍ଷୀଟି ହୋଇଗଲା ଗୋଟିଏ ପାଣି-କୁଆ ଏବଂ ପରେ ମୋର ରକ୍ତର ନଈକୁ ଗୋଳିଆ କରିବାକୁ ଲାଗିଲା ଆଉ ଗୋଟିଏ ଗ୍ରେଟ ପକ୍ଷୀ, ଯେ କି ପଡ଼ିଯାଇଥିଲା ଜାଲରେ ··· ।

ନିଦ ଭାଙ୍ଗିଗଲା । ଝାଳ ବୋହିଗଲା ଦେହରୁ । ଗୃହସେବିକା ଆସି କହିଲା —'କେହି ଜଣେ ଯୁବକ ମୋତେ ଦେଖା କରିବାକୁ ବାରମ୍ବାର ଆସିଥିଲା । ତା ବହିରେ ତୁମର ସ୍ୱାକ୍ଷର ସେ ରଖିବାକୁ ଚାହେଁ ।'

ମୁଁ ଯୁବକଟିର ସ୍ୱର ଶୁଣିପାରିଲି । ଭଲଲାଗିଲା, ଡାକେଇ ପଠେଇଲି । ନାଁ' ପଚାରିଲି । ଯୁବକ ଜଣକ କହିଲା—ମୋହନ···ମୁଁ ନୀରବତାକୁ ପସନ୍ଦ କରେ । ମୁଁ ଲେଖିଦେଲି—'ନୀରବତା ମଧ୍ୟରେ ତୁମେ ନିରାପଦ ରୁହ, ମୋହନ !' ନୀରବ ରହି ପାରିବାର କ୍ଷମତା ଦେଖି ମୋତେ ଯୁବକଟି ପ୍ରତି ଈର୍ଷା ଜାତ ହେଉଥିଲା । ଶବ୍ଦ ଦ୍ୱାରା, ମୁଁ ନଷ୍ଟ କରିଛି ମୋର ଜୀବନକୁ । ଏକ ଶୁଦ୍ଧ କରଣର ନୃତ୍ୟ ପାଇଁ ମୁଁ ଶବ୍ଦଗୁଡ଼ିକୁ ତରବାରୀପରି ବ୍ୟବହାର କରିଚି ସିନା, ନିର୍ବୋଧ ଭାବରେ ରକ୍ତପାତ ହୋଇଚି ଅନେକ ।

ପରଦିନ ସକାଳେ—ଯୁବକ ଜଣକ ନିକଟରୁ ଆସିଲା ଅନେକ ଗୋଲାପ ଫୁଲର ଉପହାର—ବଡ଼ ବଡ଼ ଗୁଚ୍ଛ ଆକାରରେ । ମୋତେ ଭଲ ଲାଗିଲା ।

ଅନେକ ସମସ୍ୟାଧର ଦେଖିଲି । ରଖିଲି ଝରକା ପାଖରେ । ମୁଁ ଉପହାର ଦେଇଥିବା ବ୍ୟକ୍ତିଙ୍କୁ ଦେଖିବାକୁ ଚାହିଁଲି ଓ ତାଙ୍କ ଫୁଲଗୁଡ଼ିକ ମୋତେ ଦେଇଥିବା ଆନନ୍ଦ ପାଇଁ ତାଙ୍କୁ ଧନ୍ୟବାଦ ଦେବାକୁ ଚାହିଁଲି । କିନ୍ତୁ ଦିନେ ବି ସେ ଆଉ ମୋତେ ଦେଖାଦେଲେ ନାହିଁ ।

ତିନି ସପ୍ତାହର ବିଶ୍ରାମ ପରେ ମୁଁ ଡାକ୍ତରଙ୍କୁ ଅନୁରୋଧ କଲି ମୋତେ ଘରକୁ ପଠାଇ ଦେବାକୁ । କାରଣ ଧାନ ଅମଳ ସମୟ ହୋଇଯାଇଥିଲା । ମୋ ସଫଳତାର ଗୌରବ ଅନୁଭବ ପାଇଁ ମୁଁ ସେଠାରେ ଉପସ୍ଥିତ ରହିବାକୁ ଚାହୁଁଥିଲି ।

କାର୍‌ରେ ଘରକୁ ଗଲାବେଳେ—ପାହାଡ଼ ନିକଟରେ ଦେଖିଲି ବୁଢ଼ା ଗୋରୁମାନଙ୍କୁ କାଟିବା ପାଇଁ ନିଆଯାଉଛି । ତାଙ୍କର ପାଚଲା ଶିଙ୍ଗ ଓ କାନ୍ଧର ସିନ୍ଦୂର ଦାଗ ମୋତେ ସ୍ପଷ୍ଟ ଦିଶୁଥିଲା ।

ମୋର ଇଚ୍ଛା ହେଉଥିଲା—କାର୍‌ରୁ ଓହ୍ଲେଇ ସେଇ ଗୋରୁମାନଙ୍କ ସାଙ୍ଗରେ ଯିବାକୁ । ମଣିଷମାନଙ୍କୁ ତ କେବେ କେହି ପାଚିଲା ଲୁହାରେ ଲାଞ୍ଛିତ କରେନା । ସେମାନଙ୍କୁ କେବଳ ଔଷଧ ଓ ହୃତ୍-କମ୍ପନର ପ୍ରମାଣପତ୍ର ଦେଇ ଘରକୁ ବିଦା କରି ଦିଆଯାଏ ।

# ପ୍ରତିଚ୍ଛବି

## ରାତରେ ସାଇକେଲ୍ ଚଢ଼ି ଆସିଲେ ଗୁଣିଆ

ଧ୍ୱସ୍ତ ଗହ୍ୱର ଶିଳାଖଣ୍ଡ ମଧ୍ୟରୁ
ଯାଉଁଚି ନିଅ ମୋର ଭଙ୍ଗା ମୁହଁ
ତୁମ ବଧୂର ମୁହଁ,
ଯାହା ସମୟର ପ୍ରଭାବରେ ବଦଳି ଯାଇଚ ସାମାନ୍ୟ ।

ମୋର ବ୍ୟର୍ଥ ମଧୁ-ଯାମିନୀ କଥା
ମୁଁ ମନେ ରଖିବିନି ।
ତୁମେ ଓ ମୁଁ
ଆମେ ଉଭୟେ ଏପରି ଜଟିଳ ।

ସେତେବେଳେ ମୋତେ ଭଲ ପାଇବା
ଯଦି ଥିଲା କଠିନ
ଏବେ ତା' କଠିନତର ।

କିନ୍ତୁ ତନେ ମୋତେ ଭଲପାଅ,
ସତଷଠୀ କଲୋ ଓଜନର ବୟସ୍କ ମାଂସକୁ
ଭଲପାଅ,
ଭଲପାଅ ମୋର ନଷ୍ଟ ଯକୃତକୁ
ହୃତ୍‌ପିଣ୍ଡ ପ୍ରଭୃତିକୁ
ହଁ, ତନେ ମୋତେ ଭଲପାଅ

ଅରୁଚିଏ ଦେଖାଅ ମୋତେ
କପର ହୋଇଥାନ୍ତା ଆମ ଜୀବନ
କେବଳ ଯଦି ତୁମେ ମୋତେ ଭଲପାଇଥା'ନ୍ତ ।

ନର୍ସିଂ ହୋମ୍-ରୁ ଫେରିବା ପରେ ମୋ ପକ୍ଷରେ ବଞ୍ଚିବା କଷ୍ଟକର ହୋଇପଡ଼ିଲା । ମୋ ପାଖରେ ରହି ଦେଖାଶୁଣା କରିବା ଲାଗି ବଡ଼ପୁଅ ଆସିଥିଲା । ସାନ ପୁଅକୁ ମିଳିମିଳା ହେବାରୁ ସଂସର୍ଗ ଫଳରେ ସେ ମଧ୍ୟ ଆକ୍ରାନ୍ତ ହୋଇ ପଡ଼ିଲା । ଉଭୟଙ୍କୁ ପ୍ରଚଣ୍ଡ ଜ୍ୱର ହେଲା । ଉଭୟଙ୍କ ମୁହଁରୁ ଲାଲ୍ ରଙ୍ଗର କ୍ୟୋଡ ବାହାରୁଥିଲା ।

ତଥାପି ମୋର ବାମ ପଟରେ ଯନ୍ତ୍ରଣା ଥିଲା ଏବଂ ସେଥିପାଇଁ ଯେଉଁ ଔଷଧ ଖାଇବା କଥା ତା' ଖାଇବାକୁ ମୋର ଇଚ୍ଛା ନ ଥିଲା। କାରଣ ମୁଁ ପୁଅ-ମାନଙ୍କ ଯନ୍ତ୍ରଣା ପାଖରେ ଜାଗ୍ରତ ରହିବାକୁ ଚାହୁଁ ଥିଲି । ସେମାନେ ବି ଆକ୍ରାନ୍ତ ଓ ଲେହବର୍ତ୍ତି ଆଖିରେ ମୋତେ ଜଳ ଜଳ ଚାହିଁ ରହୁଥିଲେ ।

ତାଙ୍କର ଉତ୍ତାପ କମାଇବାକୁ ଗାଁ-ରେ ବି ବରଫ ମିଳୁ ନ ଥିଲା । କେବଳ କନା ଖଣ୍ଡିଏ ଓଦାକରି ତାଙ୍କ କପାଳରେ ଦେଉଥିଲି ଓ ଶୁଖିଗଲେ କାଢ଼ି ଆଣୁଥିଲି । ମୁଁ ଡରିଗଲି । ମୋର ଆତ୍ମ-ପ୍ରତ୍ୟୟ ମଧ୍ୟ କମିଗଲା । ଘରଣୀ ପରାମର୍ଶ ଦେଲି—'ବୋଧହୁଏ ଶତ୍ରୁମାନେ କିଛି ଗୁଣି କରିଛନ୍ତି।' ତା'କଥା ମାନି ମୁଁ ଗୁଣିଆ ଡକେଇ ପ୍ରତି-ଗୁଣିର ବ୍ୟବସ୍ଥା କରିବାକୁ ବାଧ୍ୟ ହେଲି ।

ରାତିରେ ସାଇକେଲ୍ ଚଢ଼ି ଆସିଲେ ଗୁଣିଆ । ତାଙ୍କୁ ବାଲ୍‌କୋନିକୁ ପଠେଇ ଦିଆଗଲା । ସେଠାରେ ସେ ଘର କାଟିଲେ, କଉଡ଼ି ବୁଣିଲେ ଓ ଗଣନା

କଲେ । ଗୁଣିଆ ଥିଲେ ଜଣେ ଯୁବକ, ବେଶ୍ ହୃଷ୍ଟପୁଷ୍ଟ, ଝିଲପିବାଲା । ତାଙ୍କର ଶରୀର ବେଶ୍ ଉଜ୍ଜ୍ୱଳ ଦିଶୁଥିଲା । ବେକରେ ଗୋଟିଏ ମୋଟା ଧରଣର ସୁନାହାର ପକାଇଥିଲେ । ସେ ମୋତେ ତିନିଖଣ୍ଡି ସୂତା ଦେଲେ; ଖଣ୍ଡିଏ ମୋ ହାତରେ ବନ୍ଧାହେବ ଓ ଦୁଇଖଣ୍ଡି ଦୁଇ ପୁଅଙ୍କର । ସେ କହିଲେ—ଆମର ମୃତ୍ୟୁ ପାଇଁ ଶତ୍ରୁମାନେ ମହାମାରଣର ବ୍ୟବସ୍ଥା କରିଛନ୍ତି, ଗୁଣି ବଳରେ । କିନ୍ତୁ ଆମେ ତୁମ ପୁଅଙ୍କୁ ବଞ୍ଚାଇବାର ଉଦ୍ୟମ କରିବା ।

ମୁଁ ତାଙ୍କୁ କୋଡ଼ିଏଟି ଟଙ୍କା ଦେଲି । ତାଙ୍କର କଥା ଓ ଆଶ୍ୱାସନା ପାଇଁ ସେତିକି । ସୂତାଗୁଡ଼ିକ ପୁଅମାନଙ୍କ ହାତରେ ବନ୍ଧାଗଲା । ଦୁର୍ବଳତା କାରଣରୁ ସେମାନେ ପ୍ରତିରୋଧ କରିପାରିଲେ ନାହିଁ । କିନ୍ତୁ, ରାତିସାରା ଦୀର୍ଘ ଛ'ଘଣ୍ଟା କାଳ ଉନ୍ନିଦ୍ର ରହି ମୁଁ ଖାଲି ସେସବୁର ଯଥାର୍ଥତା ନେଇ ଭାବିଲି । ପ୍ରଭାତ ପୂର୍ବରୁ ମୁଁ ସେସବୁକୁ ଛିଣ୍ଡେଇ ପକେଇ ଦେଲି ଝରକା ଆରପଟକୁ । ଅବଶେଷରେ ଟେଟ୍ରାସାଇକ୍ଲିନ୍ ଯୋଗେ ପୁଅମାନେ ସୁସ୍ଥ ହେଲେ ।

ମୋ ବାମପଟ ସ୍ତନରେ ଯନ୍ତ୍ରଣା ସବୁବେଳେ ଲାଗିରହିଥିଲା । ତେଣୁ ସ୍ୱାମୀଙ୍କୁ ଖବର ପଠାଇଲି । ତତ୍‌କ୍ଷଣାତ୍ ସେ ବମ୍ବେରୁ ଆସିଲେ । ପାହାଚରେ ତାଙ୍କ ଓଜନିଆ ପାଦ ଶବ୍ଦ ଶୁଣିବା ମାତ୍ରେ ଆନନ୍ଦରେ ଆଁତିଶଯ୍ୟରେ ମୁଁ ତାଳିମାରି ନାଚି ଉଠିଲି । ଏଥର ମୋର ଆଉ ଚିନ୍ତା ନାହିଁ । ସାନପୁଅ କହିଉଠିଲା ତାଙ୍କୁ—'ତୁମ ସହିତ ଆମକୁ ବମ୍ବେ ନେଇଯାଅ । ନହେଲେ ଆମେ ଏଠି ମରିଯିବୁ ।'

ଜଣେ ମର୍ମାନ୍ତିକସ୍ପୃଷ୍ଟ ଓ ଗୃହକରିଚରିର କଣ୍ଠରେ ଜମି-ଜମା ଓ ସମ୍ପଦ ଛାଡ଼ି ମୁଁ ପୁନର୍ବାର ବମ୍ବେ ଗଲି । ବହୁତ ପରୀକ୍ଷା କରିସାରିଥିଲି ଜୀବନରେ । ଦରକାର ଥିଲା ଏକ ଶାନ୍ତ ସ୍ୱାଭାବିକ ଜୀବନ ଯାତ୍ରା । ଆଣ୍ଠୁ-ଗଣ୍ଠି ବାତ ଜ୍ୱରରେ ପୀଡ଼ିତ ଥିବା ମୋ ପୁଅ ଦୁଇବର୍ଷ କାଳ ପେନ୍‌ସିଲିନ୍ ନେବା ପରେ ସୁସ୍ଥ ହେଲା । ସେ ନିଜେ ସ୍କୁଲ୍ ଯିବାକୁ ଚାହିଁଲା । ତା'ପାଇଁ ଆବଶ୍ୟକ ଥିଲା ଗୋଟିଏ ସ୍ନେହ-ପୂର୍ଣ୍ଣ ବିଦ୍ୟାଳୟ । ଆଗରୁ ସେ ଯେଉଁ ସ୍କୁଲ୍‌କୁ ଯାଉଥିଲା, ସେଠାର ଶିକ୍ଷକମାନେ ପିଲାଙ୍କର ବ୍ୟକ୍ତିଗତ ଅଭାବ ଅସୁବିଧା ପ୍ରତି ଦୃଷ୍ଟି ଦେଉ ନ ଥିଲେ । ସ୍ୱାମୀ ତାକୁ ଡନ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇ ଦେଲେ ।

ବହୁତ ଖୁସିରେ ସେ ଘରକୁ ଫେରି କହିଲା—"ଆମ୍ମା ! ମୋ ଶିକ୍ଷକ ମୋତେ ବଡ଼ ସ୍ନେହ କରୁଛନ୍ତି ।" ମୁଁ ତାକୁ ରୋଗଶଯ୍ୟାରୁ ଉଠି କୁଣ୍ଡେଇ ପକାଇଲି ଓ ଈଶ୍ୱରଙ୍କୁ ଦୟା ପାଇଁ ଅଶେଷ କୃତଜ୍ଞତା ଜ୍ଞାପନ କଲି । ପୁଅ ତାର ସବୁ ଶିକ୍ଷକଙ୍କୁ

ଭଲ ପାଉଥିଲି । ଏପରି କି ଦେହ ଖରାପ ଥିଲେ ବି ସ୍କୁଲ୍ ଯିବା ଲାଗି ମୋ ନିକଟରେ ଅଳି କରୁଥିଲି । ପ୍ରତି ସପ୍ତାହର ଶେଷରେ ଗୋଟିଏ ମିନି-ପତ୍ରିକା ସେ ସମ୍ପାଦନା କରୁଥିଲି । ତା'ନାମ ଥିଲା—ଉତ୍ସାହନସ୍ମା । ସେଥିରେ ସେ ଛଦ୍ମ-ନାମରେ ଗପ ଓ ପଦ୍ୟ ଲେଖୁଥିଲି ।

ମୁଁ କୃପଣ ପରି କେବଳ ଲେଖା-ଲେଖିରେ ହିଁ ମୋର ଶକ୍ତି ବ୍ୟୟ କରୁଥିଲି, କାରଣ ଲେଖାଲେଖି ହିଁ ଥିଲା ମୋ ଜୀବନରେ ସବୁଠାରୁ ପ୍ରିୟ । ବିଛଣାରେ ତକିଆ ଭରା ଦେଇ ବସି ମୁଁ ଟାଇପ୍ କରୁଥିଲି । ମୋ ବ୍ୟକ୍ତି ଜୀବନର ଅଭିଜ୍ଞତା ପୂର୍ଣ୍ଣ କରିଥିଲା ମୋର ଅନେକାନେକ ଅଜ୍ଞତାକୁ । ମୁଁ ଗୃହୁଁଥିଲି ପାଠକଙ୍କ ସମ୍ମୁଖରେ ତାହାର ଉପସ୍ଥାପନା ।

ମୋର ନାସ୍ତିକ୍ୟ ମୋର ପରିବାରର ଅନ୍ୟାନ୍ୟ ସଭ୍ୟଙ୍କୁ ନିଶ୍ଚୟ ଏକ ଅପଦସ୍ଥ ଅବସ୍ଥାର ସମ୍ମୁଖୀନ କରିବା ନିଶ୍ଚିତ ଥିଲା, କାରଣ ତାହା ଥିଲା ଅତି ଉଜ୍ଜ୍ୱଳ ଭାବରେ ଆଲୋକିତ ଏକ ଆକ୍ୱେରିଅମ୍‌ର ସୁନା-ରଙ୍ଗର ମାଛ ପରି, ଯାହାର ଚଲାବୁଲାର କ୍ଷେତ୍ର ଲୁକ୍‌କାୟିତ ରହିବା ଆଦୌ ସମ୍ଭବ ନୁହେଁ ।

ମୁଁ ଅନେକ ସମୟରେ ଚିନ୍ତା କରିଚି ଯେ ନିଜକୁ ଅଲଗା କରିନେଇ,—ମୋର ସମସ୍ତ ଅଙ୍ଗକୁ କାନ୍‌ଭାସ୍ ଉପରେ ଏକାଠି ରଖି ଉପହାର ଦେବି ପାଠକଙ୍କୁ । ଗୋପନ ବୋଲି ମୁଁ କିଛି ରଖିନାହିଁ । ଏଣୁ ଯେତେବେଳେ ମୁଁ କାନ୍ଦିଛି, କାନ୍ଦିଛନ୍ତି ମୋର ପାଠକମାନେ । ଯେତେଥର ବଧୂ ବେଶରେ ସଜ୍ଜିତ ହୋଇ ମୋ ପ୍ରେମିକର ଘରକୁ ମୁଁ ଯାଇଚି, ମୋ ସହିତ ଗ୍ଲଲିଛନ୍ତି ପାଠକମାନେ । କୈଶୋରର ଯେଉଁଦିନରୁ ମୋର ପ୍ରଥମ ଗଳ୍ପ ଛପା ହୋଇଚି ସେଇଦିନରୁ ସେମାନଙ୍କ ଦୃଷ୍ଟି ମୋ ଉପରେ ରହି ଆସିଥିବା ମୁଁ ଅନୁଭବ କରିଚି । ମୋ ଘୋର ବିବାଦ ଘନେଇ ଉଠିଚି ସେଇ ଦିନରୁ । ସର୍ବଦ୍ରଷ୍ଟା ଈଶ୍ୱରଙ୍କ ପରି ସେମାନେ ମୋତେ ଅନୁସରଣ କରି ଆସୁଛନ୍ତି ଏଯାବତ୍ ।

ଅସୁସ୍ଥି ଓ ଲେଖାଲେଖି ଯୋଗୁ କୌଣସି ଏକ ଦ୍ୱୀପରେ ନିର୍ବାସିତ ବ୍ୟକ୍ତି ପରି ମୁଁ ଜୀବନଯାପନ କରିବାକୁ ଲାଗିଲି । ସହଜରେ କେହି ମୋତେ ଦେଖା କରିପାରୁ ନ ଥିଲେ । ତାଙ୍କୁ ଭିନ୍ନ ଭାବରେ ଓ ଭିନ୍ନ ମନନେଇ ମୋ ନିକଟକୁ ଆସିବାକୁ ପଡ଼ୁଥିଲା । ସେମାନଙ୍କୁ ନୌକା କମ୍ପା ଢଙ୍ଗରେ ଆସିବାକୁ ପଡ଼ୁଥିଲା । ମୋର ପ୍ରାର୍ଥନା ଓ ନୀରବ ଧ୍ୟାନ ମୋତେ ଯତ୍କିଞ୍ଚିତ୍ ଅସ୍ପଷ୍ଟ ଭାବରେ—ଟେଲିପାଥିକ୍—ହେବାରେ ସାହାଯ୍ୟ କରିଥିଲା । ମୋତେ ଶ୍ରଦ୍ଧା କରୁନଥିବା କୌଣସି ବ୍ୟକ୍ତି ବୈଠକଖାନାକୁ ଆସିବା ମାତ୍ରେ ମୁଁ

ଜାଣିପାରୁଥିଲି ଓ ତାଙ୍କୁ ଦେଖା କରିବାକୁ ମନା କରି ଦେଉଥିଲି । ମୁଁ ନିଜ ଭିତରେ ନିଜେ ମଗ୍ନ ହୋଇ ରହୁଥିଲି । ଓଝାରି ଆଣୁଥିଲି ନିଜକୁ ସବୁଆଡ଼ୁ ନିଜ ଭିତରକୁ, ଓ କର୍ମ-ସ୍ଥଳୀ ତଥା ଶୟନ-କକ୍ଷକୁ ରୁଦ୍ଧକରି ତାରି ଭିତରେ ରହିଯାଉଥିଲି ।

କେବଳ ଶ୍ରଦ୍ଧା ଓ କରୁଣା ହିଁ ମୋର ପ୍ରୟୋଜନ ଥିଲା । କୌଣସି ପ୍ରକାରର ଘୃଣାଭାବ ମୋର ସାଧନାକୁ ନଷ୍ଟ କରିବାର ଆଶଙ୍କା ରହିଥିଲା । ମୁଁ ଶ୍ରୀବାଳ ବ୍ରିଜ୍ କରିବା ଯେଉଁ ସାମାନ୍ୟ କ୍ଷମତା ଦରକାର ସେତିକ ବି ମୋର ନ ଥିଲା । ତେଣୁ ମୋତେ ମନେ ମନେ ଘୃଣା କରୁଥିବା ଅଥଚ କେବଳ କୌତୂହଳ ବଶତଃ ମୋତେ ସାକ୍ଷାତ କରିବାକୁ ଆସୁଥିବା ପରିଦର୍ଶକମାନଙ୍କ ସହିତ କେବଳ ଗପିବା ପାଇଁ ସୋଫାରେ ବସି ମୁଁ ମୋ ଶକ୍ତିର ଅପଚୟ କରିବାଟା ନିଶ୍ଚୟ ବିବେକ ଉଚିତ କାର୍ଯ୍ୟ ହୋଇ ନ ଥାନ୍ତା । କ୍ରମେ କ୍ରମେ, ସବୁ ଅବୌଦ୍ଧିକମାନେ ମୋଠାରୁ ଦୂରେଇ ରହିବାକୁ ଆରମ୍ଭ କଲେ । କେବଳ ଯଥାର୍ଥ ବନ୍ଧୁମାନେ ହିଁ ଆସିଲେ । ତାଙ୍କର ସାକ୍ଷାତରେ ଆନନ୍ଦ ଓ ଶାନ୍ତି ଲଭ କଲି ।

ସପ୍ତାହରେ ମୁଁ ପ୍ରାୟ ଏକ ହଜାର ଶବ୍ଦ ଟାଇପ୍ କରୁଥିଲି । ସମ୍ପାଦକ ମାନେ ମୋତେ ଯେଉଁସବୁ ବିଷୟରେ ଲେଖିବାକୁ କହୁଥିଲେ, ତାହା ମୁଁ ଲେଖୁଥିଲି । ଯଦିଓ ମୁଁ ଜାଣିଥିଲି—ସାଧାରଣ ଯୋଗ୍ୟତା ଦୃଷ୍ଟିରୁ ମୁଁ ଅଶିକ୍ଷିତା ଓ ଭାବ-ଗମ୍ଭୀର ବିଷୟବସ୍ତୁଗୁଡ଼ିକ ଉପରେ କଲମ-କ୍ଷେପ କରିବାରେ ମୋର ଅଧିକାର ନାହିଁ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ଧରଣର ପାଠକଙ୍କୁ ମୁଁ ସନ୍ତୁଷ୍ଟ କରିପାରୁଥିଲି । ସେମାନେ ମୋତେ ଓ ମୋର ସଳୋଟ ଦୃଷ୍ଟିକୋଣକୁ ପସନ୍ଦ କରୁଥିଲେ । ଘରଣୀ ଭାବରେ ମୁଁ ତ ନିଶ୍ଚୟ ଅଯୋଗ୍ୟ ଥିଲି । ଗ୍ଲ'-ପାନ୍ଧଟିଏ ଉଠାଇବାକୁ ହେଲେ ବି ମୋତେ ନିଃଶ୍ୱାସ ନେବାକୁ ପଡ଼ୁଥିଲା । କେବଳ ମୋ ପକ୍ଷରେ ସମ୍ଭବ ଥିଲା ଲେଖିବା । ଲେଖା ଲେଖିରୁ ମୁଁ ନିଶ୍ଚିତ ଭାବେ ଆନନ୍ଦ ପାଉଥିଲି ।

`

# ଅଠଗ୍ରୋକଶି

## ପୁରାତନ କ୍ଷୁଧା ଚରିତାର୍ଥ ହେଲା

ପହଁରି ଶିଖିଲେ
ପଣନା ସେ ନଈକୁ ଯେଉଁ ନଈ
ବହି ଯାଉନ ସମୁଦ୍ରକୁ ,
ଯେ ଲକ୍ଷ୍ୟ କଣ୍ ଜାଣେ ନା,
ସିଏ ଖାଲି ଜାଣିଛି ବହିଯିବା
ଠିକ୍ ରକ୍ତର ଶ୍ରାନ୍ତ ସ୍ରୋତ ପରି
ଯହିଁରେ ଭାସୁଥାଏ ପୁରାତନ ସ୍ମୃତିର୍ ଫେଣ ସବୁ,

କିନ୍ତୁ ଯାଅ, ସମୁଦ୍ରରେ ପହଁରିବ
ପହଁରି ସେ ବିଶାଳ ନୀଳ ସମୁଦ୍ରରେ
ସେଠି ଯେଉଁ ପ୍ରଥମ ଲହଡ଼ିକୁ ତୁମେ ଭେଟିବ
ତା' ତୁମର ଦେହ,
ତୁମର ପରିଚିତ-ଦେହର ଉତ୍ତାପ ସବୁ...

କିନ୍ତୁ ଅତିକ୍ରମ କରିବାର କୌଶଳ
ଯଦି ତୁମେ ଜାଣିଥାଅ,
ତୁମେ ତେବେ ନିରାପଦ,
ହଁ, ତା'ପରେ ନିରାପଦ

କାରଣ...ବୁଡ଼ିଗଲେ ବି
ସେତେବେଳେ ଆଉ ଦୁଃଖ କରିବାକୁ
କିଛି ନ ଥିବ... ।

ଅସୁସ୍ଥ ଅବସ୍ଥାରେ ମୋର ଶୈଶବ ସ୍ମୃତି ଜାଗି ଉଠୁଥିଲା, ତା' ସହିତ ଆସୁଥିଲା ନଲିପଡ଼ର ଛବି । ଅନେକ ମୃତ ଅଥଚ ପରିଚିତଙ୍କ ସ୍ୱର-ଶବ୍ଦ ସହିତ ନଲିପଡ଼ର ଅନେକ ଚିହ୍ନା-ପରିଚିତ ଦୃଶ୍ୟାବଳୀ ଆଚ୍ଛନ୍ନ କରୁଥିଲା ମୋର ମାନସକୁ ।

ଆମ ଘର ପଛ ପଟରେ ଯେଉଁ ପୁଷ୍କରଣୀ ଥିଲା ଘଣ୍ଟା ଘଣ୍ଟା ଧରି ତା'ର ପାଣିରେ ମୁଁ ଖେଳୁଥିଲି, ଦୁଇ ବାହୁରେ ପାଣି ଛଟକା ମାରି । ପୋଖରୀର ପାଣି ଉପରପାଖ ବିଛେଇ ହୋଇ ପଡୁଥିଲା ଖରା । କଇଁମାନେ ପହଁରୁଥିଲେ । ମାଛମାନେ ଗୁହୁଁଥିଲେ ମୋତେ । କିନ୍ତୁ ସେତେବେଳେ ମୋ ମନରେ ଟିକିଏ ବି ଡର ନ ଥିଲା । ଆନନ୍ଦ ବି କଣ୍ ମୁଁ ଜାଣି ନଥିଲି । କେବଳ ଏକ ଅଜଣା ଶାନ୍ତି ଅନୁଭବ କରୁଥିଲି ମୁଁ ।

ଶୁଭ୍ର-ମୁକ୍ତା ପରି ସଦାବେଳେ ଉଜ୍ଜ୍ୱଳ ଥିଲା ମୋର ସ୍ୱପ୍ନ । ସେସବୁ ମରଣଶୀଳ ମନେହେଉ ନ ଥିଲା । କିନ୍ତୁ ସନ୍ଧ୍ୟା ଆସିଲେ, ସାପ କାଢ଼ି ଗୁଡ଼ିଲାପରି ମୋର ସ୍ୱପ୍ନ ସବୁ ଝଡ଼ିଯାଉଥିଲା । ନାନାବିଧ ସାମୟିକ ପାପ ବିଷୟରେ ସଚେତନ ପୃଥିବୀରେ ମୁଁ ପହଞ୍ଚି ଯାଉଥିଲି ଓ ଶୁଣୁଥିଲି ଆଲୋଚନା । ଜଣେ ସାଧାରଣ ମଣିଷ ପରି ସାଧାରଣ ଦୃଷ୍ଟିକୋଣ ନେଇ ଓ ସାଧାରଣ ପରିଚୟ ଘେନି ମୁଁ ଜୀବନ ନିର୍ବାହ କରିବାକୁ ଗୁହୁଁଥିଲି ହୁଏତ ଝଡ଼ିଯିବା ପର୍ଯ୍ୟନ୍ତ, କିନ୍ତୁ ମୁଁ ଖୋଜି ବୁଲୁଥିଲି ଆଉ ଜଣକୁ ଯେ ହେବ ମୋର, ମୋର ଆପଣାର, ହୁଏତ ସେ ମୋତେ ଭଲପାଇବ କିମ୍ବା ଧ୍ୱଂସ କରିଦେବ କିନ୍ତୁ ଯେ ମୋ ସହିତ ଯାପନ କରିବ ଅସ୍ପଷ୍ଟ-ଆଲୋକିତ ପୃଥିବୀର ପ୍ରହର ଗୁଡ଼ିକ ।

ମୋର ଶରୀର ଧ୍ୱଂସ ହୋଇ ସାରିଥିଲା, ଆଉ ସମ୍ଭବ ନ ଥିଲା ପୁନର୍ଜାଗରଣ । କିନ୍ତୁ ମୋ ଶରୀର ରୋଗ ଶଯ୍ୟାରେ ନିଷ୍ଟଳ ହୋଇ ପଡ଼ିଥିଲା-ବେଳେ, ମୋର ମନ ବାହାରି ପଡ଼ୁଥିଲା ଏକ ପଶୁ ପରି ଓ ସତର୍କ ହୋଇ ରହୁଥିଲା । ନିଦ୍ରାଠାରୁ ବିଦାୟ ଘେନି ଆସିଥିଲା ସେ । ମୋର ସମସ୍ତ ପୁରାତନ କ୍ଷୁଧା ଚରିତାର୍ଥ ହୋଇ ସାରିଥିଲା । ଏପରିକି ପୃଥିବୀର ସୁନ୍ଦର-ତମ ପ୍ରରୂପ ପ୍ରତି ବି ମୋର କାମ-ପ୍ରବୃତ୍ତି ଜାଗି ଉଠିବାର ସମ୍ଭାବନା ନ ଥିଲା ।

ସକାଳେ ଫୁଟି ସନ୍ଧ୍ୟାରେ ମୁଦ୍ରିତ ହୋଇ ଯାଉଥିବା କୌଣସି ସରୋବରର ପଦ୍ମ ଯଦି ହୁଅନ୍ତି ମୋର କାମନାମାନେ, ବର୍ତ୍ତମାନ ସେଇ ପଦ୍ମମାନେ ସଂପୂର୍ଣ୍ଣ ମୃତ, ପଚା ଓ ଦ୍ରବୀଭୂତ, ଯାହାଙ୍କ ପକ୍ଷରେ ଆଉଥରେ ଫୁଟିବାରେ ସମ୍ଭାବନା ହିଁ ନ ଥିଲା । ସରୋବରରେ ଆଉ କିଛି ହେଲେ ଜନ୍ମିବାର ଅବସ୍ଥା ନ ଥିଲା । ବିରାଜମାନ କରୁଥିଲା ପ୍ରଶାନ୍ତି ।

ଯଦି କେବେ ବାପା-ମା ମୋତେ ଜୀବନର କେଉଁ ପଥ ଠିକ୍ କେଉଁ ପଥ ଭୁଲ୍ ବିଷୟରେ ଚେତେଇ ଦେଇଥାନ୍ତେ, ତେବେ ମଧ୍ୟ ମୁଁ ଯେଉଁ ପଥରେ ଗତି କରିଆସିଛି ସେଇ ପଥରେ ହିଁ ଆସିଥାନ୍ତି । ମୋର ବିଶ୍ୱାସ, ଜ୍ଞାନ ଜୀବନକୁ

ପୀଡ଼ିତ କରେ । କେବଳ ନିର୍ଗ୍ରପଦ ରହିବା ଲୋଭରେ ମୁଁ କେବେହେଲେ ଜୀବନକୁ କେତେକ ନୀତି-ବାକ୍ୟରେ ଝୁଲାଇ ଫାଶୀ ଦେଇ ପାରି ନ ଥାନ୍ତି । ମୁଁ ଯାହା ଲେଖିଚି ତାହା ସହିତ ମିଶି ରହିଚି ମୋର ଜୀବନ । ମୋତେ ନିର୍ଗ୍ରପଦ ସ୍ଥାନକୁ ନେଇଯିବା ପାଇଁ ଯେତେବେଳେ ଯେଉଁ ନୌକା ଆସି ପହଞ୍ଚିଚି, ସେସବୁକୁ ଜାଣି ଜାଣି ଜାଳିଦେଇଚି ମୁଁ ।

ଅବଶେଷରେ ମୁଁ ଜୀବନରୁ ପାଇଲି କଣ୍ ? କେବଳ ଏତିକି ଆଶା ଯେ ମୋର କେତେକ ପାଠକ ଅଛନ୍ତି । ଭଲପାଆନ୍ତି ସେମାନେ ମୋ ବହି ପଢ଼ିବାକୁ । ଯଦିଓ ସେମାନେ ଖବର ଦେବାକୁ ଇଚ୍ଛାକରି ନାହାନ୍ତି ମୋତେ । କେବଳ ସେଇମାନଙ୍କ ପାଇଁ ମୁଁ ଲେଖି ଚାଲିଚି । ଅବଶ୍ୟ, ଅନେକ ଗାଳି-ଭର୍ତ୍ସନା ଚିଠି ଆସୁଚି । ମୁଁ ନୀତିବାଦୀମାନଙ୍କର ନାକ ମୋଡ଼ି ଦେଇଚି । କିନ୍ତୁ ମୋର ଅଭିନୟ ସମାପିତ । ଦର୍ଶକମାନେ ଫେରିଗଲେଣି ସେମାନଙ୍କର ବିଛଣାକୁ । ହସିବା ସରିଗଲାଣି । ଭୁଲିଗଲେଣି ସବୁ, ତାଙ୍କର ପାରିବାରିକ ଜଞ୍ଜାଳର ଚାପରେ ।

ମଞ୍ଚର ପାଦ-ପ୍ରଦୀପ ଓ ପ୍ରହସନକୁ ସ୍ମରଣ କରିବାକୁ ତାଙ୍କର ସମୟ ବା କାହିଁ ? ମୁଁ ଜନସାଧାରଣଙ୍କ ପାଇଁ ଜୀବନରେ କଣ୍ କରିଚି ବୋଲି ମୋତେ ଅନେକ କମ୍ୟୁନିଷ୍ଟ୍ ବନ୍ଧୁ ପଚାରନ୍ତି । ସାମାଜିକ ଚେତନାର ସହିତ ମୋର କଣ୍ ଲେଖିବା ଉଚିତ ନ ଥିଲା ? କେବଳ ଗରିବ ଓ ନିଷ୍ପେଷିତଙ୍କ ପାଇଁ ଲେଖିବା କଣ୍ ଉଚିତ ନ ଥିଲା ମୋର ? ମୁଁ କେବଳ ନୀରବ ରହିଯାଏଁ ।

ସକାଳେ ଗରିବମାନେ ଅଦୃଶ୍ୟ ଗାତମାନଙ୍କରୁ ଅସହ୍ୟ କ୍ଷୁଧାର ବୋଝ ବହନ କରି ବାହାରି ଆସନ୍ତି ଓ ଖାଦ୍ୟ ଅନ୍ୱେଷଣ କରନ୍ତି ବୁଲି ବୁଲି । ସୁସ୍ଥଥିଲେ ବାରଣ୍ଡାରେ ଠିଆହୋଇ ମୁଁ କେବଳ ସେମାନଙ୍କୁ ଲକ୍ଷ୍ୟ କରେ ।

ମୁଁ ପାଗଳୀ ତରୁଣୀଟିକୁ ଲକ୍ଷ୍ୟ କରେ । ଲଫଙ୍ଗା ଶ୍ରେଣୀର ଲୋକଙ୍କ ଦ୍ୱାରା ସେ ନିର୍ଯାତିତା ହୁଏ । ଶୋଇପଡ଼େ ସେ ଗୋଟିଏ ଗଛମୂଳରେ, ଅର୍ଦ୍ଧ-ନଗ୍ନ ଅବସ୍ଥାରେ ଦିନ ପରେ ଦିନ ଗଡ଼ିଚାଲିବା ସହିତ ତା' ମୁହଁର ରେଖା ବି ସବୁ କ୍ରମେ ସ୍ପଷ୍ଟ ହୋଇଯାଏ । ସେ କାହାର କନ୍ୟା ? କେଉଁ ଭୁଲ୍ ଠିକଣାରେ ଗୁଡ଼ିଆସିଚି ସେ ତାର ବାପା-ମାଙ୍କୁ ? ଦିନେ ଦିନେ ସକାଳେ ସେ ସଂପୂର୍ଣ୍ଣ ଉଲଗ୍ନ ଅବସ୍ଥାରେ ଆମଘର ଦେଇ ଯାଏ । ହସର ରେଖାଟିଏ ଲାଗି ରହିଥାଏ ଓଠରେ । ଆମେ ତାକୁ ଶାଢ଼ୀ କମ୍ବା କୋଟ୍ ଖଣ୍ଡିଏ ଦେଲେ ସେ ଗ୍ରହଣ କରେ, କିନ୍ତୁ ଦାତାର ମୁହଁକୁ ଭୁଲ୍ ରେ ବି ଚାହେଁନା ସେ ।

ଯେମିତି କି ଆକାଶ ହିଁ ତା' ଉପରେ ଭଲ ଲୁଗାପଟା ବର୍ଷିବ ବୋଲି ତାର ଆଶା ।

'ଭେଲ୍ ପୁରଓ୍ୱାଲ' ହାତଟଣା ଗାଡ଼ି ଦୋକାନ ପାଖରେ ଗରିବ ଶ୍ରେଣୀର ପିଲାମାନେ ଭିଡ଼ ଜମେଇବା ମୁଁ ଲକ୍ଷ୍ୟ କରିଛି । ଧନୀ ଲୋକଙ୍କ ଖାଇବା ଦେଖିବାରେ ହିଁ ସେମାନଙ୍କର ଆନନ୍ଦ । ତାଙ୍କର ବିସ୍ମୃତବନ୍ତ ଆଖି ଓ ସୁଦୀର୍ଘ ଧ୍ୟାନ ମୁଁ ଲକ୍ଷ୍ୟ କରିଛି । ସ୍ୱଭାବ ଓ ପରମ୍ପରା ଦୃଷ୍ଟିରୁ ଗରିବମାନେ ଭାଗ୍ୟବାଦୀ । ନ ହେଲେ ଆମେ ଆତ୍ମକୈନ୍ଦ୍ରିକ ଓ ସ୍ୱାର୍ଥପରମାନେ କେଉଁଠି ଥାଆନ୍ତୁ । ଆମର ସମସ୍ୟା ତ ଓଜନ ବଢ଼ିଯିବାର ସମସ୍ୟା, ଚିକସର ସମସ୍ୟା ଓ ବର୍ଣ୍ଣଭେଦର ସମସ୍ୟା ।

ଏତେବେଳକୁ ଗରିବମାନେ ଘୂର୍ଣ୍ଣିପରି ଜାଗି ଉଠି ଆମକୁ ସବୁ ତଳତଳାନ୍ତ କରି ସାରିଥାନ୍ତେ । ଆମ ଦେହର ଅଧିକ ମାଂସକୁ ହାଡ଼ରୁ ବାହାର କରି ସେମାନେ ଫିଙ୍ଗିଦେଇ ସାରିଥାନ୍ତେ ଅଳିଆଗଦାରେ । ହଁ, ବିଭିନ୍ନ କାନ୍ଥରେ ଲିଖିତ ସ୍ଲୋଗାନ୍ ସବୁ ଦେଖୁଛି । ଯଦିଓ ସେସବୁ ଅସ୍ପଷ୍ଟ । ତଥାପି ମୁହୂର୍ତ୍ତିକ ପାଇଁ ମୁଁ ଥରିଉଠୁଛି ଅଜଣା ଆତଙ୍କରେ ।

ପୀଡ଼ିତ ବ୍ୟକ୍ତି ନିକଟରେ ବହୁତ ସମସ୍ୟା ଆଏ ବିଶ୍ୱର ଅନେକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ବିଷୟରେ ଚିନ୍ତା କରିବାକୁ । ମୁଁ ବହୁତ କମ୍ କାମ କରେ । ଥରେ କିମ୍ବା ଦୁଇଥର ମୋର ହାତ ଲେଖାଲେଖିର ଟେବୁଲ୍ଟି ସଫା କରିବାରେ ନିୟୋଜିତ ହୁଏ ମାତ୍ର । ଶୋଇବା ପୂର୍ବରୁ କେବେ କେବେ ମୁଣ୍ଡବାଳ କୁଣ୍ଡାଇ ନିଏ । କିନ୍ତୁ ଏକ ମୂଲ୍ୟ-ହୀନ ଘଡ଼ି ଭଳି ଆନନ୍ଦରେ ଓ ସଶବ୍ଦରେ ମୋର ମସ୍ତିଷ୍କ କାମକରି ଚାଲିଥାଏ ଟିକ୍-ଟିକ୍-ଟିକ୍-ଟିକ୍ କରି । ମୁଁ କାର୍ଯ୍ୟକ୍ରମର ରୂପରେଖ ପ୍ରସ୍ତୁତ କରେ ଓ ଦେଶର ଶାସକମାନଙ୍କୁ ତାହା ଜଣାଇ ଦେବାକୁ ଆଶା ରଖେ ।

ପ୍ରତି ମଧ୍ୟବିତ୍ତ ପରିବାରରୁ ଟଙ୍କାଏ ଲେଖାଁ ଚାନ୍ଦା ସଂଗ୍ରହକରି ନିର୍ଯାତିତ ସହରତଳିର ଲୋକଙ୍କ ପାଇଁ ଏକ ଆଶ୍ରୟ-ଗୃହ ନିର୍ମାଣ କରିବାର—ଆବଶ୍ୟକୀୟ ପ୍ରକୃତିର ଯୋଜନା ମୁଁ କରେ । ନିର୍ଯାତିତ ମାନଙ୍କର ପିଲାମାନେ ସୁସ୍ଥ ହେବେ ଓ ସେମାନଙ୍କ ଆଖିରୁ ହତାଶା ଦୂରେଇ ଯିବା ମୁଁ ଦେଖିବାକୁ ଚାହେଁ । ମୋର ଯୋଜନା ଯେ ମୁଁ ହୋଟେଲ୍-ବାଲାଙ୍କୁ ଅନୁରୋଧ କରିବି ସେମାନେ ସେମାନଙ୍କ ଆୟର ଏକ ଦଶମାଂଶ ବ୍ୟୟ କରି ଗରିବମାନଙ୍କୁ ପ୍ରତିଦିନ ଖାଇବାକୁ ଦେବାଲାଗି ।

ଜ୍ୟୋତ୍ସ୍ନା କଳା ଓ ଶିକ୍ଷା ସମିତିର ସଭାନେତ୍ରୀ ଭାବରେ ମୁଁ ଅନେକଥର ଜନସାଧାରଣଙ୍କୁ ମୋର ଏକ ନିର୍ଦ୍ଦିଷ୍ଟ ସ୍ୱପ୍ନ ବିଷୟରେ ମଞ୍ଚରେ ଠିଆ ହୋଇ କହିଛି । ମୋର ସ୍ୱପ୍ନ—ଗୁରୁକୁଳ ଆଶ୍ରମ ଢାଞ୍ଚାରେ ପ୍ରତିଷ୍ଠିତ ହେବ ଏକ ବିଦ୍ୟାଳୟ । ତାହା ହେବ ଆବାସିକ । ଅନେକ ଦେଶରୁ ଆସିବେ ଶିକ୍ଷକମାନେ । ତାଙ୍କଠାରେ ଥିବ ଆତ୍ମୋତ୍ସର୍ଗର ଭାବ । ପ୍ରତି ଦଶଟି ପିଲା ପାଇଁ ଜଣେ କରି ଗୁରୁ, ଠିକ୍ ବାପା-ମାଙ୍କ ପରି ସ୍ନେହଶୀଳ ହୋଇ ରହିବେ । ବିଦ୍ୟାଳୟ ନିକଟରେ ତାଙ୍କର ରହିବା ପାଇଁ କୁଟୀରମାନ ନିର୍ମିତ ହେବ ।

କିନ୍ତୁ ମୋର ସ୍ୱପ୍ନଗୁଡ଼ିକୁ ସଫଳ ଭାବେ ରୂପାୟିତ କରିବାପାଇଁ କେହି ଆଗକୁ ଆସନ୍ତି ନାହିଁ । ମୋ ଘରର ବାହାରେ ଯେଉଁ ପୃଥିବୀ,—ତାହା ଖାଲି ବିସ୍ ଧରିବାରେ ବ୍ୟସ୍ତ, ହିସାବ କରିବାରେ ବ୍ୟସ୍ତ, ରାଜନୀତିର ଘୋଡ଼ା-ବେପାରରେ ବ୍ୟସ୍ତ ଓ କଳା-ଟଙ୍କାକୁ ଲୁଚାଇବାରେ ବ୍ୟସ୍ତ ।

ଇନ୍ଦିରାଗାନ୍ଧୀ କିମ୍ବା କଂସିଗ୍ରେସ୍ କିମ୍ବା ଜୟପ୍ରକାଶ ନାରାୟଣଙ୍କ ବିଷୟରେ ମୋର ମତ କଣ୍, ତାହା ମୋତେ କେହି ପଚାରି ନାହାନ୍ତି । ମୋତେ କୁହାଯାଇଛି—ଈଶ୍ୱର ଚିନ୍ତା କରିବାକୁ ଓ ଚେଷ୍ଟା କରି ଈଶ୍ୱରଙ୍କ ସହିତ ଶାନ୍ତି ସ୍ଥାପନ କରିବାକୁ, ଯେମିତିକି ମୁଁ ଆଉ କୌଣସି ଅବ୍ୟବସ୍ଥା ଓ ଅ-କାଣ୍ଡ କରି ନ ବସେ, ବରଂ, ଶାନ୍ତିରେ ଏକ ସହଜ ଜୀବନ ଯାପନ କରେ ।

## ଅଣଚାଳିଶ

### ତାଙ୍କ ପ୍ରିୟ ଦେବତାଙ୍କ ନିକଟରେ ଆମେ

ବଙ୍କିମ ପନିଗଛଳର କୀଟମାନେ
ସ୍ୱାଭାବିକ ଭାବେ ବଙ୍କା ।
ସେଇପରି ଏକାନ୍ତ ଧନୀମାନଙ୍କ
କୋଠା ନିର୍ମାଣ ପାଇଁ ଖାସର ଆଡ଼ ଉପରେ
କାମ କରୁଥିବା ଲୋକମାନେ ।

ଦିନେ ଦିନେ ଉତ୍ତପ୍ତ ଆକାଶରୁ
ଭାସିଆସେ ଚଢ଼େଇଙ୍କ ଗୀତ ଏବଂ

ଆମେ ଆଗ୍ରହରେ ଶୁଣୁ ;
କିନ୍ତୁ ସରଳ ଗରବଙ୍କର ଏକ କର୍କଶ
ବାର୍ତ୍ତା ପାଇଁ ଆମର ପ୍ରତୀକ୍ଷା ବୃଥା ହୁଏ ।

ଉତ୍ସବର ଆନନ୍ଦ ଉଚ୍ଛ୍ୱାସରେ
ତାଙ୍କର କଣ୍ଠ ପଡ଼ିଯାଏ, ସ୍ୱର କଟିଯାଏ
କିନ୍ତୁ ତା' ଅତି ସାମାନ୍ୟ
ଯେପରିକି ଗାୟକର ଆନନ୍ଦର
ଅତିଶଯ୍ୟ ବୋଝକୁ
ବହି ପାରୁନି ନିଃଶ୍ୱାସ,
ଏକ ବୃହଦାକାର ମିଥ୍ୟାକୁ ଯେପରିକି
ଢୋକି ପାରୁନି କଣ୍ଠ,

କିନ୍ତୁ ସନ୍ଧ୍ୟା ପରେ,
ତାଙ୍କର ପରିହାସ ସବୁ ଅଶ୍ଳୀଳ ଶୁଣାଯାଏ,
ତାଙ୍କର କାମନା ସବୁ ନିଚ୍ଛୁଆ ମନେ ହୁଏ ।
ଧୂଳିର ଏ କଣ୍ଟେଇ-ମଣିଷମାନେ,
ଉଶ୍ୱାସିଆ ଧୂଳି-ଶିଶୁଙ୍କର ପିତାମାନେ,
କିନ୍ତୁ ତାଙ୍କର ହାତସବୁ କୌଣସି ପୌରାଣିକ ଗଛର
ଶାଖା-ପ୍ରଶାଖା ପରି
କେବଳ ଶୀତଳ ଛାୟା ଦାନ କରନ୍ତି,
ଏବଂ ଗାଉଁଲି ଆନନ୍ଦରେ
ଏପରିକି ଅବିଶ୍ୱାସୀମାନଙ୍କୁ ବି
ଆଶ୍ରୟ ଦେଇଥା'ନ୍ତି ।

ମୋର ତରୁଣୀ ଅବସ୍ଥାରେ ଯେତେବେଳେ ଆମେ କ୍ୟାଫେ ପାରେଡ୍-ଠାରେ ରହୁଥିଲୁ, ସେତେବେଳେ ବର୍ତ୍ତମାନ୍ ପଏଣ୍ଟ୍-ରେ ଆଦୌ କୋଠା ନ ଥିଲା । କେବଳ ଥିଲା ସମୁଦ୍ର । ନିର୍ମଳ ଓ ନୀଳ । ଦୂରରେ କେବଳ ଗୋଟେ-ଦୁ'ଟା ନୌକା ଦୋଳି ଖେଳୁଥିବା ଦିଶୁଥିଲା ଲହରୀ ଉପରେ । ପରେ ଯେମିତିକି ସମୁଦ୍ର ବାଧ୍ୟ ହୋଇ ଘୁଞ୍ଚିଯାଇଛି ପଛକୁ ଏବଂ ନବ-ଅଧିକୃତ ସ୍ଥାନରେ ଗଢ଼ି ଉଠିଛି ଅନେକ ପ୍ରାସାଦ ।

କୋଠା ତିଆରି କାମ କରିବା ଲୋକେ ବେଶୀ ଭାଗ ଆନ୍ଧ୍ର ପ୍ରଦେଶର ଲୋକ । ନୂଆ ଜାଗାରେ ମିଶି ଯିବାରୁ ସେମାନେ ପିଲାମାନଙ୍କ ସହିତ ଏବେ

ମାଗ୍ରଠିରେ କଥାବାର୍ତ୍ତା ହେଉଛନ୍ତି । ସେମାନେ କଳା । ବଡ଼ ପାଟିରେ କଥା କହନ୍ତି । ସବୁବେଳେ କର୍ମବ୍ୟସ୍ତ । ଯେପରିକି ସମୟର ମୂଲ୍ୟ ସେମାନେ ଭଲକରି ବୁଝନ୍ତି । କୋଠା ତିଆରି ହେଉଥିଲା ବେଳେ ସେମାନେ ଇଟା ଓ କାଦୁଅରେ ତିଆରି ଟିଣ-ଛାତଦିଆ ଘର ଭିତରେ ନିକଟରେ ରହନ୍ତି ।

ମନ୍ତ୍ରୀମାନଙ୍କ କୁଟୀରଗୁଡ଼ିକର ପରେ ପରେ ଓ ନବ-ନିର୍ମିତ ପ୍ରାସାଦ ଗୁଡ଼ିକର ପଛପଟରେ ଯେଉଁ କଲୋନିଟି ଅଛି ସେଇଠି ସେଇ ନିର୍ମାଣ-କାରୀମାନେ ବସବାସ କରନ୍ତି । ତା' ଗୋଟିଏ ଛୋଟିଆ ଗାଁ ପରି । ଧୂଳିଆ ରାସ୍ତା । ସ୍ଥାନେ ସ୍ଥାନେ ଛେଳି ବନ୍ଧା ହୋଇଥାନ୍ତି । ଖୁଣ୍ଟରେ । କୂଅଟିଏ ଅଛି । ସଞ୍ଜରେ ସ୍ତ୍ରୀ-ଲୋକମାନେ ଜମା ହୁଅନ୍ତି ମାଠିଆ ଧରି ସେଇଠି ।

ଗଣେଶ ପୂଜା ଅବକାଶରେ ସେଇ ଅଧିବାସୀମାନେ ଗୋଟିଏ ମଞ୍ଚ ତିଆରି କରି ଗଣେଶ ମୂର୍ତ୍ତି ସ୍ଥାପନ୍ତି । ଗାଧୁଆ, ଘୋଷେଇ ଓ ଅନ୍ୟାନ୍ୟ କାମ ସରିବା ପରେ ସେଠି ଉଚ୍ଚ ଶବ୍ଦରେ ମାଇକ୍ ବାଜେ । କେତେକ ବି ଝେଁ-ଝେଁ କରି ବଜାନ୍ତି ଝାଞ୍ଜ । ପିଲାମାନେ ଆନନ୍ଦରେ ଆଖି ବଡ଼ ବଡ଼ କରି ଦେଖନ୍ତି ସେ ସବୁକୁ ।

ନିକଟରେ ରହୁଥିବା ଉଚ୍ଚ ମଧ୍ୟବିତ୍ତ ପରିବାରର ଲୋକେ ପ୍ରତିବାଦ କରନ୍ତି । କାରଣ ତାଙ୍କର ଶାନ୍ତିଭଙ୍ଗ ହୁଏ ଶବ୍ଦ ଓ କୋଳାହଳ ଦ୍ୱାରା । ସନ୍ଧ୍ୟାର ମଦ୍ୟ ସେମାନେ ଶାନ୍ତିରେ ପାନ କରିବାକୁ ଚାହାନ୍ତି । ବହିପତ୍ର, ପ୍ରେମ-ବ୍ୟାପାର, ଓ ପ୍ରମୋସନ୍ ଆଦି ପ୍ରସଙ୍ଗରେ ସେମାନେ ଶାନ୍ତିରେ କଥାବାର୍ତ୍ତା ହେବାକୁ ଚାହାନ୍ତି । ଯଦି ସଙ୍ଗୀତ ହେବ,—ତେବେ କେବଳ ବାଲ ମୁରଲି କମ୍ଭା କୁମାର ଗନ୍ଧର୍ବଙ୍କ ସଙ୍ଗୀତ ସେମାନଙ୍କର ପସନ୍ଦ ।

ଗରିବ ଲୋକେ ଭଲ ଗାଇ ପାରନ୍ତି ନାହିଁ । ଯେପରିକି ତାଙ୍କ ପରିପାର୍ଶ୍ୱର ଧୂଳି ତାଙ୍କ ଗଳା ଓ ଫୁସ୍‌ଫୁସ୍‌ରେ ଜମିଯାଇଥାଏ । କିନ୍ତୁ ଗଣେଶ ପୂଜା ସମୟର ଆନନ୍ଦ ଉପଭୋଗ ଚାଲିଥିଲା ବେଳେ ସେମାନେ କାହାରି ପ୍ରତିବାଦ ପ୍ରତି କର୍ଣ୍ଣପାତ କରନ୍ତି ନାହିଁ । ପ୍ରଚୁର ପିଇ ପୁରୁଷମାନେ ଦେବତାଙ୍କର ସ୍ତବ-ଗୀତି ବୋଲନ୍ତି ଉଚ୍ଚ ସ୍ୱରରେ । ସଙ୍ଗୀତ ଉଠେ ଠିକ୍ ଗୋଟାଏ କ୍ଳାନ୍ତ ସାପ ତାର ଫଣା ଉଠାଇବା ପରି; ଏବଂ କ୍ରମେ କ୍ରମେ ଖସି ପଡ଼େ ତଳକୁ ଓ ସର୍ବଶେଷରେ ସାପ କେଳାର ପେଡ଼ୀ ଭିତରକୁ ଗଳିଯାଇ ଚୁପ୍ ହେଲାପରି ସଙ୍ଗୀତ ଥମିଯାଏ ।

ମୋ ବୈଠକଖାନାରେ ବସି ବନ୍ଧୁ ଓ ବିଦ୍‌ଗ୍ଧ ବ୍ୟକ୍ତିମାନେ କାବ୍ୟ କବିତା ଚର୍ଚ୍ଚା କରୁଥିଲାବେଳେ ମଝି ମୁଁ ସେ ସଙ୍ଗୀତ ଶୁଣିପାରେ ଓ ଗାୟକ-

ମାନଙ୍କର ଆନନ୍ଦ ଅନୁମାନ କରିପାରେ । ଅବଶେଷରେ, ଦିନେ ଇଚ୍ଛା ସମ୍ବରଣ କରି ନ ପାରି, ସ୍ୱାମୀଙ୍କୁ ଟାଣି ଟାଣି ନେଇଗଲି ସେଇ କଲୋନିକୁ କିଏ ଗାଉଛନ୍ତି ଦେଖିବାକୁ । ଆମକୁ ପ୍ରବେଶ କରିବା ଦେଖି ମଞ୍ଚରେ ଥିବା ଲୋକଙ୍କର ସ୍ୱର ଦବିଗଲା । ଆମେ ବାହାରର ଲୋକ ସିନା କିନ୍ତୁ ସ୍ୱାଗତଯୋଗ୍ୟ । ପିଲାମାନେ ଆମକୁ ଦେଖି ଖୁସିରେ ହସିଲେ । ପ୍ଲାଟ୍‌ଫର୍ମକୁ ବା ମଞ୍ଚ ଆଡ଼କୁ ଆଙ୍ଗୁଳି ଦେଖେଇ ଜଣେ ବୃଦ୍ଧ ସଙ୍ଗଠକ ତାଙ୍କ ପାକୁଆ ପାଟି ଖୋଲି କହିଲେ— "ବସନ୍ତୁ" । କିନ୍ତୁ ଆମେ ତାଙ୍କ ପ୍ରିୟ ଦେବତାଙ୍କ ନିକଟରେ ବସିବାକୁ କିଏ ? ତାଙ୍କର ଶୁଭେଚ୍ଛା ମୋତେ ନମ୍ର କରିଦେଲା ।

ଆମେ ତଳେ ପିଲାମାନଙ୍କ ନିକଟରେ ବସିଲୁ । ପିଲାମାନେ ସବୁ ସ୍ନାନ କରିଥିବାରୁ ଉଜ୍ଜ୍ୱଳ ଦିଶୁଥିଲେ । ପ୍ରଥମେ ପ୍ରଥମେ ଗାୟକମାନେ କିଛିଟା ସଚେତନ ହୋଇଗଲେ, କିନ୍ତୁ ଅଳ୍ପକ୍ଷଣ ପରେ ସେମାନେ ଗାଇ ଉଠିଲେ ପୂର୍ବପରି । ଏତେ ଖୁସି ହେବାପାଇଁ କି ଉପାଦାନ ଅଛି ତାଙ୍କ ଜୀବନରେ ? ଆମେ ଆଉରି ବିଳାସ-ବ୍ୟସନ ଖୋଜୁଥିଲା ବେଳେ ଏମାନଙ୍କ ସ୍ତ୍ରୀଲୋକମାନେ ସକାଳରୁ ସଞ୍ଜଯାଏଁ ସିମେଣ୍ଟ୍ ବୋହି ଘରି ଉପରେ ଚଢୁଛନ୍ତି । ଏବଂ ତଥାପି ସେମାନଙ୍କର ଅଛି ବେଶୀ ଶକ୍ତି ଏବଂ ଅଧିକ ଆଶା ।

ଘରକୁ ଫେରି ମୁଁ ଭାବିଲି ଯେ ମୋ ଜୀବନଟା କେବଳ ଡ୍ରଇଂରୁମ୍‌ର ଫର୍ନିଚର୍ ଓ ପ୍ରେମିକଙ୍କ ଚିନ୍ତାରେ ହିଁ କଟିଗଲା ।

ପ୍ରକୃତରେ କେଡ଼େ ପ୍ରସାରିତ ଥିଲା ମୋର ଜଗତ । ତାର କେଉଁ କୋଣରେ କଳା କୁକୁରଟିଏ ପରି ଶୋଇ ରହିଥିଲା ମୋର ଗ୍ଲାନି ।

ନିଜକୁ କମଳା ବୋଲି ମନେ କରିବାର ନିର୍ବୋଧତା ମୋର ଥିଲା, ଯେଉଁ କମଳା ସମ୍ପୂର୍ଣ୍ଣ ଅଲଗା ଥିଲା ଅନ୍ୟ ସମସ୍ତଙ୍କଠାରୁ ଓ ଯାହାର ଭାଗ୍ୟ ଅନ୍ୟ ସମସ୍ତଙ୍କଠାରୁ ଭିନ୍ନ ହିଁ ଥିଲା ।

ପୃଥିବୀ ଗୋଲାକାର ଓ ଜୀବନ ବୃତ୍ତାକାର, ଏଇ ଅବଧାରଣା ଆମକୁ ନାନାବିଧ ଭୁଲ୍-ଭ୍ରାନ୍ତି କରିବାରେ ଉତ୍ସାହିତ କରିଛି । ଆମେ ଯଦି ଭୂତ, ଭବିଷ୍ୟତ, ବର୍ତ୍ତମାନ ଭଳି ଶବ୍ଦଗୁଡ଼ିକ ଭୁଲିଯାଇ ପାରନ୍ତୁ, ଜୀବନର ଏକ ସମନ୍ୱିତ ମୂର୍ତ୍ତି ଆମେ ଦେଖିପାରନ୍ତୁ, ଯେଉଁଠି ଏକାକାର ହୋଇ ଥାଆନ୍ତେ ବସ୍ତୁ, ମଣିଷ ଓ ମଣିଷର ଆବେଗ । ଆମକୁ ଆଉ କାହାର ମୃତ୍ୟୁରେ ଶୋକ କରିବାକୁ ପଡ଼ନ୍ତା ନାହିଁ । କେଉଁ ଜୀବିତ ଲୋକ ପାଇଁ ଈର୍ଷାତୁର ହେବାକୁ ପଡ଼ନ୍ତା ନାହିଁ । କିମ୍ୱା ଦୃଶ୍ୟମାନ ଧନ ସମ୍ପଦ ଠୁଳ କରିବାକୁ ପଡ଼ନ୍ତା ନାହିଁ ।

ଯାହାର ସ୍ଥିତି ଅଛି ରହିବ ତାର ଅସ୍ତିତ୍ୱ । କେବଳ ବଦଳିଯିବ ଉପାଦାନ । କାଲି ହୁଏତ ମୋର ଆତ୍ମା ଏଠାରୁ ଯାଇଁ ଜଣେ କୋଠା-ନିର୍ମାଣ-କାରିଣୀ ସ୍ତ୍ରୀ-ଲୋକର ଗର୍ଭରେ ରହିବ । ମୁଁ ହୁଏତ ଦିନେ ସେଇ ଲାଲ୍‌ଗଣପତିଙ୍କୁ ଦେଖି ଖୁସି ହେଉଥିବା ଶିଶୁ ହେବ । ଆନନ୍ଦ ଓ ଦୁଃଖକୁ ଉପଭୋଗ କରିବା ନିର୍ଭର କରୁଛି ମୋ ଉପରେ । ମୋର ତ ଶେଷ ନାହିଁ । କାହାର ତ ଶେଷ ନାହିଁ । ଶେଷ ପରିବର୍ତ୍ତେ ପ୍ରକୃତରେ ଆମକୁ ବି-ରଚନା ବା ବି-ସୃଷ୍ଟିର ଯନ୍ତ୍ରଣା ହିଁ ଭୋଗିବାକୁ ପଡ଼େ ।

ଅନେକ ସମୟରେ ନିଃସଙ୍ଗତାରୁ ବାହାରି ପାଇଁ ବୁଡ଼ିମରିବାର ଭାବନା ମୋ ନିକଟକୁ ଆସିଛି । ଅବଶ୍ୟ ଏ ପ୍ରକାର ଭାବନା କିଛି ଅସାଧାରଣ ନୁହଁ, ବରଂ ସମସ୍ତଙ୍କ ପକ୍ଷରେ ସ୍ୱାଭାବିକ । ସମୁଦ୍ର ଭିତରେ ଶାନ୍ତି ପାଇବାକୁ ମୋର ଆଶା । ତା'ଫଳରେ ମୁଁ ଏଇସବୁ ଅନ୍ତର୍ଦ୍ଦ୍ୱନ୍ଦ୍ୱରୁ ରକ୍ଷା ପାଇଯିବି । କିନ୍ତୁ ବିଶ୍ରାମ ଏକ ଶିଶୁ ସୁଲଭ କଳ୍ପନା, ଏକ ନିହାତି ମାମୁଲି କ୍ଷୁଧା । ସାର୍କ୍ ମାଛର କ୍ଷୁଧା ମୋର କ୍ଷୁଧାଠାରୁ ଅଧିକ ବଡ଼ ।

ଅନ୍ୟର କ୍ଷୁଧା ଶାନ୍ତ କରିବାର କାମନା ଆମ ସମସ୍ତଙ୍କ ଭିତରେ ନିହିତ ଅଛି । ଏହା ଏକ ମୌଳିକ ପ୍ରବୃତ୍ତି । ମିଶିଯାଇ ଅନ୍ୟ ବସ୍ତୁରେ ଆମ ଶକ୍ତିର ଭଗ୍ନାଂଶ ସବୁ ମିଶ୍ରିତ ହୋଇଯାଏ । ଆମେ ଯେ ଅମର—ପରିଶେଷରେ ଆମେ ତାହା ଆବିଷ୍କାର କରିପାରିବା । ଏ ଦୁନିଆରେ କେବଳ ବ୍ୟବସ୍ଥା ଓ ସଂଯୋଜନା ହିଁ ମରଣଶୀଳ ।

ଏପରିକି ଆମର ଯନ୍ତ୍ରଣା ସବୁ ଅମର ହୋଇ ରହିଯିବ ସେଇମାନଙ୍କ-ଠାରେ, ଯେଉଁମାନେ ଆମକୁ ଧ୍ୱଂସ କରିଛନ୍ତି । ପ୍ରତିଟି ବିକ୍ଷିପ୍ତ ରକ୍ତ-କଣିକାର ବାରମ୍ବାର ବିଚରଣ ଯୋଗେ ଅନ୍ତର୍ଦ୍ଦ୍ୱନ୍ଦ୍ୱର କାରାଗାର ମଧ୍ୟରୁ ଆମର ପଳାୟନ ଆଦୌ ସମ୍ଭବ ନୁହେଁ । ଆମେ ଅମରତ୍ୱର ଜାଲରେ ଛନ୍ଦିହୋଇ ରହିଛେ । କେବଳ ବି-ଯୋଗ ଓ ବି-ରଚନାର ସ୍ୱାଧୀନତା ବ୍ୟତୀତ ଆମର ଅନ୍ୟ କୌଣସି ପ୍ରକାରର ସ୍ୱାଧୀନତା ନାହିଁ ।

# ପଚାଶ

## ମୃତ୍ୟୁକୁ ଆଉ ଡରୁନାହିଁ···

ଦୁଇମାସ ପୂର୍ବେ ବମ୍ବେର ଜଣେ ବିଶିଷ୍ଟ ହୃଦ୍‌-ରୋଗ ବିଶେଷଜ୍ଞ ଆମ ଘରକୁ ଆସି ମୋର ହୃତ୍‌କମ୍ପନର ଅବସ୍ଥା ନିର୍ଣ୍ଣୟ କଲେ । ସେ କହିଲେ—"ଯଦି ବଞ୍ଚିରହିବାକୁ ଇଚ୍ଛା ତେବେ ବିନା ବିଳମ୍ବରେ ନିକଟସ୍ଥ ହସ୍‌ପିଟାଲ୍‌ର— ଇଣ୍ଟେନ୍‌ସିଭ୍ କାର୍ଡ଼ିଆକ୍ ୟୁନିଟ୍-ରେ ଭର୍ତ୍ତି ହେବା ଉଚିତ ।" ଦିନକୁ ଦିନ ମୋର ସ୍ୱାସ୍ଥ୍ୟର ଅବନତି ଘଟୁଥିଲା । ଆଉ ଅଳ୍ପଦିନ ପରେ ହୁଏତ ମୋର ମୁହଁ ଓ ପାଦ ଫୁଲିଯିବ ଏବଂ ବିଛଣାରୁ ତଳକୁ ଓହ୍ଲାଇବା ଅବସ୍ଥା ରହିବ ନାହିଁ ବୋଲି ସେ ଜଣାଇ ଦେଲେ ।

ମୋ ହାତକୁ ତାଙ୍କ ହାତରେ ଚିପିଧରି ସେ କହିଲେ—'ତୁମର ଯଦି ବୁଦ୍ଧି, ସାହସ ନ ଥାନ୍ତା ତାହା ହେଲେ ଏତେ ସ୍ପଷ୍ଟ ଭାବରେ ମୁଁ ଏ ସତର୍କବାଣୀ ପ୍ରକାଶ କରି ନ ଥାନ୍ତି । ତୁମର ଇଚ୍ଛା ହେଉଛି ଯଦି ବାକି, କିନ୍ତୁ ଜନପଦନ ସକାଳୁ ସନ୍ଧ୍ୟା ପୂର୍ବରୁ ହସ୍‌ପିଟାଲ୍‌ରେ ତୁମକୁ ଛାଡ଼ିଆସିବାପାଇଁ ସ୍ୱାମୀଙ୍କୁ ଡକାଇ ଆଣ ।' ଏତକ କହିବା ପରେ ସେ ସିଗ୍ରେଟ୍ ଲଗାଇଲେ ।

ମୁଁ ନୀରବ ରହିଲି । ଦିନେ ଦିନେ ସକାଳୁ ଉଠିବା ବେଳେ ଯେ ସାଧାରଣ **ଅବସ୍ଥାରେ** ମୋ ଆଖି ନ ଥାଏ, ଦିନେ ଦିନେ ପୂଜା କରୁଥିବା ବେଳେ ମନ୍ତ୍ରପାଠ କରୁଥିଲି ଅବସ୍ଥାରେ ଯେ ମୋର ଚେତା ବୁଡ଼ିଯାଏ ଓ ମୁଁ ଗଡ଼ିପଡ଼େ— ସେ କଥା ତାଙ୍କୁ କହିଲି ନାହିଁ । ଗୋଡ଼ ଫୁଲିବା ମାତ୍ରେ ମୁଁ ଶାଢ଼ୀ କାନିରେ ଭିଡ଼ିକରି ବାନ୍ଧି ଦେଉଥିଲି । ଛାତିରେ ବିଶେଷ ଯନ୍ତ୍ରଣା ଅନୁଭବ କଲେ ସର୍‌ବିଟ୍ରେଟ୍ ବଟିକା ଜିଭ ତଳେ ଜାକି ଧରୁଥିଲି । ସତର୍କ ସଙ୍କେତ ଗୁଡ଼ିକ ସହିତ ମୁଁ ଅପରିଚିତ ନ ଥିଲି । କିନ୍ତୁ ଆଉ ଥରେ ହସ୍‌ପିଟାଲ୍‌କୁ ଯିବା ମୋ ପକ୍ଷରେ ଏକ ସୁଖକର ବିକାଶ ନ ଥିଲା, ଶାନ୍ତିଦାୟକ ନ ଥିଲା ।

ମୃତ୍ୟୁଲୋକ ଓ ପୃଥିବୀର ମଧ୍ୟ ସ୍ଥଳରେ ଏକ ସ୍ୟାଣ୍ଡ୍‌ଓ୍ୱିଚ୍ ଅବସ୍ଥାରେ ହସ୍‌ପିଟାଲ୍ ରହିଚି ବୋଲି ଧାରଣା । ଯେତେବେଳେ ମୁଁ ହସ୍‌ପିଟାଲ୍‌ରେ ଭର୍ତ୍ତି ହୋଇଚି—ଏକୁଟିଆ ରହିବାର ଗୋଟାଏ ପ୍ରବଳ ଇଚ୍ଛା ସବୁବେଳେ

ଜାଗିଉଠିଚି ମୋ ଭିତରେ । ମଧୂ-ରଜନୀ ଯାପନ କରୁଥିବା ବଧୂପରି ସବୁବେଳେ ମୁଁ ଖୁଜ଼ୁଁ ଆସିଚି ନିର୍ଜନତା । ଯେପରି ବଧୂ ତା' ନିଜପାଇଁ ଓ ତା' ସାଥୀପାଇଁ ମଧୁ-ଭବନରେ ଅନ୍ୟ କାହାରି ପ୍ରବେଶକୁ ଇଚ୍ଛା କରେନା, ଠିକ୍ ସେପରି ସଂପୂର୍ଣ୍ଣ ଏକୁଟିଆ ରହିବାର ପ୍ରବଳ ବାସନା ଉତ୍ଥିତ ହୁଏ ମୋ ଠାରେ ।

ଅସୁସ୍ଥି ମୋର ପ୍ରିୟସାଥୀରେ ପରିଣତ ହୋଇ ଯାଇଚି । ରକ୍ତ, ସ୍ନାୟୁ ଓ ହାଡ଼ର ନିବିଡ ବନ୍ଧନରେ ମୁଁ ତାକୁ ଆଲିଙ୍ଗନ କରିଚି ଓ ଗୋପନ ଆଳାପ କରିଚି ତା' ସହିତ । ମୁଁ ମୋ ହୃତ୍-ରୋଗକୁ କହିଚି—ଦେଖ, ମୁଁ ମାତ୍ର ଏଇ ତିରିଶ ବର୍ଷ ହିଁ ଅତିକ୍ରମ କରିଚି, ଆଜିଯାଏଁ ମୋର ସାନପୁଅ ରାତିରେ ପାଖିରେ ଡାହାଣ ହାତର ବୁଢ଼ାଆଙ୍ଗୁଳି କାମୁଡ଼ି ଓ ମୋ କୋଳରେ ବକ୍ଷୋଜର ମଧ୍ୟଭାଗରେ ବାଁ-ହାତ ଗୁଞ୍ଜି ଶୋଇବା ଛାଡ଼ିନାହିଁ । ମୁଁ ତାକୁ କହେଁ—ମୋର ପୂର୍ବପୁରୁଷଙ୍କ ଘରର ମରାମତି ବାକିଚି, ପ୍ଲାଷ୍ଟର୍ ମରିନାହିଁ ସିମେଣ୍ଟ୍ ଅଭାବରୁ, ମରିବା ପୂର୍ବରୁ ଅତିକମ୍‌ରେ ମୁଁ ସେଠାରେ ବର୍ଷେ ଖଣ୍ଡେ ରହିବା ଉଚିତ । ରୋଗକୁ ମୋ ବାମ ପଟରୁ ଯନ୍ତ୍ରଣା କାଢ଼ି ନେବାକୁ ମୁଁ ଅନୁରୋଧ କରେ ।

ହସ୍‌ପିଟାଲ୍‌ରେ ଭର୍ତ୍ତିହେବା ପରେ ପରେ—ଟିକିଏ ଟିକିଏ ଆସନ୍ତି, ନର୍ସ୍‌ଙ୍କ ସାହାଯ୍ୟରେ ଆଭରଣ ମୁକ୍ତ କରି ରୋଗର ଅଚିହ୍ନା ସଙ୍କେତକୁ ଚିହ୍ନନ୍ତି । ତାଙ୍କର ସ୍ପର୍ଶରେ ଦେହ ଲଜ୍ଜାରେ ଲାଲ୍ ପଡ଼ିଯାଏ ।

ତୁମ ଦରକାର ସେ ପଟରେ ସେ ନମ୍ରଭାବରେ କଥୋପକଥନ କରନ୍ତି ତୁମର ପ୍ରିୟଜନ ସହିତ । କେବଳ ଅସ୍ପଷ୍ଟ ଧ୍ୱନି ହିଁ ଶୁଣାଯାଏ ତୁମକୁ । ତା'ଛଡ଼ା, ସେତେବେଳକୁ ତୁମର କୌଣସି ଦାୟିତ୍ୱ ଆଉ ନଥାଏ । ଗୋଟିଏ ନମ୍ବର ମିଳିଯାଏ ତୁମକୁ । ସେଇ ତୁମର ପରିଚୟ । ନର୍ସ ତୁମର ଆଭରଣ ଖୋଲିବା ସହିତ ତୁମର ବ୍ୟକ୍ତି-ସ୍ୱାତନ୍ତ୍ର୍ୟକୁ ମଧ୍ୟ ଖୋଲି ନେଇଯାଏ । ତା'ପରେ ମଳ-ମୂତ୍ର-ପରୀକ୍ଷାର ଲୋକ ଆସି ପହଞ୍ଚିଯାଆନ୍ତି ତୁମ ନିକଟରେ । ସେ ଯାହାସବୁ ଜାର୍ ଓ ବୋତଲ୍‌ରେ ସିଲ୍ କରି ନେଇଯାଏ, ତା' ସହିତ ଦୂର ହୋଇଯାଏ ତୁମର ବୃଥା—ମର୍ଯ୍ୟାଦାବୋଧ । ଏକ୍ସ-ରେ କୋଠରୀରେ ସେମିତି ଆଲୁଅରେ ନର୍ସ୍ ତୁମକୁ ନଗ୍ନକରେ । ସେତେବେଳେ ଅନ୍ଧାରରେ ଠିଆହୋଇ ତୁମର ଚକ-ଲଗା ଚୌକିକୁ ଗ୍ଭଳନା କରୁଥିବା ପରିଚାରକ ଜଣକ ତୁମକୁ ଆଗ୍ରହରେ ଲକ୍ଷ୍ୟ କରୁଥାଏ । ଅନାବୃତ ସ୍ତନଯୁଗଳର ଦୃଶ୍ୟ ହିଁ ତା' ପରିଶ୍ରମର ଯୁକ୍ତି-ସଙ୍ଗତ ପୁରସ୍କାର ।

କୌଣସି ଏକ ପ୍ରଭାବଶାଳୀ ସ୍ୱର ତୁମକୁ ଲମ୍ବା ନିଃଶ୍ୱାସ ନେବାକୁ ଆଦେଶ ଦିଏ । ବରଫ-ଶୀତଳ ଏକ୍ସ-ରେ' ଟେବୁଲ୍ ଉପରେ ଶୋଇ ଶୋଇ ତୁମେ ନିଭୃତରେ ଆନନ୍ଦ ଅର୍ଜନ କର । କାରଣ, ଏକ ଲମ୍ବା ଓ ଗଭୀର ନିଃଶ୍ୱାସ ନେବା ଯଦି ଏତେ ସହଜ ହୋଇଥାନ୍ତା, ତା'ହେଲେ ତୁମର ସେଠାକୁ ଯିବା ଦରକାର ପଡ଼ି ନ ଥାନ୍ତା ଓ ତୁମେ ବାହାରେ ସାନପୁଅର ହାତଧରି ବୁଲୁଥା'ନ୍ତ କିମ୍ବା ସିନେମା ଦେଖୁଥାନ୍ତ କିମ୍ବା ପିକ୍‌ନିକ୍ କରୁଥା'ନ୍ତ କେଉଁଠି ଏକ ସୁରଭିତ ଗଛମୂଳରେ ।

'ନା, ମୁଁ ଆଉ କୌଣସି ହସ୍‌ପିଟାଲ୍‌କୁ ଯିବାର ସ୍ୱପ୍ନ ଦେଖିବି ନାହିଁ' ଡାକ୍ତରଙ୍କୁ କହିଲି । ସେ ଏକ ବନ୍ଧୁତ୍ୱପୂର୍ଣ୍ଣ ଭାବରେ ସ୍କନ୍ଧ କୁଞ୍ଚନ କଲେ । ତାଙ୍କ ସିଗ୍ରେଟ୍ ଧୂଆଁରେ କୋଠରୀ ଭର୍ତ୍ତି ହୋଇଗଲା ।

ମୁଁ କହିଲି—"ମୁଁ ଯେ ଇଞ୍ଜେକ୍‌ସନ୍ ପ୍ରଭୃତି ଉପଗ୍ରହଗୁଡ଼ିକୁ ଡରୁଛି ତା' ନୁହେଁ । ମୁଁ ଆଜିକାଲି ମୃତ୍ୟୁକୁ ଭୟ କରିବା ଛାଡ଼ିଲିଣି ।"

ବର୍ଷ ବର୍ଷ ଧରି ମୁଁ କେବଳ ମୃତ୍ୟୁ ଚିନ୍ତାରେ ପୀଡ଼ିତ ଥିଲି । ବର୍ତ୍ତମାନ ମୋର ବିଶ୍ୱାସ ହେଲିଣି—ଯେ ଜୀବନ ଗୋଟାଏ ସ୍ୱପ୍ନ ଓ ମୃତ୍ୟୁହିଁ ଏକମାତ୍ର ବାସ୍ତବତା । ଆମର ମାନବିକ ଅସ୍ତିତ୍ୱର ପୂର୍ବରୁ ଏବଂ ପରେ ତାହା ପ୍ରସାରିତ ହୋଇ ରହିଛି । ତାହା ଅନନ୍ତ । ତା' ଭିତରକୁ ଖସିଯିବା ଅର୍ଥ ଏକ ନୂତନ ଗୁରୁତ୍ୱ ଓ ଗୁଣ ଅର୍ଜନ କରିବା । ଅନେକ ଆବେଗଗତ ସଂଶ୍ଳେଷ ଓ ଅନ୍ତର୍ଭୁକ୍ତି ଥିଲେ ମଧ୍ୟ ଜୀବନଟା ପାଣି ସୁଅ ଉପରେ ଲେଖିବା ଭଳି ବୃଥା ପ୍ରମାଣିତ ହୋଇଛି । ଆଉ ଜଣେ କାହାର ସ୍ୱପ୍ନର ଚରିତ୍ର କେବଳ ଆମେ ସବୁ ।

ମୁଁ ବର୍ତ୍ତମାନ ଶାନ୍ତିରେ ଅଛି । ମୁଁ ଈଶ୍ୱରଙ୍କୁ ଏକ ବୃକ୍ଷପରି ଭାବୁଛି, ଯେଉଁ ଗଛର ଅଛି ପତ୍ର, ଗଣ୍ଡି, ଶାଖା, ଫୁଲ ଓ ଫଳ । ରୂପରେ ଓ ଆକୃତିରେ ସବୁଗୁଡ଼ିକ ପରସ୍ପରଠାରୁ ଭିନ୍ନ ହେଲେ ମଧ୍ୟ ଗୋଟିଏ ପ୍ରକାରର ନିର୍ଯ୍ୟାସ ସବୁଥିରେ ପୂର୍ଣ୍ଣ ହୋଇ ରହିଛି । ସବୁଠାରେ ନିହିତ ସେଇ ଗୋଟିଏ ଅଜ୍ଞାତ-ଶକ୍ତି । ଅଜ୍ଞାତ କାରଣ । ପ୍ରତିଟି ଉପାଦାନ ନିଜ ଧର୍ମ ରକ୍ଷା କରେ । ଫୁଲ ଫୁଟେ, ପାଖୁଡ଼ା ଓ ପରାଗ ବିଚ୍ଛିନ୍ନ ହୁଏ ଓ ଶୁଖିଯାଏ । ଫଳ ପାଚେ ଓ ଝଡ଼ିପଡ଼େ । ଗଣ୍ଡି ବକଲା ତ୍ୟାଗ କରେ । ଆମ ସମସ୍ତଙ୍କୁ ସେଇ ଚିରନ୍ତନ-ପ୍ରଜ୍ଞାର ଆଦେଶ ମାନିବାକୁ ପଡ଼ିବ । ସେ ହିଁ ସବୁ ବସ୍ତୁରବୋଧର ମୂଳ ଓ ସବୁ ଚୈତନ୍ୟର ମୌଳିକ ଉତ୍ସ ।

ପଶ୍ଚାତରେ ମୁଁ ଛାଡ଼ି ଆସିଛି ରଙ୍ଗୀନ୍ ଯୌବନ । ଆନନ୍ଦସବୁକୁ ସମ୍ଭବତଃ ମୁଁ ଯଥାଯଥ ଭାବେ ଉପଭୋଗ କରିପାରିଲି ନାହିଁ । ଖୁବ୍ ଶୀଘ୍ର

ବୋଧହୁଏ ଜୀବନର ସେଇ କ୍ଷଣସବୁ ଅତିକ୍ରାନ୍ତ ହୋଇଗଲା । କିନ୍ତୁ ସେଥିରେ କଣ୍ ଅଛି ? ମୁଁ ଆଜି କ୍ଲାନ୍ତ ଓ ରସହୀନ । ମୋ ହୃଦୟ ଆଜି ଗୋଟାଏ ଜୀର୍ଣ୍ଣପାତ୍ର ପରି କିଛି ହେଲେ ଧାରଣ କରିବାକୁ ଅକ୍ଷମ । କିନ୍ତୁ ଦିନେ ମୁଁ ଯେଉଁସବୁ ଶବ୍ଦରେ ପ୍ରେମଭାବ ପ୍ରକାଶ କରୁଥିଲି, ଏବେବି ପ୍ରସ୍ଫୁଟିତ ହେବା ମାତ୍ରେ ବିଭିନ୍ନ ଦ୍ୱାର ଦେଶରେ ସିକ୍ତ ଆଖି, ସିକ୍ତ ତନୁ ଯେମିତି ଉଭା ହେଉଛନ୍ତି ପ୍ରେମିକମାନେ ଓ ସେଇପରି ପ୍ରେମର ଶବ୍ଦରେ କରୁଛନ୍ତି ଆଳାପ ।

ସମ୍ଭବତଃ ମୁଁ ଖୁବ୍ ଶୀଘ୍ର ମରିଯିବି । ପ୍ରେମ ଲାଗି ଅପେକ୍ଷା କରୁଥିବା ବଧୂପରି ଦିଶିବାକୁ ମୁଁ ଯେଉଁ ଅଳଙ୍କାର ପିନ୍ଧିଚି ମୋର ଦେହରେ, ସେସବୁ କିନ୍ତୁ ରହିଯିବ । ଯେଉଁ ବହିସବୁ ମୁଁ ସଂଗ୍ରହ କରିଚି, ଯେଉଁ ବ୍ରୋଞ୍ଜ୍ ମୂର୍ତ୍ତିଗୁଡ଼ିକୁ ପ୍ରତିଦିନ ଫୁଲ ଦେଇ ପୂଜା କରି ଆସିଚି, ଏବଂ ଯେଉଁ ପାନ-ପାତ୍ର ସବୁ ମୋଦ୍ୱାରା ସଞ୍ଚିତ,—ସେସବୁ ରହିଯିବ, କିନ୍ତୁ ରହିବି ନାହିଁ ମୁଁ ।

ମୋର ଚିତାରୁ ମୋର ବିଷଣ୍ଣ ପୁଅମାନେ ସଂଗ୍ରହ କରିବେ କିଛି ସ୍ମୃତିର ଫଳକ,—ଅସ୍ଥି ଅଥବା ଭସ୍ମ । ଏବଂ ତଥାପି ଜଗତ ଗୁଳୁ ରହିବ । ପୁଅମାନଙ୍କ ଗାଲରେ ଶୁଖିଯିବ ଲୁହଧାର । ତାଙ୍କର ପତ୍ନୀମାନେ ମଧ୍ୟ ଆଉରି ପ୍ରତିଭାଶାଳୀ ସନ୍ତାନ ଜନ୍ମ କରିବେ । ମୋର ବଂଶଜମାନେ ଜନ-ପୂର୍ଣ୍ଣ କରି ରଖିବେ ପୃଥିବୀକୁ । ଏତିକି ମୋ ପାଇଁ ଯଥେଷ୍ଟ । ଯଥେଷ୍ଟରୁ ଅନେକ ଅଧିକ ॥

---